# ଜଗନ୍ନାଥ ଦାସ

ଡକ୍ଟର ଭଗବାନ ପଣ୍ଡା




ଓଡ଼ିଶା ସାହିତ୍ୟ ଏକାଡେମୀ

# ଜଗନ୍ନାଥ ଦାସ

ଡ଼କ୍ଟର ଭଗବାନ ପଣ୍ଡା



## ଓଡ଼ିଶା ସାହିତ୍ୟ ଏକାଡେମୀ

# ଜଗନ୍ନାଥ ଦାସ

ଲେଖକ :

**ଡକ୍ଟର ଭଗବାନ ପଣ୍ଡା**

ପ୍ରକାଶକ :

**ଓଡ଼ିଶା ସାହିତ୍ୟ ଏକାଡେମୀ**

ଭୁବନେଶ୍ୱର-୭୫୧୦୧୪

ପ୍ରଥମ ପ୍ରକାଶ : ୧୯୯୩

ମୁଦ୍ରଣ :

**କିରଣ ପ୍ରକାଶିନୀ**

ମହତାବରୋଡ, କଟକ-୧୨

**ମୂଲ୍ୟ : ଅଠେଇଶ ଟଙ୍କା**

# JAGANNATHA DASA

Written by :

**Dr. Bhagaban Panda**

Published by :

**Orissa Sahitya Akademi**

Bhubaneswar-14

First Published-1993

Printed at :

**Kiran Prakashini**

Mahatab Road, Cuttack-12

**Price : Rupees Twentyeight**

# ମୁଖବନ୍ଧ

ଓଡ଼ିଶା ସାହିତ୍ୟ ଏକାଡ଼େମୀ ପକ୍ଷରୁ ଓଡ଼ିଶାର ସାହିତ୍ୟ, ସଂସ୍କୃତି ଓ ଇତିହାସ କ୍ଷେତ୍ରରେ କୃତିତ୍ୱ ଅର୍ଜନ କରିଥିବା ସିଦ୍ଧ ସାଧକ, ମହାପୁରୁଷ ଓ କବିକୋବିଦମାନଙ୍କ ସମ୍ବନ୍ଧରେ ସାଧାରଣ ପାଠକମାନଙ୍କର ଅବଗତି ନିମିତ୍ତ କ୍ଷୁଦ୍ରାକାର ପୁସ୍ତକ ପ୍ରକାଶନର ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଛି । ପ୍ରସ୍ତୁତ 'ଜଗନ୍ନାଥ ଦାସ' ଶୀର୍ଷକ ପୁସ୍ତକ ତାହାର ଅଂଶବିଶେଷ ରୂପେ ପ୍ରକାଶିତ ହେଉଛି ।

ମହାପୁରୁଷ ଜଗନ୍ନାଥ ଦାସ (୧୪୯୧-୧୫୫୦ ଖ୍ରୀ.ଅ ) ଓଡ଼ିଆ ସାହିତ୍ୟ ଓ ସଂସ୍କୃତି ମହାଯଜ୍ଞର ଅନ୍ୟତମ ମହାନ୍ ପୁରୋଧା ଥିଲେ । ଓଡ଼ିଆ ଜାତିକୁ ଶିକ୍ଷିତ, ସଂସ୍କୃତ ଓ ଏକହୃଦୟ କରିବା ପାଇଁ ପାଞ୍ଚଶହ ବର୍ଷ ପୂର୍ବେ, ସେ ଭାଗବତ ଧର୍ମର ପ୍ରଚାର ମାଧ୍ୟମରେ ଯେଉଁ ସଂସ୍କାରାତ୍ମକ ଆନ୍ଦୋଳନର ସୂତ୍ରପାତ କରିଥିଲେ, ତାହାର ଦୃଷ୍ଟାନ୍ତ ତତ୍କାଳୀନ ଭାରତରେ ବିରଳ କହିଲେ ଅତ୍ୟୁକ୍ତି ହେବ ନାହିଁ । ସେହି ମହାତ୍ମା ଜଗନ୍ନାଥ ଦାସଙ୍କ ଜୀବନୀ ଓ ସାହିତ୍ୟିକ ଅବଦାନ ସମ୍ବନ୍ଧରେ ସଂସ୍କୃତ, ଓଡ଼ିଆ ଓ ଇଂରାଜୀ ଭାଷାରେ ବହୁ ପ୍ରବନ୍ଧ ଓ ପୁସ୍ତକ ରଚିତ ଓ ପ୍ରକାଶିତ ହୋଇଛି । କିନ୍ତୁ ଦୁଃଖର କଥା, ପ୍ରବନ୍ଧ ଓ ପୁସ୍ତକଗୁଡ଼ିକର ମୂଳ ଆଧାର ରୂପେ ବିବେଚିତ ହେଉଥିବା 'ଶ୍ରୀଜଗନ୍ନାଥ ଚରିତାମୃତ' ଶୀର୍ଷକ ଗ୍ରନ୍ଥଟି ଏକାଧିକବାର ପ୍ରକାଶ ପାଇଥିଲେ ମଧ୍ୟ ତାହା ଅଦ୍ୟାବଧି ବିଧିବଦ୍ଧ ଭାବେ ସମ୍ପାଦିତ ହୋଇ ନାହିଁ । ଲୋକମୁଖରେ ପ୍ରଚଳିତ ତଥା ଲିପିବଦ୍ଧ ହୋଇଥିବା ଜଗନ୍ନାଥ ଦାସଙ୍କ ସମ୍ବନ୍ଧୀୟ ଜନଶ୍ରୁତିର ମଧ୍ୟ ଯଥାଶାସ୍ତ୍ର ଗବେଷଣା ଓ ସମୀକ୍ଷା କରାଯାଇ ନାହିଁ ।

'ଶ୍ରୀଜଗନ୍ନାଥଚରିତାମୃତ'ର ଉଲ୍ଲେଖ ଅନୁସାରେ ଅତିବଡ଼ି ଜଗନ୍ନାଥ ଦାସ ଭାଗବତ ବ୍ୟତୀତ 'ଷୋଳଚଉପଦୀ' ନାମରେ ଅନ୍ୟ ଏକ କ୍ଷୁଦ୍ର ଗ୍ରନ୍ଥ ରଚନା କରିଥିବାର ଜଣାଯାଏ—

ବିଘ୍ନଗଣେଶଙ୍କ ଅଗ୍ରତ । ରଚିଲେ ଭାଷା ଭାଗବତ ॥
ପଢ଼ନ୍ତି ଆନ୍ତ ସୁଖପାଇ । ଭଣେ ଦେଉଥାନ୍ତି କହି ॥

(ଜ: ଚ, ପୃ-୧୩)

ଥିଲେ ଅତିବଡ଼ ଗୋସାଇଁ । ପ୍ରଭୁ ଆଜ୍ଞା ଶୁଣିଲେ ତହିଁ ।
ସେକଥା ମନରେ ରଖିଲେ । ଷୋଳ ଚଉପଦୀ ଲେଖିଲେ ॥
(ଜ: ଚ: ପୃ-୮୬)

ଉକ୍ତ ପଙ୍‌କ୍ତିକୁ ଆଧାର କରି ଆଲୋଚକମାନଙ୍କ ମଧ୍ୟରେ ଗମ୍ଭୀର ମତାନ୍ତର ସୃଷ୍ଟି ହୋଇଥିବାର ଜଣାଯାଏ । କାରଣ ମୁଦ୍ରିତ ପୁସ୍ତକରେ ଥିବା ଉକ୍ତ ପ୍ରଥମ ପଙ୍‌କ୍ତିର ପାଠ ପ୍ରାଚୀନ ତାଳପତ୍ର ପୋଥିଗୁଡ଼ିକରେ 'ବଟଗଣେଶଙ୍କ ଆଗରେ, ଶ୍ରୀ ଭାଗବତ କରନ୍ତିରେ' ବୋଲି ଉଲ୍ଲେଖ ଥିବାର ଦେଖାଯାଏ । ପୂର୍ବାପର ସଙ୍ଗତି ଦୃଷ୍ଟିରୁ ମୁଦ୍ରିତ ପାଠ ତୁଳନାରେ ପୋଥିର ପାଠ ଅଧିକ ଯୁକ୍ତିଯୁକ୍ତ ମନେହୁଏ । ତେଣୁ ମୁଦ୍ରିତ ହୋଇଥିବା 'ଶ୍ରୀଜଗନ୍ନାଥଚରିତାମୃତ'ର ପାଠ କେତେଦୂର ଗ୍ରହଣୀୟ ଓ ବିଶ୍ୱାସ୍ୟ ହୋଇପାରିବ, ତାହା ସମ୍ପାଦିତ ପାଠର ସମୀକ୍ଷା ଦ୍ୱାରାହିଁ ଜଣାପଡ଼ିବ ।

ଓଡ଼ିଶାର କେତେକ ବିଶିଷ୍ଟ ଗବେଷକଙ୍କ ଅନୁସାରେ 'ଷୋଳଚଉପଦୀ'ର ଲେଖକ ଅତିବଡ଼ ଜଗନ୍ନାଥ ଦାସ ଓ ଓଡ଼ିଆ ଭାଗବତ ପ୍ରଣେତା ମହାପୁରୁଷ ଜଗନ୍ନାଥ ଦାସ ଅଭିନ୍ନ ବ୍ୟକ୍ତି ନୁହନ୍ତି । ଶ୍ରୀଜଗନ୍ନାଥଚରିତାମୃତରେ ବର୍ଣ୍ଣିତ ପ୍ରସଙ୍ଗଗୁଡ଼ିକର ଅନୁଶୀଳନରୁ ଏହି ଧାରଣା ଅବାନ୍ତର ବୋଲି ମନେହୁଏ ନାହିଁ । ମହାତ୍ମା ଜଗନ୍ନାଥ ଦାସଙ୍କ ସମୟରେ ଏକାଧିକ ଜଗନ୍ନାଥ ଦାସ ଥିବା ସର୍ବଥା ସମ୍ଭବ । ଅତିବଡ଼ ଜଗନ୍ନାଥ ଦାସଙ୍କର ମଧ୍ୟ ଜଣେ ଶିଷ୍ୟ ଜଗନ୍ନାଥ ଦାସ ନାମରେ ପରିଚିତ ଥିଲେ । ପରବର୍ତ୍ତୀ ଶହେବର୍ଷ ମଧ୍ୟରେ ବହୁ ଜଗନ୍ନାଥ ଦାସଙ୍କର ଆବିର୍ଭାବ ଘଟିଥାଇପାରେ । ତେଣୁ ଚରିତକାର ଦିବାକର ଦାସ ତାଙ୍କ ଗ୍ରନ୍ଥରେ ଏକାଧିକ ଜଗନ୍ନାଥ ଦାସଙ୍କୁ ଏକ ବ୍ୟକ୍ତି ରୂପେ ଚିତ୍ରଣ କରିବାରେ ବିସ୍ମିତ ହେବାର କିଛି ନାହିଁ । ଭାରତୀୟ ସାହିତ୍ୟର ଇତିହାସରେ ଏପରି ଘଟଣା ବିରଳ ନୁହେଁ । କିନ୍ତୁ ଯେଉଁ ଶ୍ରୀଜଗନ୍ନାଥଚରିତାମୃତ ଗ୍ରନ୍ଥ (୧୯୬୩) ଉପରେ ଏ ପ୍ରକାର ବିସ୍ତୃତ ଆଲୋଚନା ଆଧାରିତ, ତାହା ଏକ ସମ୍ପାଦିତ ସଂସ୍କରଣ ନୁହେଁ । ତେଣୁ ପ୍ରଥମେ ଉକ୍ତ ଚରିତାମୃତ ଗ୍ରନ୍ଥର ଏକ ସମ୍ପାଦିତ ସଂସ୍କରଣ ପ୍ରକାଶ ପାଇବା ବାଞ୍ଛନୀୟ ।

ମହାତ୍ମା ଜଗନ୍ନାଥ ଦାସ ବଟଗଣେଶଙ୍କ ଆଗରେ ସ୍ୱପ୍ରଣୀତ ଓଡ଼ିଆ ଭାଗବତ ପଢ଼ି ଭକ୍ତମାନଙ୍କୁ ଶୁଣାଉଥିଲେ; ଏଥିରେ ସନ୍ଦେହ କରିବାର କିଛି ନାହିଁ । କାରଣ, ବଟଗଣେଶଙ୍କ ଅଗ୍ରବର୍ତ୍ତୀ ସ୍ଥାନକୁ ଭାଗବତର ରଚନା କ୍ଷେତ୍ର ଅପେକ୍ଷା ପଠନ, ଶ୍ରବଣ ଓ ଆଲୋଚନା କ୍ଷେତ୍ରରୂପେ ଗ୍ରହଣ କରାଯାଇପାରେ । ତେଣୁ ମୁଦ୍ରିତ ପାଠ ଅପେକ୍ଷା ପୋଥିର ପାଠ ଏ ପ୍ରସଙ୍ଗରେ ଯଥାର୍ଥ ମନେହୁଏ ।

'ଅତିବଡ଼' ପଦଟିକୁ ଆଧୁନିକ ଗବେଷକ ଓ ଆଲୋଚକମାନଙ୍କ ମଧ୍ୟରୁ ଯେ ଯେଉଁ ଭାବରେ ଅର୍ଥ ଅର୍ଥାନ୍ତର କଲେ ମଧ୍ୟ ଏହା ବିଗତ ପ୍ରାୟ ପାଞ୍ଚଶହ ବର୍ଷ ଧରି ଭାଗବତକାର ଜଗନ୍ନାଥ ଦାସଙ୍କ ନାମ ସହିତ ବ୍ୟବହୃତ ହୋଇ ଆସୁଛି । ଏହା ସମସ୍ତେ ମନେ ରଖିବା ଉଚିତ । କବି ଦିବାକର ଦାସଙ୍କ ବର୍ଣ୍ଣନାରୁ ଅତିବଡ଼ ଜଗନ୍ନାଥ ଦାସ ଭାଗବତ ରଚନା କରି ନଥିବା ଏବଂ 'ଷୋଳଚଉପଦୀ' ଲେଖିଥିବା ବ୍ୟକ୍ତି କପିଳେଶ୍ୱରପୁର ଶାସନରେ ଭଗବାନ ଦାସ ଓ ପଦ୍ମାବତୀଙ୍କ ପୁତ୍ର ରୂପେ ଜନ୍ମ ଗ୍ରହଣ କରିଥିବା ପ୍ରମାଣିତ ହୁଏ ନାହିଁ । ତେଣୁ ଜଗନ୍ନାଥ ଦାସ ନାମକ କୌଣସି ପରବର୍ତ୍ତୀ କବିଙ୍କ ପ୍ରଣୀତ 'ଷୋଳଚଉପଦୀ' ଶୀର୍ଷକ ଗ୍ରନ୍ଥଟିର ଉତ୍କର୍ଷ ପ୍ରତିପାଦନ ପାଇଁ 'ଶ୍ରୀଜଗନ୍ନାଥଚରିତାମୃତ'ରେ ତାହାକୁ ଭାଗବତକାର ଅତିବଡ଼ ଜଗନ୍ନାଥ ଦାସଙ୍କ ରଚନା ରୂପେ ଉଲ୍ଲେଖ କରାଯାଇଛି ବୋଲି ମନେ ହୁଏ । ପ୍ରଖ୍ୟାତ କବି ମନୀଷୀଙ୍କ ନାମରେ ଅର୍ବାଚୀନ ଲେଖାକୁ ଭଣିତ କରିବା ଭାରତୀୟ ସାହିତ୍ୟ କ୍ଷେତ୍ରରେ ବିଶେଷତଃ ଓଡ଼ିଶାରେ ଏକ ପରମ୍ପରା ରୂପେ ପ୍ରଚଳିତ । ତେଣୁ ଭାଗବତକାର ଓ ଅତିବଡ଼ ଜଗନ୍ନାଥ ଦାସଙ୍କୁ ଅଭିନ୍ନ ବ୍ୟକ୍ତି ଓ 'ଷୋଳ ଚଉପଦୀ' ରଚୟିତାଙ୍କୁ ଭିନ୍ନ ବ୍ୟକ୍ତି ରୂପେ ଗ୍ରହଣ କରାଯାଇପାରେ ।

ପ୍ରସ୍ତୁତ ପୁସ୍ତକରେ ଭାଗବତକାରଙ୍କ ଅସାଧାରଣ ପାଣ୍ଡିତ୍ୟ, ଅଲୌକିକ ପ୍ରତିଭା, ସାଧନା ଓ ସିଦ୍ଧି ସମ୍ବନ୍ଧରେ ସଂକ୍ଷିପ୍ତ ସୂଚନା ଦିଆଯାଇଛି । ଏହି ସୂଚନାତ୍ମକ ଆଲୋଚନା କବି ଦିବାକର ଦାସଙ୍କ ପ୍ରଦତ୍ତ ତଥ୍ୟ ଉପରେ ଆଧାରିତ । କାରଣ ଶ୍ରୀଜଗନ୍ନାଥଚରିତାମୃତକୁ ବାଦ୍‌ଦେଇ ମହାପୁରୁଷ ଜଗନ୍ନାଥ ଦାସଙ୍କ ଜୀବନୀ ରଚନା କରିବା ସହଜ ମନେହୁଏ ନାହିଁ ।

କବି ଦିବାକର ଦାସ 'ଚୈତନ୍ୟ ଚରିତାମୃତ' ଆଦର୍ଶରେ 'ଶ୍ରୀଜଗନ୍ନାଥ ଚରିତାମୃତ' ରଚନା କରିଛନ୍ତି, ଏଥିରେ ସନ୍ଦେହ ନାହିଁ । ଉଭୟ ଗ୍ରନ୍ଥର ପରିକଳ୍ପନା, ବର୍ଣ୍ଣନା ଶୈଳୀ, ପ୍ରତିପାଦ୍ୟ ବିଷୟ ଓ ରଚନାର ଲକ୍ଷ୍ୟ ଏକପ୍ରକାର କହିଲେ ଅତ୍ୟୁକ୍ତି ହେବ ନାହିଁ । ତେଣୁ ଯେଉଁ ଆଲୋଚକମାନେ ଚୈତନ୍ୟ ଚରିତାମୃତକୁ ଶ୍ରୀଚୈତନ୍ୟଙ୍କ ଜୀବନୀ ବିଷୟରେ ପ୍ରାମାଣିକ ଗ୍ରନ୍ଥରୂପେ ସ୍ୱୀକାର କରୁଛନ୍ତି, ସେମାନେ ମହାପୁରୁଷ ଜଗନ୍ନାଥ ଦାସଙ୍କ ଜୀବନୀ ପ୍ରସଙ୍ଗରେ ଶ୍ରୀଜଗନ୍ନାଥ ଚରିତାମୃତ ଗ୍ରନ୍ଥକୁ ପ୍ରାମାଣିକ ଗ୍ରନ୍ଥରୂପେ ଗ୍ରହଣ କରିବାରେ ଆପତ୍ତିର କିଛି କାରଣ ନାହିଁ । ଶ୍ରୀ ଚୈତନ୍ୟ ଯଦି ଚତୁର୍ଭୁଜ ଅଥବା ଷଡ଼ଭୁଜ ହୋଇପାରିଲେ, ବିଧିବଦ୍ଧ ଭାବେ ଶାସ୍ତ୍ର ଅଧ୍ୟୟନ ନକରି ସର୍ବଶାସ୍ତ୍ରପାରଦର୍ଶୀ ରୂପେ ସମ୍ମାନିତ ହେଲେ ଏବଂ ପରିଶେଷରେ ଶ୍ରୀ ଜଗନ୍ନାଥଙ୍କ କଳେବରରେ ଲୀନ ହୋଇପାରିଲେ, ତେବେ ମହାତ୍ମା ଜଗନ୍ନାଥ ଦାସ ଅସାଧାରଣ ସିଦ୍ଧସାଧକ ଓ ଐଶୀଶକ୍ତିସମ୍ପନ୍ନ ହେବାରେ

ଏବଂ ଅଷ୍ଟଭୁଜ ଧାରଣ କରିବାରେ ଅବଶ୍ୟାପର ପ୍ରଶ୍ନ ଉଠୁଛି କାହିଁକି ? ଭାରତୀୟ ସିଦ୍ଧସାଧକ, ମହାପୁରୁଷମାନଙ୍କ ଜୀବନ ଚରିତରେ ଏପରି ବହୁ ଅଲୌକିକ ଘଟଣାବଳୀର ଅବତାରଣା କରାଯାଇଥିବାର ଦୃଷ୍ଟାନ୍ତ ବିରଳ ନୁହେଁ । ତେଣୁ କବି ଦିବାକର ଦାସ ତାଙ୍କ ଗ୍ରନ୍ଥରେ ସେହି ପ୍ରାଚୀନ ପରମ୍ପରାକୁହିଁ ଅନୁସରଣ କରିଛନ୍ତି । କାରଣ ନିଜର ଗୁରୁ ପରମ୍ପରା ଓ ସମ୍ପ୍ରଦାୟ ମତ ପ୍ରତିଷ୍ଠା ଥିଲା ଏହି ଗ୍ରନ୍ଥ ରଚନାର ମୂଳ ଲକ୍ଷ୍ୟ ।

ଶ୍ରୀଜଗନ୍ନାଥଚରିତାମୃତରେ କବି ଦିବାକର ଦାସ ନୀଳାଚଳନାଥ ଶ୍ରୀଜଗନ୍ନାଥ ଓ ମହାପୁରୁଷ ଜଗନ୍ନାଥ ଦାସଙ୍କ ଗୌରବ କଥାହିଁ କୀର୍ତ୍ତନ କରିଛନ୍ତି । କିନ୍ତୁ ପ୍ରଶ୍ନ ଉଠୁଛି, ଶ୍ରୀ ଚୈତନ୍ୟଙ୍କ ପ୍ରରୋଚନାରେ ଭାଗବତକାର ଜଗନ୍ନାଥ ଦାସ କି'ଣ ଶ୍ରୀରାଧାକୃଷ୍ଣଙ୍କ ଉପାସକ ହୋଇଥିଲେ ଓ 'ଷୋଳଚଉପଦୀ' ରଚନା କରିଥିଲେ ? ଭାଗବତକାର ଜଗନ୍ନାଥ ଦାସ ଶ୍ରୀଜଗନ୍ନାଥଙ୍କ ପରମଭକ୍ତ ଥିଲେ । ଭାଗବତରେ ସେ ଶ୍ରୀଜଗନ୍ନାଥଙ୍କୁ ନୃସିଂହ, ଶ୍ରୀକୃଷ୍ଣ, ଗୋପୀନାଥ ରୂପରେ ସ୍ତୁତି କରିଥିଲେ ମଧ୍ୟ କୁତ୍ରାପି ରାଧାମାଧବ, ରାଧାବଲ୍ଲଭ, ବୃନ୍ଦାବନେଶ ଅଥବା ସେହିପରି ଅନ୍ୟ କୌଣସି ନାମରେ ନିଜର ଇଷ୍ଟଦେବତାଙ୍କୁ ସ୍ତୁତି କରିଥିବାର ଦେଖାଯାଏ ନାହିଁ । ତେବେ ସେ 'ଷୋଳଚଉପଦୀ' ଗ୍ରନ୍ଥ ଲେଖିଲେ କିପରି ? ଶ୍ରୀଜଗନ୍ନାଥ ଚରିତାମୃତରେ ବର୍ଣ୍ଣିତ ଶ୍ରୀ ରାଧାକୃଷ୍ଣ ମୂର୍ତ୍ତିତତ୍ତ୍ୱ କେବଳ ଷୋଳଚଉପଦୀ ନୁହେଁ, ଶ୍ରୀରାଧାରସ ମଞ୍ଜରୀ, ଉପାସନାଶତକ, ନୀଳାଦ୍ରି ବିଳାସ ପ୍ରଭୃତି ଗ୍ରନ୍ଥଗୁଡ଼ିକରେ ମଧ୍ୟ ଆଲୋଚିତ ହୋଇଛି । ଭାଷା, ବିଷୟବସ୍ତୁର ଉପସ୍ଥାପନା, ପର୍ଯ୍ୟାଲୋଚନା ଓ ସିଦ୍ଧାନ୍ତର ଅବତାରଣା ଦୃଷ୍ଟିରୁ ଏଗୁଡ଼ିକୁ ଭାଗବତକାର ଶ୍ରୀ ଜଗନ୍ନାଥ ଦାସଙ୍କ ରଚନା ବିଶେଷତଃ ୧୭୫୦ ଖ୍ରୀଷ୍ଟାବ୍ଦର ପୂର୍ବବର୍ତ୍ତୀ ରଚନା ରୂପେ ଗ୍ରହଣ କରିବା ସମ୍ଭବ ନୁହେଁ । ତେଣୁ ଭାଗବତକାରଙ୍କ ଜୀବନଚରିତ ବର୍ଣ୍ଣନା କ୍ରମେ କବି ଦିବାକର ଦାସ ସ୍ୱ ସମ୍ପ୍ରଦାୟମତର ପରିପୋଷକ ପରବର୍ତ୍ତୀକାଳର 'ଷୋଳଚଉପଦୀ' ରଚୟିତା ଅନ୍ୟ କୌଣସି ଜଗନ୍ନାଥ ଦାସଙ୍କୁ ଚରିତାମୃତରେ ସ୍ଥାନ ଦେଇଥିବାର ମନେ ହୁଏ ।

ସ୍ୱୟଂ ଜଗନ୍ନାଥ ଦାସ ନିଜର ରଚନାବଳୀ ସମ୍ପର୍କରେ କେଉଁଠି କିଛି ଉଲ୍ଲେଖ କରିନାହାନ୍ତି । ଆଲୋଚକମାନଙ୍କମଧ୍ୟରୁ ଯେଉଁମାନେ ତାଙ୍କ ରଚନା-ବଳୀର ତାଲିକା ପ୍ରସ୍ତୁତ କରିଛନ୍ତି, ସେମାନେ ମଧ୍ୟ ତାଙ୍କ ତାଲିକାର ଆଧାର ବିଷୟରେ କୌଣସି ସୂଚନା ଦେଇନାହାନ୍ତି । ଜଗନ୍ନାଥ ଦାସଙ୍କ ନାମ ଥିବା ଅର୍ବାଚୀନତମ ଗ୍ରନ୍ଥକୁ ମଧ୍ୟ କେତେକ ଆଲୋଚକ ମହାତ୍ମା ଜଗନ୍ନାଥ ଦାସଙ୍କ

ରଚନା ରୂପେ ଉଲ୍ଲେଖ କରିବାକୁ କୁଣ୍ଠିତ ହୋଇନାହାନ୍ତି । ଏହା ଫଳରେ ଗୋଟିଏ ତାଲିକାରେ ଏକ ଗ୍ରନ୍ଥ ଏକାଧିକ ନାମରେ ସ୍ଥାନିତ ହେବା ସଙ୍ଗେ ସଙ୍ଗେ ବର୍ତ୍ତମାନ ଜଗନ୍ନାଥ ଦାସଙ୍କ ରଚନାବଳୀର ସଂଖ୍ୟା ୭୦ରୁ ଅଧିକ ହେଲାଣି । ତେଣୁ ତାଙ୍କ ପ୍ରଣୀତ ଭାଗବତ ବ୍ୟତୀତ ଅନ୍ୟ ଗ୍ରନ୍ଥଗୁଡ଼ିକ ସମ୍ପାଦିତ ଓ ପ୍ରକାଶିତ ହେବା ପରେ ତୁଳନାତ୍ମକ ଅଧ୍ୟୟନ ଦ୍ୱାରାହିଁ ଏହି ସମସ୍ୟାର ସମାଧାନ ସହଜ ହୋଇ ପାରିବ ।

ଶ୍ରୀମଦ୍‌ଭାଗବତର ବିଷୟବସ୍ତୁ ଉପରେ ଆଧାରିତ ଜଗନ୍ନାଥ ଦାସଙ୍କ ନାମରେ ଭଣିତ ଓ ନବାକ୍ଷରୀ ବୃତ୍ତରେ ରଚିତ ଶ୍ରେଷ୍ଠ ବଡ଼ ଗ୍ରନ୍ଥଗୁଡ଼ିକ ମହାପୁରୁଷ ଜଗନ୍ନାଥ ଦାସଙ୍କ ରଚନା ବୋଲି ସ୍ୱୀକାର କରିବାରେ କୌଣସି ଆପତ୍ତି ରହି ନପାରେ । କିନ୍ତୁ ସେଗୁଡ଼ିକର ପାଠ, ମୁଦ୍ରକ ଓ ପ୍ରକାଶକଙ୍କ ଦ୍ୱାରା ଯେପରି ପରିବର୍ତ୍ତିତ, ସଂଶୋଧିତ ଓ ସଂଯୋଜିତ ହୋଇଛି ତାହା ନିଶ୍ଚିତ ଭାବେ ଜଗନ୍ନାଥ ଦାସଙ୍କ ରଚନାବଳୀ ସମୀକ୍ଷା କ୍ଷେତ୍ରରେ ନାନା ପ୍ରତିବନ୍ଧକ ସୃଷ୍ଟି କରିଛି । ତଥାପି ହରିଜନ୍ମ, ଧ୍ରୁବଚରିତ, ରାସକ୍ରୀଡ଼ା, ଗଜସ୍ତୁତି ପ୍ରଭୃତି ଭାଗବତର ବିଭିନ୍ନ ସ୍କନ୍ଧ ଓ ଅଧ୍ୟାୟ ଅନ୍ତର୍ଗତ ପାଠକୁ ନେଇ ସ୍ୱତନ୍ତ୍ର ଆକାରରେ ପ୍ରକାଶିତ ହୋଇଥିବାରୁ ସେଗୁଡ଼ିକ ମହାତ୍ମା ଜଗନ୍ନାଥ ଦାସଙ୍କ ରଚନା ରୂପେ ଗ୍ରହଣୀୟ । ତଦ୍‌ବ୍ୟତୀତ ଜଗନ୍ନାଥ ଦାସଙ୍କ ନାମରେ ଭଣିତ ହୋଇଥିବା ଅନ୍ୟାନ୍ୟ ସଂସ୍କୃତ ଓ ଓଡ଼ିଆ ଗ୍ରନ୍ଥଗୁଡ଼ିକୁ ମହାପୁରୁଷ ଜଗନ୍ନାଥଙ୍କ ରଚନା ରୂପେ ଗ୍ରହଣ କରିବାପାଇଁ ଅଦ୍ୟାବଧି ଯଥେଷ୍ଟ ପ୍ରମାଣ ଆମର ହସ୍ତଗତ ହୋଇନାହିଁ ।

ପ୍ରସ୍ତୁତ ପୁସ୍ତକର ବିଷୟବସ୍ତୁକୁ ଏଗାର ଭାଗରେ ବିଭକ୍ତ କରାଯାଇଛି । ସେଥିରେ ପୃଷ୍ଠଭୂମି, ଜୀବନଚରିତର ଆଧାର, ଜଗନ୍ନାଥ ଦାସଙ୍କ ଜନ୍ମତିଥି, ବାଲ୍ୟ-ଜୀବନ ଓ ଶିକ୍ଷା, ପୁରାଣ ପାଠ ଓ ଭାଗବତ ରଚନା, ଶ୍ରୀ ଚୈତନ୍ୟ ଓ ଜଗନ୍ନାଥ ଦାସ, ସାଧନା ଓ ସିଦ୍ଧି, ମହାପ୍ରସ୍ଥାନ, ରଚନାବଳୀ, ଭାଗବତର ପ୍ରଭାବ ଓ ପ୍ରତିଷ୍ଠା ତଥା ଭାଗବତ ସୂକ୍ତି-ମୁକ୍ତାବଳୀ ପ୍ରସଙ୍ଗ ସଂକ୍ଷେପରେ ଆଲୋଚିତ ହୋଇଛି । ତେଣୁ ଏହାକୁ ମହାତ୍ମା ଜଗନ୍ନାଥ ଦାସଙ୍କ ସମ୍ବନ୍ଧରେ ଏକ ସୂଚନାତ୍ମକ ପୁସ୍ତକ ରୂପେ ଗ୍ରହଣ କରାଯାଇପାରେ ।

ପ୍ରକାଶିତ 'ଶ୍ରୀଜଗନ୍ନାଥଚରିତାମୃତ ବ୍ୟତୀତ ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ଥିବା ଚରିତାମୃତର ନିମ୍ନଲିଖିତ ପୋଥିଗୁଡ଼ିକର ସାହାଯ୍ୟ ଏହି ପୁସ୍ତକରେ ଆବଶ୍ୟକସ୍ଥଳେ ନିଆଯାଇଛି—

| ପୋଥି ନମ୍ବର | ପ୍ରତିଲିପି ସମୟ |
|---|---|
| ORH/22 | ୧୮୦୩ ମସିହା |
| ORH/77 | ୧୮୪୯ ,, |
| ORH/90 | ୧୮୭୪ ,, |
| ORH/78 | ୧୮୮୭ ,, |
| ORH/41 | ୧୮୮୮ ,, |

ପରିଶେଷରେ ଓଡ଼ିଶା ସାହିତ୍ୟ ଏକାଡେମୀର କର୍ତ୍ତୃପକ୍ଷଙ୍କୁ ଏହି ପବିତ୍ର ଉଦ୍ୟମ ପାଇଁ ଅଶେଷ ଧନ୍ୟବାଦ ଜ୍ଞାପନ କରୁଛି । ବହୁ ସମୟ ଓ ଶ୍ରମ ବିନିମୟରେ ଏହି ପୁସ୍ତକର ପାଣ୍ଡୁଲିପି ପ୍ରସ୍ତୁତ କରିଥିବାରୁ ମୋର କନ୍ୟା ଆୟୁଷ୍ମତୀ ମୈତ୍ରେୟୀ ପଣ୍ଡାଙ୍କୁ ଆଶୀର୍ବାଦ ଜଣାଉଛି । ଓଡ଼ିଶାର ସୁଧୀ ସାଧାରଣ ପାଠକବର୍ଗ ଏଥିରେ ଥିବା ତ୍ରୁଟି ବିଚ୍ୟୁତିକୁ ନିଜର ଉଦାର ଗୁଣରେ କ୍ଷମା ଦେଇ ପୁସ୍ତକଟିକୁ ଆଦର କଲେ ମୋର ଶ୍ରମ ସାର୍ଥକ ହେବ ।

ବିନୀତ

**ଭଗବାନ ପଣ୍ଡା**



# ବିଷୟ ସୂଚୀ





# ସଙ୍କେତ ସାରଣୀ

| | | |
|---|---|---|
| ଚୈ: ଭା: | — | ଚୈତନ୍ୟ ଭାଗବତ |
| ଜ: ଚ: | — | ଶ୍ରୀଜଗନ୍ନାଥଚରିତାମୃତ |
| ଜ: ଲୀ: | — | ଜଗନ୍ନାଥ ଲୀଳାମୃତ |
| ଦା: ଭ: ର: | — | ଦାର୍ଢ୍ୟତା ଭକ୍ତି ରସାମୃତ |
| ଗୀ: ଚୂ: | — | ଗୀତ୍ୟଗୁପ୍ତ ଚୂଡ଼ାମଣି |
| ଭ: ଜ: | — | ଭକ୍ତକବି ଜଗନ୍ନାଥ ଦାସ |
| ଭାଗ | — | ଭାଗବତ |
| ମ: ଜ: | — | ମହାପୁରୁଷ ଜଗନ୍ନାଥ ଦାସ ଓ ଭାଗବତ ସମୀକ୍ଷା |
| ବୈ: ଲୀ: | — | ବୈଷ୍ଣବ ଲୀଳାମୃତ |



# ପୃଷ୍ଠଭୂମି

ଓଡ଼ିଶା ଇତିହାସର ମଧ୍ୟଯୁଗରେ ଧାର୍ମିକ, ସାମାଜିକ ଓ ସାଂସ୍କୃତିକ ଜୀବନ କ୍ଷେତ୍ରରେ ଏକ ମହାନ୍ ବୈପ୍ଳବିକ ଆନ୍ଦୋଳନ ଆରମ୍ଭ ହୋଇଥିଲା । ସବୁ କ୍ଷେତ୍ରରେ ସଂସ୍କାର ଆଣିବା ସଙ୍ଗେ ସଙ୍ଗେ ଓଡ଼ିଆ ଜାତିକୁ ନୂତନ ଦିଗ୍‌ଦର୍ଶନ ଦେବା ଏହି ଆନ୍ଦୋଳନର ଲକ୍ଷ୍ୟ ଥିଲା । ଓଡ଼ିଆ ସାହିତ୍ୟ ଥିଲା ଏହାର ମୁଖ୍ୟ ମାଧ୍ୟମ । ମଧ୍ୟଯୁଗୀୟ ଓଡ଼ିଆ ଭାଷା ଓ ସାହିତ୍ୟ ଯେଉଁ ସଂସ୍କାରବାଦୀ ଓ ସୃଜନଶୀଳ କବିମାନଙ୍କ ଅବଦାନରେ ପରିପୁଷ୍ଟ ହୋଇଥିଲା, ସେମାନଙ୍କ ମଧ୍ୟରେ ମହାକବି ରାମଭକ୍ତ ବଳରାମ ଦାସ, ଶ୍ରୀକୃଷ୍ଣ ଜଗନ୍ନାଥଙ୍କ ଭକ୍ତ ଜଗନ୍ନାଥ ଦାସ, ସିଦ୍ଧକବି ଅଚ୍ୟୁତାନନ୍ଦ ଦାସ, କବି ଯଶୋବନ୍ତ ଦାସ ଓ ଶିଶୁ ଅନନ୍ତ ଦାସ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ଏହି ସିଦ୍ଧସାଧକ ଓ ଭକ୍ତଙ୍କ ମଧ୍ୟରେ ବୟସ ଦୃଷ୍ଟିରୁ ବଳରାମ ଜ୍ୟେଷ୍ଠ ଓ ଅଚ୍ୟୁତାନନ୍ଦ କନିଷ୍ଠ ଥିଲେ ଏବଂ ଯଶୋବନ୍ତ ଅନନ୍ତଙ୍କଠାରୁ ଓ ଅନନ୍ତ ଅଚ୍ୟୁତାନନ୍ଦଙ୍କ ଠାରୁ ବୟସରେ ବଡ଼ ଥିଲେ । ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ଏହି ପାଞ୍ଚଜଣ ଆଚାର୍ଯ୍ୟଙ୍କ ଜୀବନାଦର୍ଶ, ଆଧ୍ୟାତ୍ମିକ ଚିନ୍ତା, ସଂସ୍କାର ଭାବନା ଓ ରଚନାଶୈଳୀ ଷୋଡ଼ଶ ଶତାବ୍ଦୀର ପ୍ରାରମ୍ଭରୁ ଅଷ୍ଟାଦଶ ଶତାବ୍ଦୀ ଶେଷ ପର୍ଯ୍ୟନ୍ତ କବି କୋବିଦମାନଙ୍କ ଦ୍ୱାରା ସାହିତ୍ୟିକ ରଚନା କ୍ଷେତ୍ରରେ ନିରବଚ୍ଛିନ୍ନ ଭାବେ ଅନୁସୃତ ଓ ଅନୁକୃତ ହୋଇଥିଲା । ଓଡ଼ିଆ ସାହିତ୍ୟର ଇତିହାସରେ ଏହି ସମୟ ପଞ୍ଚସଖା ଯୁଗ ନାମରେ ଅଭିହିତ ।

ଶୂଦ୍ରମୁନି ସାରଳା ଦାସ ଓଡ଼ିଆ ଭାଷା ଓ ସାହିତ୍ୟର ବେଦବ୍ୟାସ ରୂପେ ଅଭିହିତ । ସାରଳାଦାସଙ୍କ ରଚନାବଳୀ ଆଧାରରେ ସାରଳାଯୁଗ ପରିକଳ୍ପିତ । ସାରଳା ଦାସଙ୍କ ମହାଭାରତାଦି ଗ୍ରନ୍ଥ ରଚନା ପରେ ପରେ ବଳରାମ ଦାସ 'ଜଗମୋହନ ରାମାୟଣ', ଜଗନ୍ନାଥ ଦାସ 'ଭାଗବତ' ଓ ଅଚ୍ୟୁତାନନ୍ଦ ଦାସ 'ହରିବଂଶ' ରଚନା କରିଥିଲେ । ଭାରତୀୟ ଇତିହାସ ଓ ସଂସ୍କୃତିର ଆଧାରଭୂତ ଏହି ଗ୍ରନ୍ଥଗୁଡ଼ିକ ଓଡ଼ିଆ ଭାଷାରେ ରଚିତ ହେବା ସଙ୍ଗେ ସଙ୍ଗେ ଓଡ଼ିଆ ସାହିତ୍ୟର ମଧ୍ୟଯୁଗରେ ବିଭିନ୍ନ ସଂହିତା, ଶାସ୍ତ୍ର, ପୁରାଣ, ଭାଗବତ, ଗୀତା, ମାଳିକା,

କାହାଣୀ, ଯୋଗ, ଚନ୍ଦ୍ରଗନ୍ଥ ସହିତ ଭଜନ, ଜଣାଣ, ଚଉତିଶା, ଚଉପଦୀ ପ୍ରଭୃତି ରଚନାର ଦୃଢଭିତ୍ତି ସ୍ଥାପିତ ହୋଇଥିଲା । ଓଡ଼ିଆ ସାହିତ୍ୟର ଏହି ବିଶାଳ ଓ ବିଚିତ୍ର ରଚନା ସମ୍ଭାରର ତୁଳନା ସମକାଳୀନ ଭାରତୀୟ ସାହିତ୍ୟ, ବିଶେଷତଃ ପୂର୍ବାଞ୍ଚଳୀୟ ସାହିତ୍ୟରେ ପ୍ରାପ୍ୟ ବିରଳ କହିଲେ ଅତ୍ୟୁକ୍ତି ହେବ ନାହିଁ । ଶ୍ରୀଜଗନ୍ନାଥ ଏହି ବିଶାଳ ସାହିତ୍ୟ ସମ୍ଭାରର ଧ୍ୟେୟ, ଉପାସ୍ୟ ଓ ପ୍ରତିପାଦ୍ୟ ରୂପେ ଗୃହୀତ ହୋଇଥିଲେ ।

ପୁରୁଷୋତ୍ତମ ଶ୍ରୀକୃଷ୍ଣ-ଜଗନ୍ନାଥ ହେଲେ ଭାରତୀୟ ସଂସ୍କୃତି ଓ ଓଡ଼ିଆ ଜାତିର ଜାତୀୟ ପ୍ରତୀକ । ଓଡ଼ିଶାର ଐତିହ୍ୟ ଓ ସଂସ୍କୃତି ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ର କରି କ୍ରମବିକାଶ ଲାଭ କରିଛି । ଆଧୁନିକ ଯୁଗ ପର୍ଯ୍ୟନ୍ତ ଶ୍ରୀଜଗନ୍ନାଥ ହିଁ ସମଗ୍ର ଓଡ଼ିଆ ସାହିତ୍ୟ, ବିଶେଷତଃ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ ପ୍ରେରଣାର ମୂଳ ଉତ୍ସ ରୂପେ ଗୃହୀତ । ସାରଳା ସାହିତ୍ୟରେ ଶ୍ରୀଜଗନ୍ନାଥ ବିଭିନ୍ନ ଧର୍ମମତବାଦର ସମନ୍ୱୟାତ୍ମକ ସର୍ବଶ୍ରେଷ୍ଠ ଉପାସ୍ୟ ଓ ଓଡ଼ିଆ ଜାତିର ଇଷ୍ଟ ଦେବତା ଏବଂ ଏକରେ ଅନେକ ଓ ଅନେକର ଏକ ପ୍ରତୀକ ରୂପେ ପ୍ରତିପାଦିତ । ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟଙ୍କ ଠାରୁ ଆରମ୍ଭ କରି ଶ୍ରୀଜଗନ୍ନାଥ ବୈଦିକ, ତାନ୍ତ୍ରିକ, ସ୍ମାର୍ତ୍ତ, ପାଞ୍ଚରାତ୍ର ଓ ବୈଷ୍ଣବ ପଦ୍ଧତିରେ ଉପାସିତ ଓ ପୂଜିତ ହୋଇଆସିଛନ୍ତି ।

ଆଧ୍ୟାତ୍ମିକ ଧାରାରେ ଆସ୍ତିକ ମତବାଦ ଅନୁଯାୟୀ ଶ୍ରୀଶଙ୍କରାଚାର୍ଯ୍ୟ (୭୮୮—୮୨୦ ଖ୍ରୀ:ଅ:) ଅଦ୍ୱୈତବାଦ, ଶ୍ରୀରାମାନୁଜାଚାର୍ଯ୍ୟ (୧୦୧୭—୧୧୩୧ ଖ୍ରୀ: ଅ: ) ବିଶିଷ୍ଟାଦ୍ୱୈତବାଦ, ଶ୍ରୀମାଧ୍ୱାଚାର୍ଯ୍ୟ (୧୧୯୯—୧୨୭୮ ଖ୍ରୀ:ଅ:) ଦ୍ୱୈତବାଦ, ଶ୍ରୀରାମାନନ୍ଦ, ଏକେଶ୍ୱରବାଦ, ଶ୍ରୀନିମ୍ବାର୍କ (୧୦୫୬—୧୧୬୫ ଖ୍ରୀ:ଅ:) ଦ୍ୱୈତାଦ୍ୱୈତବାଦ, ଶ୍ରୀବିଷ୍ଣୁସ୍ୱାମୀ (୧୧୨୮ ଖ୍ରୀ:ଅ:) ଓ ଶ୍ରୀବଲ୍ଲଭାଚାର୍ଯ୍ୟ (୧୪୭୯—୧୫୩୧ ଖ୍ରୀ:ଅ:) ଶୁଦ୍ଧା ଦ୍ୱୈତବାଦର ପ୍ରବର୍ତ୍ତକ ଓ ପ୍ରଚାରକ ଥିଲେ ।

ପ୍ରାତଃ ସ୍ମରଣୀୟ ଏହି ମହାପୁରୁଷମାନଙ୍କ ମଧ୍ୟରୁ ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟଙ୍କର ସାଧନାକ୍ଷେତ୍ର ଥିଲା ଆକୁମାରୀ ହିମାଚଳ ବିସ୍ତୃତ ସମଗ୍ର ଭାରତବର୍ଷ । ରାମାନୁଜାଚାର୍ଯ୍ୟ ଥିଲେ ଶ୍ରୀବୈଷ୍ଣବ ସମ୍ପ୍ରଦାୟଭୁକ୍ତ ଓ ଶ୍ରୀରଙ୍ଗ ଥିଲା ତାଙ୍କର ସାଧନାକ୍ଷେତ୍ର । ମାଧ୍ୱାଚାର୍ଯ୍ୟ ବ୍ରହ୍ମ ସମ୍ପ୍ରଦାୟର ଆଚାର୍ଯ୍ୟ ଥିଲେ । ତାଙ୍କର ସାଧନାକ୍ଷେତ୍ର ଥିଲା ଉଡ଼ୁପି । ସନକାଦି ସମ୍ପ୍ରଦାୟର ଆଚାର୍ଯ୍ୟ ନିମ୍ବାର୍କଙ୍କର ସାଧନା ଭୂମି ଥିଲା ବୃନ୍ଦାବନ । ବଲ୍ଲଭାଚାର୍ଯ୍ୟ ରୁଦ୍ର ସମ୍ପ୍ରଦାୟର ଆଚାର୍ଯ୍ୟ ଥିଲେ । ଉଦୟପୁର ତାଙ୍କର ସାଧନାକ୍ଷେତ୍ର ଥିଲା । ଗୌଡ଼ୀୟ ସମ୍ପ୍ରଦାୟର ଆଚାର୍ଯ୍ୟ ଶ୍ରୀଚୈତନ୍ୟଙ୍କ

ସାଧନାକ୍ଷେତ୍ର ଥିଲା ପୁରୁଷୋତ୍ତମ ପୁରୀ । କେବଳ ମହାପ୍ରଭୁ ଶ୍ରୀଚୈତନ୍ୟ ନୁହନ୍ତି, ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟଙ୍କଠାରୁ ଆରମ୍ଭ କରି ଅନ୍ୟ ଆଚାର୍ଯ୍ୟମାନଙ୍କର ମଧ୍ୟ ପ୍ରକୃଷ୍ଟ ପ୍ରଚାର କେନ୍ଦ୍ର ଥିଲା ଶ୍ରୀଜଗନ୍ନାଥ ପୁରୀ । କାରଣ ପ୍ରତ୍ୟକ୍ଷ ଭାବେ ହେଉ ଅଥବା ପରୋକ୍ଷଭାବେ ହେଉ ଷଡ଼୍ ବୈଷ୍ଣବ ସମ୍ପ୍ରଦାୟରେ ଶ୍ରୀଜଗନ୍ନାଥ ପରଂବ୍ରହ୍ମ, ବିଷ୍ଣୁ-ନାରାୟଣ, ବିଷ୍ଣୁ-ଲକ୍ଷ୍ମୀ, ଗୋପୀଜନବଲ୍ଲଭ, ଗୋପାଳକୃଷ୍ଣ ଓ ପ୍ରେମଧର୍ମର ଶ୍ରୀରାଧାକୃଷ୍ଣଙ୍କ ପ୍ରତୀକ ରୂପେ ଗୃହୀତ ହୋଇଥିଲେ । ତେଣୁ ସ୍ୱମତର ପରିପ୍ରଚାର ଓ ପ୍ରସାର ପାଇଁ ପୁରୀରେ ଭକ୍ତ ବୈଷ୍ଣବ ସମ୍ପ୍ରଦାୟଙ୍କର ଏକାଧିକ ମଠ ଥିଲା ଏବଂ ସେଥିରେ ସ୍ୱସ୍ୱ ଇଷ୍ଟ ଦେବତାଙ୍କ ପ୍ରତିଷ୍ଠା କରାଯାଇଥିଲା । ପୁରୀରେ ଥିବା ବିଭିନ୍ନ ସମ୍ପ୍ରଦାୟର ମଠଗୁଡ଼ିକରେ ପ୍ରାଚୀନ ପରମ୍ପରା ଅନୁଯାୟୀ ଅଦ୍ୟାବଧି ପୂଜା, ଉପାସନା, ଆଚାର ବ୍ୟବହାର ପ୍ରଚଳିତ ଥିବାର ଦେଖାଯାଏ ।

ମହାପୁରୁଷ ଶ୍ରୀଚୈତନ୍ୟଙ୍କ ପୂର୍ବରୁ ଓଡ଼ିଶାରେ ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ରକରି ପ୍ରେମଧର୍ମ ଓ ଭକ୍ତି ଧର୍ମର ପୂର୍ଣ୍ଣ ବିକାଶ ସାଧିତ ହୋଇଥିଲା । ଶ୍ରୀକ୍ଷେତ୍ରରେ ରହି ଶ୍ରୀଚୈତନ୍ୟ ସେହି ପ୍ରେମ ଓ ଭକ୍ତିର ସମନ୍ୱୟରେ ଯେଉଁ 'ପ୍ରେମଭକ୍ତି' ମତବାଦର ପ୍ରବର୍ତ୍ତନ କଲେ ତାହା, ପରେ 'ଗୌଡ଼ୀୟ ବୈଷ୍ଣବ' ଧର୍ମ ବା ଦର୍ଶନ ନାମରେ ଅଭିହିତ ହେଲା । କିନ୍ତୁ ଏପରି ନାମକରଣର କୌଣସି ଯଥାର୍ଥତା ଥିଲା ପରି ବୋଧହୁଏ ନାହିଁ । କାରଣ, ଶ୍ରୀଚୈତନ୍ୟଙ୍କର ଇଷ୍ଟଥିଲେ ଶ୍ରୀକୃଷ୍ଣ-ଜଗନ୍ନାଥ । ହରିନାମ ସଙ୍କୀର୍ତ୍ତନର ପ୍ରଚାର ଓ ପ୍ରସାର ଏବଂ ନାମକୀର୍ତ୍ତନ ଦ୍ୱାରା ଜାତିବର୍ଣ୍ଣ, ଧର୍ମ, ବିଶ୍ୱାସ ନିର୍ବିଶେଷରେ ସମସ୍ତଙ୍କର ପୁରୁଷାର୍ଥ ସିଦ୍ଧି ପାଇଁ ସେ ନିଜ ଜୀବନକୁ ଉତ୍ସର୍ଗ କରିଥିଲେ । ତେଣୁ ଶ୍ରୀଚୈତନ୍ୟଙ୍କ ପ୍ରବର୍ତ୍ତିତ ପ୍ରେମଭକ୍ତି ମତବାଦକୁ ଗୌଡ଼ୀୟ ବୈଷ୍ଣବ ଧର୍ମ ନ କହି ବରଂ 'କୃଷ୍ଣଧର୍ମ' ରୂପେ ଅଭିହିତ କରାଯାଇ ପାରେ । ଶ୍ରୀଚୈତନ୍ୟଙ୍କ ପୁରୁଷୋତ୍ତମ ଆଗମନର ବହୁ ପୂର୍ବରୁ ଓଡ଼ିଶାରେ ଯେଉଁ ବୈଷ୍ଣବଧର୍ମ ପ୍ରତିଷ୍ଠା ଓ ଲୋକପ୍ରିୟତା ଅର୍ଜନ କରିଥିଲା ତାହା ଯୋଗ, ତନ୍ତ୍ର, ପ୍ରେମ ଓ ଭକ୍ତିର ସମନ୍ୱୟାତ୍ମକ ରୂପନେଇ ବିକଶିତ ହୋଇଥିଲା । ଓଡ଼ିଶାର ବୈଷ୍ଣବମାନେ ଜ୍ଞାନଯୋଗ ଓ ଭକ୍ତିଯୋଗକୁ ସାଧନାର ପ୍ରଧାନ ମାର୍ଗ ଏବଂ ଶ୍ରୀଜଗନ୍ନାଥଙ୍କୁ ଉପାସ୍ୟ ଓ ପ୍ରତିପାଦ୍ୟ ତତ୍ତ୍ୱର ମୂଳ ରୂପେ ଗ୍ରହଣ କରିଥିଲେ । ମଧ୍ୟଯୁଗୀୟ ଓଡ଼ିଶାରେ ଧର୍ମୀୟ ଓ ଆଧ୍ୟାତ୍ମିକ ଚେତନାର ଏହାହିଁ ପୃଷ୍ଠଭୂମି ଥିଲା ।

ଉତ୍କଳ ସମ୍ରାଟ୍ ଗଜପତି କପିଳେନ୍ଦ୍ର ଦେବଙ୍କଠାରୁ (୧୪୩୫—୧୪୬୭ ଖ୍ରୀ:ଅ:) ଆରମ୍ଭ—ଗୋଦାବରୀ ବିସ୍ତୃତ ରାଷ୍ଟ୍ରରେ ଓଡ଼ିଆ ଭାଷା ରାଷ୍ଟ୍ରଭାଷା ବା ରାଜଭାଷା ରୂପେ ସ୍ୱୀକୃତ ହୋଇଥିଲା । ଗଜପତି କପିଳେନ୍ଦ୍ର ଦେବଙ୍କ ରାଜତ୍ୱ

କାଳରେ ମହାକବି ଶୂଦ୍ରମୁନି ସାରଳା ଦାସ ମହାଭାରତ, ରାମାୟଣ, ବିଲଙ୍କା-ରାମାୟଣ, ଚଣ୍ଡୀପୁରାଣ ଓ କେତେକ କ୍ଷୁଦ୍ର କବିତାର ରଚନା ସମ୍ଭାର ମାଧ୍ୟମରେ ଓଡ଼ିଆ ଭାଷା ଓ ସାହିତ୍ୟର ଯେଉଁ ସୁଦୃଢ଼ ଭିତ୍ତିଭୂମି ପ୍ରତିଷ୍ଠା କରିଥିଲେ ତାହାର ଉପରେ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟର ମହାନ କୋଣାର୍କ ଗଢ଼ିଉଠିଲା ।

ସାରଳା ସାହିତ୍ୟ ଓଡ଼ିଶା, ଓଡ଼ିଆ ଜାତି ଓ ଓଡ଼ିଆ ସଂସ୍କୃତିର ପ୍ରାଚୀନତମ ସଂହିତା । ସଂକ୍ଷେପରେ ଏହାକୁ ଓଡ଼ିଶାର ଧର୍ମ ଓ ସମାଜ, ଇତିହାସ ଓ ସଂସ୍କୃତି, ନାରୀ ଓ ପୁରୁଷ ଚରିତ୍ର, ପଲ୍ଲୀ ଓ ନାଗରିକ ଜୀବନ, ଶିଳ୍ପ ଓ କଳା, ଶସ୍ତ୍ର ଓ ଶାସ୍ତ୍ରବିଦ୍ୟା, ପ୍ରାକୃତିକ ପରିବେଶ ଓ ପଶୁପକ୍ଷୀ ଜଗତ, ବିଭିନ୍ନ ବର୍ଗ ଓ କୁଳର ପାରମ୍ପରିକ ଆଚାର ଓ ବିଚାର, ମାନବିକ କର୍ତ୍ତବ୍ୟ, ଚିନ୍ତା ଓ ଚେତନାର ଏକ ବର୍ଣ୍ଣନାତ୍ମକ ମହାନ୍ ସାର୍ଥକ ଅଭିଧାନ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ସାରଳା ମହାଭାରତ ଓଡ଼ିଆ ଭାଷା ଓ ସାହିତ୍ୟର ଉପଲବ୍ଧ ପ୍ରଥମ ଲିଖିତ ଗ୍ରନ୍ଥ । ସମଗ୍ର ଉତ୍ତର ଭାରତରେ ଏହାହିଁ ମହାଭାରତର ପ୍ରଥମ ଓ ପୂର୍ଣ୍ଣାଙ୍ଗ ଭାଷାଗ୍ରନ୍ଥ ରୂପେ ବିବେଚିତ । ମହାକବି ସାରଳା ଦାସଙ୍କ ରଚନା ଶୈଳୀ ଓ ଜାତୀୟ ଚିନ୍ତାଧାରା ଦ୍ୱାରା ପରବର୍ତ୍ତୀ କାଳର ଓଡ଼ିଆ କବିଜଗତ ସର୍ବତୋଭାବେ ପ୍ରଭାବିତ ହୋଇଥିଲା, ଏଥିରେ ସନ୍ଦେହର ଅବକାଶ ନାହିଁ ।

ମହାକବି ସାରଳା ଦାସଙ୍କ ଯଥାର୍ଥ ଦାୟାଦ ରୂପେ ପୂର୍ବୋକ୍ତ ମହାପୁରୁଷଗଣ ହିଁ ତାଙ୍କ ରଚନାକ୍ଷେତ୍ରକୁ ସମୃଦ୍ଧ କରିବା ସଙ୍ଗେ ସଙ୍ଗେ ଓଡ଼ିଆ ସାହିତ୍ୟର ବିଭିନ୍ନ ଦିଗ ଉନ୍ମୋଚନରେ ଆଜୀବନ ସଫଳ ସାଧନା କରିଥିଲେ । ସଂସ୍କୃତ ଭାଷା ଓ ସାହିତ୍ୟର ମୌଳିକ ଉପାଦାନଗୁଡ଼ିକୁ ନେଇ ସାରଳା ଯୁଗରେ ଓଡ଼ିଆ ଭାଷା ଓ ସାହିତ୍ୟର ସାମୁହିକ ବିକାଶ କ୍ଷେତ୍ରରେ ଯେଉଁ ବୀଜାରୋପଣ କରାଯାଇ-ଥିଲା ତାହା ପଞ୍ଚସଖା ଯୁଗର ସଂସ୍କାରବାଦୀ ଆଚାର୍ଯ୍ୟ ଓ କବିମାନଙ୍କ ଦ୍ୱାରା ପତ୍ର-ପୁଷ୍ପ-ଫଳ ସମନ୍ୱିତ ମହାଦ୍ରୁମରେ ପରିଣତ ହେଲା । ତେଣୁ ସାରଳା ଯୁଗରୁ ପଞ୍ଚସଖା ଯୁଗ ମଧ୍ୟରେ ଭାରତୀୟ ଧର୍ମ ଇତିହାସ ସଂସ୍କୃତିର ଆଧାର ଗ୍ରନ୍ଥ ରୂପେ ଅଭିହିତ ସଂସ୍କୃତ, ରାମାୟଣ, ମହାଭାରତ, ଶ୍ରୀମଦ୍‌ଭାଗବତ, ଶ୍ରୀମଦ୍ ଭଗବଦ୍-ଗୀତା ପ୍ରଭୃତିକୁ କବିମାନେ ଓଡ଼ିଆ ଭାଷାରେ ଓ ନିଜସ୍ୱ ଶୈଳୀରେ ରଚନା କଲେ । ଜନସାଧାରଣଙ୍କ ଶିକ୍ଷା ଓ ଜ୍ଞାନ ଅଭିବୃଦ୍ଧିରେ ସେଗୁଡ଼ିକ ଯେପରି ସହାୟକ ହୋଇପାରିବ ସେଥିପାଇଁ ଗ୍ରନ୍ଥଗୁଡ଼ିକର ଶତ ଶତ ପ୍ରତିଲିପି ପ୍ରସ୍ତୁତ ଓ ପ୍ରଚାରିତ ହୋଇଥିଲା । ଫଳରେ ସମାଜ ଓ ସମୟର ଆବଶ୍ୟକତା ପ୍ରତି ଦୃଷ୍ଟି ଦେଇ ସଂସ୍କୃତଜ୍ଞ ପଣ୍ଡିତ, କବି କୋବିଦଗଣ ଧର୍ମ, ଦର୍ଶନ, ପୁରାଣ ସମ୍ବନ୍ଧୀୟ ବିଷୟଗୁଡ଼ିକୁ ଓଡ଼ିଆ ଭାଷାରେ ପ୍ରଚାର, ପ୍ରସାର କରିବା ପାଇଁ ପ୍ରବଳ ଉଦ୍ୟମ

କରିଥିଲେ । ମଧ୍ୟ ଯୁଗର ଏହା ହିଁ ଥିଲା ସାହିତ୍ୟିକ ପୃଷ୍ଠଭୂମି । ଏହି ଆଧ୍ୟାତ୍ମିକ ଓ ସାହିତ୍ୟିକ ପୃଷ୍ଠଭୂମିରେ ମଧ୍ୟଯୁଗର ଧର୍ମୀୟ ସାହିତ୍ୟ ଭବନ ନିର୍ମିତ ହୋଇଥିଲା । ପ୍ରାତଃ ସ୍ମରଣୀୟ ମହାପୁରୁଷ ଭକ୍ତକବି ଜଗନ୍ନାଥ ଦାସ ଥିଲେ ଏହି ଭବନର ଅନ୍ୟତମ ସୁଯୋଗ୍ୟ ମୁଖ୍ୟ ସ୍ଥପତି । ସେହି ଦୃଷ୍ଟିରୁ ଓଡ଼ିଶାର କୃତୀ ସନ୍ତାନଙ୍କ ମଧ୍ୟରେ ଜଗନ୍ନାଥ ଦାସଙ୍କ କୃତି ଓ କୃତିତ୍ୱ ଅବିସ୍ମରଣୀୟ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିକୁ ନୂତନ ଦିଗ୍‌ଦର୍ଶନ ଦେବାରେ, ସମୃଦ୍ଧ କରିବାରେ ଓ ପରବର୍ତ୍ତୀକାଳୀନ ଦାୟାଦମାନଙ୍କୁ ପ୍ରଭାବିତ କରିବାରେ ଜଗନ୍ନାଥ ଦାସ ଯେପରି ନିଜକୁ ଉତ୍ସର୍ଗ କରିଥିଲେ ତାହାର ତୁଳନା ନାହିଁ । ଓଡ଼ିଶାର ଜନଜୀବନରେ ତାଙ୍କର ଅଖଣ୍ଡ ପ୍ରଭାବ ଅଦ୍ୟାପି ଅପ୍ରତିହତ । ଜଗନ୍ନାଥ ଦାସ ଓଡ଼ିଆ ସଭ୍ୟତା, ସଂସ୍କୃତି, ସମାଜ, ଜୀବନାଦର୍ଶ ଓ ନୈତିକତାର ମୂଳ ଉତ୍ସ ରୂପେ ଅଦ୍ୟାପି ମର୍ଯ୍ୟାଦାସମ୍ପନ୍ନ ପଦରେ ପ୍ରତିଷ୍ଠିତ । ଜଗତର ଅଖିଳ ଜନ-ସାଧାରଣଙ୍କ କଲ୍ୟାଣ ପାଇଁ ଜଗନ୍ନାଥ ଦାସ ସାରା ଜୀବନ କପରି ସାଧନାରେ ଅତିବାହିତ କରିଥିଲେ ତାହାର ସୂଚନା ଭାଗବତର ପ୍ରତ୍ୟେକ ସ୍କନ୍ଧ ଓ ପ୍ରତ୍ୟେକ ଅଧ୍ୟାୟରେ ଲିପିବଦ୍ଧ ହୋଇରହିଛି । ମହାପୁରୁଷ ଜଗନ୍ନାଥ ଦାସଙ୍କ ସାଧନା, ତ୍ୟାଗ, ସଂସ୍କାର ନିଷ୍ଠା, ଜାତୀୟତା ଯୁଗ ଯୁଗ ଧରି ଓଡ଼ିଆଜାତି ପକ୍ଷରେ ସ୍ମରଣୀୟ, ଅନୁଶୀଳନୀୟ ଓ ଅନୁସରଣୀୟ ହୋଇରହିବ, ଏଥିରେ ସନ୍ଦେହ ନାହିଁ ।



# ଜୀବନ ଚରିତର ଆଧାର

ଓଡ଼ିଶାର ବିଭିନ୍ନ ସ୍ଥାନରେ ଓ ଓଡ଼ିଶା ବାହାରେ ମହାପୁରୁଷ ଜଗନ୍ନାଥ ଦାସଙ୍କ ୫୦୦ତମ ଜୟନ୍ତୀ ୧୯୯୦-୯୧ରେ ପାଳିତ ହୋଇଯାଇଛି । ତାଙ୍କ ଜୀବନୀ ଓ କୃତି ବିଷୟରେ ବହୁ ପ୍ରବନ୍ଧ ଓ ପୁସ୍ତକ ପ୍ରକାଶିତ ହେଲାଣି । ପଞ୍ଚସଖା ସାହିତ୍ୟରେ ଥିବା ଉଲ୍ଲେଖ ବ୍ୟତୀତ ଅଦ୍ୟାବଧି ଶ୍ରୀଜଗନ୍ନାଥ ଦାସଙ୍କ ପ୍ରସଙ୍ଗରେ ପ୍ରକାଶିତ ରଚନାବଳୀ ମଧ୍ୟରେ ଦିବାକର ଦାସଙ୍କ ପ୍ରଣୀତ "ଜଗନ୍ନାଥ ଚରିତାମୃତ" ଗ୍ରନ୍ଥ ପ୍ରଥମ ସ୍ଥାନୀୟ । କାରଣ ଏହାହିଁ ମହାପୁରୁଷ ଜଗନ୍ନାଥଙ୍କ ଜୀବନ ଚରିତ ସମ୍ବନ୍ଧୀୟ ପ୍ରଥମ ଓ ପ୍ରଧାନ ଗ୍ରନ୍ଥ । କବି ଦିବାକର ବୃହସ୍ପତ୍ୟାଙ୍ଗିର ପ୍ରବର ଭରଦ୍ୱାଜ ଗୋତ୍ରୀୟ ନିମଦେବ ଓ ଚମ୍ପାବତୀଙ୍କ ଯଶସ୍ୱୀ ପୁତ୍ର ଥିଲେ । ତାଙ୍କ ପିତାମହ ପ୍ରପିତାମହ ଓ ବୃଦ୍ଧ ପ୍ରପିତାମହ ଥିଲେ ଯଥାକ୍ରମେ ଗୋପାଳ ଦାସ, ନନ୍ଦ ଦାସ ଓ ବାଇଧର ଦାସ । ନିଜ ବଂଶର ପରିଚୟ ଉଲ୍ଲେଖ କରିବାକୁ ଯାଇ ଦିବାକର କହିଛନ୍ତି—

ନିମଦେବ ମୋହର ପିତା । ଗୋପାଳ ଦାସେ ପିତୃପିତା ॥
ନନ୍ଦ ଦାସେ ପିତା ତାଙ୍କର । ତାହାଙ୍କ ପିତା ବାଇଧର ॥
ମୋ ମାତା ନାମ ଚମ୍ପାବତୀ । ଭରଦ୍ୱାଜ ଗୋତ୍ରେ ଉତ୍ପତ୍ତି ॥
ବୃହସ୍ପତ୍ୟାଙ୍ଗିର ପ୍ରବର । ଏ ପରିଚୟ ମୋ ବଂଶର ॥

( ଜ: ଚ: - ପୃ-୭୧ )

ଗୁରୁଭକ୍ତ କବି ଦିବାକର ଥିଲେ ଜଣେ ଗୃହୀ ବୈଷ୍ଣବ । ସେ ଜଗନ୍ନାଥ ଦାସଙ୍କ ପ୍ରେମଭକ୍ତି ଓ ହରେରାମାଦି ମନ୍ତ୍ରର ଉପାସକ ଥିବା ବିଷୟ 'ଶ୍ରୀଜଗନ୍ନାଥ ଚରିତାମୃତ'ର ଅନୁଶୀଳନରୁ ଜଣାଯାଏ । ଗୁରୁ ପରମ୍ପରା ଅନୁସାରେ ଜଗନ୍ନାଥ ଦାସଙ୍କ ଶିଷ୍ୟ ଥିଲେ ବନମାଳୀ ଦାସ ଓ କେଳିକୃଷ୍ଣ ଥିଲେ ତାଙ୍କର ଶିଷ୍ୟ । କେଳିକୃଷ୍ଣଙ୍କ ଶିଷ୍ୟ କିଶୋର ଓ ଦିବାକର ତାଙ୍କର ଶିଷ୍ୟ ଥିଲେ ବୋଲି ନିମ୍ନୋକ୍ତିରୁ ସୂଚିତ ହୁଏ—

ଶୁଣ ସୁଜନେ ଦେଇ ମତ । ଏ ସିଦ୍ଧ ପ୍ରଣାଳୀ ପ୍ରଖ୍ୟାତ ॥
ଆଦ୍ୟରୁ କରୁଛୁ ସ୍ମରଣ । ମୋ ଗୋରୁ କଶୋର ଚରଣ ॥
କେଳିକୃଷ୍ଣ ଗୁରୁ ତାଙ୍କର । ତହୁଁ ବନମାଳୀ ବସ୍ବର ॥
ଜଗନ୍ନାଥ ଦାସ ତାଙ୍କର । ଅଟବଳ୍ଚି ଯେ ମଣ୍ତର ॥

( ଜ: ଚ: - ପୃ-୪ )

ଇତହାସ ଦୃଷ୍ଟିରୁ ଗୁରୁଶିଷ୍ୟଙ୍କ ବ୍ୟବଧାନ କାଳକୁ ସ୍ଥୂଳତଃ ୧୬ବର୍ଷ ବୋଲି ଗଣାଯାଏ । ତାହା ହେଲେ ଜଗନ୍ନାଥ ଦାସଙ୍କ ଦେହାନ୍ତ ଘଟିବାର ୪୮ ବର୍ଷ ପରେ ଅର୍ଥାତ୍ ୧୬୧୮ ପରେ ଦବାକର ଆଲୋଚ୍ୟ ଚରିତ ଗ୍ରନ୍ଥ ରଚନା କରି-ଥିବାର ଅନୁମିତ ହୁଏ । କନ୍ତୁ ପୁରୁଷ ହସାବରେ ପ୍ରତ୍ୟେକ ପୁରୁଷର କାଳ ୨୫ ବର୍ଷ ଗଣନା କରାଯାଏ । ସେ ଦୃଷ୍ଟିରୁ ବଚ୍ଚର କଲେ ୧୬୫୦ ଖ୍ରୀଷ୍ଟାବ୍ଦ ପରେ ଦବାକରଙ୍କ ଚରିତ ଗ୍ରନ୍ଥଟି ରଚିତ ହୋଇଛୁ ବୋଲି ବୁଝାଯାଇପାରେ ।

ଶ୍ରୀଚୈତନ୍ୟଙ୍କ ପରମ ଭକ୍ତ କବିରାଜ କୃଷ୍ଣଦାସଙ୍କ ପ୍ରଣୀତ 'ଚୈତନ୍ୟ ଚରିତାମୃତ' ଗ୍ରନ୍ଥ ଅନୁକରଣରେ 'ଶ୍ରୀଜଗନ୍ନାଥ ଚରିତାମୃତ' ଗ୍ରନ୍ଥ ରଚନା କରାଯାଇଛୁ ବୋଲି ଆଲୋଚକମାନେ ମତ ଦଅନ୍ତି । କାରଣ ପୂର୍ବୋକ୍ତ ଗ୍ରନ୍ଥର କେତେକ ଶ୍ଳୋକ ଓ ବିଷୟ ବସ୍ତୁର ଛାୟା ଜଗନ୍ନାଥ ଚରିତାମୃତରେ ଦେଖା-ଯାଏ । କବିରାଜ କୃଷ୍ଣ ଦାସ ଚୈତନ୍ୟ ଚରିତାମୃତର ରଚନା ୧୫୩୭ ଶକାବ୍ଦ ବା ୧୬୧୫ ଖ୍ରୀଷ୍ଟାବ୍ଦରେ ଶେଷ କରିଥିବା ନମ୍ନୋଦ୍ଧୃତ ପୁଷ୍ପିକାରୁ ଜଣାଯାଏ—

ଶାକେ ସିନ୍ଧ୍ୱଗ୍ନିବାଣେନ୍ଦୌ ଜ୍ୟୈଷ୍ଠେ ବୃନ୍ଦାବନାନ୍ତରେ ।
ସୂର୍ଯାହେ ସିତପଞ୍ଚମ୍ୟାଂ ଗ୍ରନ୍ଥୋଽୟଂ ପୂର୍ଣ୍ଣତାଂ ଗତଃ ॥

( ଅନ୍ତ୍ୟଲୀଳା—ଅଧ୍ୟାୟ—୨୦/୧୫୭ )

ପରବର୍ତ୍ତୀକାଳରେ 'ଚୈତନ୍ୟ ଭାଗବତ'ର ପ୍ରଣେତା ଓଡ଼ିଆ ବୈଷ୍ଣବ କବି ଈଶ୍ୱର ଦାସ (୧୬୮୩-ଖ୍ରୀ:ଅ:) ଭକ୍ତକବି ଜଗନ୍ନାଥ ଦାସଙ୍କ ପ୍ରସଙ୍ଗ ବର୍ଣ୍ଣନାରେ 'ଶ୍ରୀଜଗନ୍ନାଥ ଚରିତାମୃତ' ଗ୍ରନ୍ଥର ଉପାଦାନ ଗ୍ରହଣ କରିଥିବାର ଦେଖାଯାଏ । ତେଣୁ ଦବାକର ଦାସ ଖୁବ୍ ସମ୍ଭବତଃ ୧୬୧୫ ପରେ ଓ ୧୬୭୫ ମଧ୍ୟରେ ଆଲୋଚ୍ୟ ଚରିତାମୃତ ଗ୍ରନ୍ଥଟି ରଚନା କରିଥିବା ଆପାତତଃ ସ୍ଥିର କରା-ଯାଇପାରେ । ପରବର୍ତ୍ତୀ କାଳରେ ଚବିଶ ଅଧ୍ୟାୟ ବିଶିଷ୍ଟ 'ଶ୍ରୀଜଗନ୍ନାଥ ଚରିତା-ମୃତ' ଗ୍ରନ୍ଥଟି ମହାପୁରୁଷ ଜଗନ୍ନାଥଙ୍କ ଚରିତ ସମ୍ବନ୍ଧୀୟ ରଚନାର ମୁଖ୍ୟ ଉପଜୀବ୍ୟ ରୂପେ ସ୍ୱୀକୃତ ହୋଇଛୁ । ତେଣୁ ଏହାକୁ ଏକ ଉପାଦେୟ ଓ ପ୍ରାମାଣିକ ଗ୍ରନ୍ଥ ରୂପେ ଗ୍ରହଣ କରାଯାଇପାରେ ।

ପଣ୍ଡିତ ସୁଦର୍ଶନ ନନ୍ଦଙ୍କ ଦ୍ୱାରା ସମ୍ପାଦିତ ଦିବାକର ଦାସଙ୍କ 'ଶ୍ରୀଜଗନ୍ନାଥ ଚରିତାମୃତ' ଗ୍ରନ୍ଥ ପ୍ରଥମେ ୧୯୧୩ରେ କଟକରୁ ପ୍ରକାଶ ପାଇଥିଲା । ପରେ ଏହାର ଆଉ ଏକ ସଂଶୋଧିତ ସଂସ୍କରଣ ପଣ୍ଡିତ ବୀରହନୁମାନ ଶାସ୍ତ୍ରୀଙ୍କ ଦ୍ୱାରା ସମ୍ପାଦିତ ହୋଇ ପୁରୀର ବଡ଼ ଓଡ଼ିଆ ମଠ ପକ୍ଷରୁ ୧୯୬୩ରେ ପ୍ରକାଶିତ ହୋଇଛି । ଶ୍ରୀଜଗନ୍ନାଥ ଦାସଙ୍କ ସମ୍ପର୍କରେ ପ୍ରକାଶିତ ଇତିହାସକାର ଓ ଗବେଷକମାନଙ୍କ ପ୍ରବନ୍ଧଗୁଡ଼ିକ ବ୍ୟତୀତ ଭକ୍ତ ରାମଦାସଙ୍କ ପ୍ରଣୀତ 'ଦାର୍ଢ୍ୟତା ଭକ୍ତିରସାମୃତ', ମହାମହୋପାଧ୍ୟାୟ ପଣ୍ଡିତ ସଦାଶିବ ମିଶ୍ରଙ୍କ ଲିଖିତ 'ଅତିବଡ଼ୀ ଶ୍ରୀଜଗନ୍ନାଥ ଦାସ ଗୋସ୍ୱାମୀ' (୧୯୨୧), ରାୟବାହାଦୂର ଶ୍ରୀ ଚନ୍ଦ୍ରାମଣି ଆଚାର୍ଯ୍ୟଙ୍କ ରଚିତ "ଭକ୍ତକବି ଜଗନ୍ନାଥ ଦାସ" (୧୯୪୧), ଡକ୍ଟର ସତ୍ୟାନନ୍ଦ ଶତପଥୀଙ୍କ ସମ୍ପାଦିତ 'ଅତିବଡ଼ୀ ଜଗନ୍ନାଥ ପରିକ୍ରମା' (୧୯୭୫), ଶ୍ରୀ ବ୍ରଜମୋହନ ମହାନ୍ତିଙ୍କ ସମ୍ପାଦିତ 'ଜଗନ୍ନାଥ ପରିକ୍ରମା', ଅଧ୍ୟାପକ ସର୍ବେଶ୍ୱର ଦାସଙ୍କ ପ୍ରଣୀତ 'ମହାପୁରୁଷ ଜଗନ୍ନାଥ ଦାସ ଓ ଭାଗବତ ସମୀକ୍ଷା' (୧୯୮୪) ଶୀର୍ଷକ ଗ୍ରନ୍ଥଗୁଡ଼ିକର ନାମ ଉଲ୍ଲେଖଯୋଗ୍ୟ । ଓଡ଼ିଶାର ସାଧାରଣ ଜନଜୀବନରେ ମହାପୁରୁଷ ଜଗନ୍ନାଥ ଦାସଙ୍କ ପ୍ରତି କିପରି ଶ୍ରଦ୍ଧା, ଭକ୍ତି ଓ ସମ୍ମାନ ବିଗତ ୫୦୦ ବର୍ଷ ଧରି ଅତୁଟ ରହିଆସିଛି ତାହା ଉପର୍ଯ୍ୟୁକ୍ତ ପୁସ୍ତକାବଳୀ ଓ ଶତ ଶତ ଆଲୋଚନାତ୍ମକ ପ୍ରବନ୍ଧ ରଚନାରୁ ସ୍ପଷ୍ଟ ପ୍ରମାଣିତ ହୁଏ ।

ମହାପ୍ରଭୁ ଶ୍ରୀଚୈତନ୍ୟଙ୍କ ସନ୍ନ୍ୟାସ ଜୀବନର ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ସମୟ ପୁରୁଷୋତ୍ତମ କ୍ଷେତ୍ରରେ ଅତିବାହିତ ହୋଇଥିଲା ଏବଂ ପୁରୀରେ ହିଁ ସେ ଇହଲୀଳା ସମ୍ବରଣ କରିଥିଲେ । ପ୍ରାୟ ଦୀର୍ଘ ୨୧ ବର୍ଷକାଳ ଅବସ୍ଥାନ କରିବା ମଧ୍ୟରେ ପଞ୍ଚସଖାଙ୍କ ସହିତ ବହୁ ଉତ୍କଳୀୟ ବୈଷ୍ଣବ ଭକ୍ତ ଶ୍ରୀଚୈତନ୍ୟଙ୍କର ନିକଟବର୍ତ୍ତୀ ହେବା ସଙ୍ଗେ ସଙ୍ଗେ ତାଙ୍କର ନିତ୍ୟନୈମିତ୍ତିକ କାର୍ଯ୍ୟରେ ସହାୟକ ହୋଇ-ଥିବାର ବର୍ଣ୍ଣନା ଓଡ଼ିଆ ବୈଷ୍ଣବ ସାହିତ୍ୟରେ ପରିଦୃଷ୍ଟ ହୁଏ । କିନ୍ତୁ ବଙ୍ଗୀୟ ଚୈତନ୍ୟ ଚରିତାତ୍ମକ ଗ୍ରନ୍ଥଗୁଡ଼ିକରେ ରାୟ ରାମାନନ୍ଦ, ମାଧବୀ ଦାସୀ, କାଶୀ ମିଶ୍ର, ଶିଖି ମହାନ୍ତି, କୃଷ୍ଣ ଦାସ, ହରି ଦାସ, ପ୍ରଦ୍ୟୁମ୍ନ ମିଶ୍ର, ତୁଳସୀ ପରିଛା, ଜଗନ୍ନାଥ ମହାନ୍ତି, କାହ୍ନୁ ଖୁଣ୍ଟିଆ ପ୍ରଭୃତି ଭକ୍ତମାନଙ୍କ ନାମୋଲ୍ଲେଖ ଥିଲେ ମଧ୍ୟ ପଞ୍ଚସଖାଙ୍କ ମଧ୍ୟରୁ କାହାରି ନାମ ଉଲ୍ଲେଖ କରାଯାଇନାହିଁ । ଏହା ନିଶ୍ଚିତଭାବେ ଅନୁଶୀଳନୀୟ । ଆଲୋଚକମାନେ ଅନୁମାନ କରନ୍ତି ଯେ ପଞ୍ଚସଖା ଓ ତାଙ୍କର ଅନୁଗାମୀ ବୈଷ୍ଣବମାନେ ଉତ୍କଳର ଧର୍ମ ଓ ଦର୍ଶନର ପରମ୍ପରାକୁ ତ୍ୟାଗକରି ଅନ୍ୟାନ୍ୟ ଗୌଡ଼ୀୟ ବୈଷ୍ଣବମାନଙ୍କ ପରି ଗୌଡ଼ୀୟ ଗୋଷ୍ଠୀରେ ସମ୍ପୂର୍ଣ୍ଣ ଭାବେ ନିଜକୁ ମିଶାଇ ନ ଦେଇ ସ୍ୱକୀୟ ବୈଶିଷ୍ଟ୍ୟ ରକ୍ଷା କରିବାରେ ସଫଳ ହୋଇଥିଲେ ।

ସମ୍ଭବତଃ ସେହି କାରଣରୁ ଗୌଡ଼ୀୟ ବୈଷ୍ଣବ ଗ୍ରନ୍ଥକାରଗଣ ନିଜ ନିଜ ଗ୍ରନ୍ଥରେ ଓଡ଼ିଶାର ଗୌଡ଼ୀୟ ପନ୍ଥୀ ପ୍ରାୟ ପଚିଶ ଜଣ ବୈଷ୍ଣବଙ୍କ ନାମ ଲେଖିଥିଲେ ବି ପଞ୍ଚସଖାଙ୍କ ସହିତ ଉତ୍କଳୀୟ ବୈଷ୍ଣବ ଭକ୍ତ ଓ କବି କୋବିଦଙ୍କ ନାମ ଉଲ୍ଲେଖ କରିନାହାନ୍ତି । କବି ଦିବାକରଙ୍କ 'ଶ୍ରୀଜଗନ୍ନାଥ ଚରିତାମୃତ' ଗ୍ରନ୍ଥର ବର୍ଣ୍ଣନାରୁ ଏହି ଅନୁମାନର ଯଥାର୍ଥତା ପ୍ରତୀତ ହୁଏ । ଉତ୍କଳୀୟ ଓ ଗୌଡ଼ୀୟ ବୈଷ୍ଣବ ଧର୍ମ ଧାରାର ଇତିହାସକାରମାନେ ବି ଏପ୍ରସଙ୍ଗରେ କେତେକ ସୂଚନା ଦେଇଛନ୍ତି । କିନ୍ତୁ କେତେକ ଗୌଡ଼ୀୟ ମତବାଦୀ ଉତ୍କଳୀୟ ବୈଷ୍ଣବ ଏବିଷୟରେ ଭିନ୍ନ ମତ ପୋଷଣ କରିଥିବାର ଜଣାଯାଏ ।



# ଜଗନ୍ନାଥ ଦାସଙ୍କ ଜନ୍ମତିଥି

ଓଡ଼ିଶାର ପ୍ରାତଃସ୍ମରଣୀୟ ମହାପୁରୁଷ, ସିଦ୍ଧସାଧକ, ଶ୍ରୀଜଗନ୍ନାଥ ଭକ୍ତ, ପରମ ଭାଗବତ ସଂସ୍କାରବାଦୀ କବି କୋବିଦମାନଙ୍କ ମଧ୍ୟରେ ଶ୍ରୀକୃଷ୍ଣୈକପ୍ରାଣ ଭକ୍ତକବି ଜଗନ୍ନାଥ ଦାସ ଥିଲେ ଅନ୍ୟତମ । ଜଗନ୍ନାଥ ଦାସଙ୍କ ସାଧନା ଓ ସିଦ୍ଧି ତଥା ସାହିତ୍ୟିକ ଅବଦାନ କେବଳ ଓଡ଼ିଆ ଭାଷା ଓ ସାହିତ୍ୟ କ୍ଷେତ୍ରରେ ନୁହେଁ, ସମଗ୍ର ଭାରତୀୟ ସାହିତ୍ୟରେ ଅତୁଳନୀୟ କହିଲେ ଅତ୍ୟୁକ୍ତି ହେବ ନାହିଁ । ଭାରତର ସିଦ୍ଧ ସାଧକ, ମହାପୁରୁଷ ଓ କବି ପଣ୍ଡିତମାନଙ୍କ ଜୀବନ ଓ ଜୀବନୀକୁ କେନ୍ଦ୍ର କରି ଯେପରି ନାନାପ୍ରକାର କିମ୍ବଦନ୍ତୀ ବା ଜନଶ୍ରୁତି ପ୍ରଚଳିତ ଓ ପ୍ରସାରିତ ହୋଇଥାଏ ସେହିପରି ମହାତ୍ମା ଜଗନ୍ନାଥ ଦାସଙ୍କ ବିଷୟରେ ନାନାପ୍ରକାର କାହାଣୀର ଅବତାରଣା କରିଯାଇଥିବାର ଜଣାଯାଏ । କବି ଦିବାକର ଦାସଙ୍କ ପ୍ରଣୀତ 'ଶ୍ରୀଜଗନ୍ନାଥ ଚରିତାମୃତ' ସେହି କିମ୍ବଦନ୍ତୀମୂଳକ ଘଟଣାବଳୀ ଉପରେ ଆଧାରିତ । ଆଲୋଚକମାନେ ଉକ୍ତ ଚରିତାମୃତ ଅବଲମ୍ବନରେ ହିଁ ମହାପୁରୁଷ ଜଗନ୍ନାଥଙ୍କ ଜୀବନୀ ଉପରେ ଆଲୋକପାତ କରିଥିବାର ଦେଖାଯାଏ ।

ଓଡ଼ିଶାରେ ସୂର୍ଯ୍ୟବଂଶୀୟ ସମ୍ରାଟ୍ କପିଳେନ୍ଦ୍ରଦେବ (୧୪୩୫—୧୪୬୭ ଖ୍ରୀ:ଅ:) ସୁବିଶାଳ ଗଜପତି ସାମ୍ରାଜ୍ୟର ପ୍ରତିଷ୍ଠାତା ଥିଲେ । ପୁରୀ ଜିଲ୍ଲାନ୍ତର୍ଗତ ପୁରୁଷୋତ୍ତମ କ୍ଷେତ୍ରର ଅନତି ଦୂରରେ ସେହି ପ୍ରାତଃସ୍ମରଣୀୟ ମହାବୀର ଗଜପତି କପିଳେନ୍ଦ୍ର ଦେବଙ୍କ ଦ୍ୱାରା ପ୍ରତିଷ୍ଠିତ କପିଳେଶ୍ୱରପୁର ନାମକ ବ୍ରାହ୍ମଣ ଶାସନ ଅବସ୍ଥିତ । କୌଶିକ ଗୋତ୍ରୀୟ ପଣ୍ଡିତ ଭଗବାନ ଦାସ ନାମରେ ଜଣେ ଦରିଦ୍ର ବ୍ରାହ୍ମଣ ସେଠାରେ ବାସ କରୁଥିଲେ । ତାଙ୍କର ଧର୍ମପତ୍ନୀଙ୍କ ନାମ ପଦ୍ମାବତୀ । ଜଣେ ପତିବ୍ରତା ଧର୍ମପରାୟଣା ଓ ସ୍ନେହମୟୀ ନାରୀ ରୂପେ ସେ ସମସ୍ତଙ୍କର ଶ୍ରଦ୍ଧା ଓ ସମ୍ମାନର ପାତ୍ରୀ ହୋଇଥିଲେ । ଭଗବାନ ଦାସ ଦରିଦ୍ର ହେଲେ ମଧ୍ୟ ଧାର୍ମିକ ଓ ଅତିଥିବତ୍ସଳ ଥିଲେ । ବିଶିଷ୍ଟ ସଂସ୍କୃତଜ୍ଞ ପଣ୍ଡିତ ଭାବରେ ତାଙ୍କର

ଖ୍ୟାତଥିଲା । ନୀଳାଚଳନାଥ ଶ୍ରୀଜଗନ୍ନାଥଙ୍କ ପ୍ରତି ତାଙ୍କର ଅସୀମ ଭକ୍ତି ଥିଲା । ସେ ପ୍ରତିଦିନ ଶ୍ରୀମନ୍ଦିରକୁ ଦର୍ଶନ ପାଇଁ ଯାଉଥିଲେ ଏବଂ ସଂସ୍କୃତ ରାମାୟଣ, ମହାଭାରତ, ଭଗବଦ୍‌ଗୀତା ଓ ଭାଗବତ ପୁରାଣ ପ୍ରଭୃତିକୁ ସରଳ ଭାଷାରେ ବ୍ୟାଖ୍ୟା କରି ସମବେତ ସଜ୍ଜନ ଓ ଭକ୍ତ ଜନସାଧାରଣଙ୍କୁ ଶୁଣାଉଥିଲେ । କିମ୍ବଦନ୍ତୀ ଅନୁସାରେ ଭଗବାନ ଦାସଙ୍କ ପ୍ରାଞ୍ଜଳ ଓ ପାଣ୍ଡିତ୍ୟପୂର୍ଣ୍ଣ ବାଖ୍ୟାରେ ପ୍ରୀତ ହୋଇ ବନ୍ଧୁ କବି କୋଚିଦଙ୍କର ପୃଷ୍ଟପୋଷକ ଗଜପତି ପୁରୁଷୋତ୍ତମ ଦେବ (୧୪୬୭—୧୪୯୭ ଖ୍ରୀ:ଅ:) ତାଙ୍କୁ ପୁରାଣ ପଣ୍ଡା କାର୍ଯ୍ୟରେ ନିଯୁକ୍ତ କରିଥିଲେ । ତେଣୁ ଭଗବାନ ଦାସ ପ୍ରତିଦିନ ଯଥା ସମୟରେ ଶ୍ରୀଜଗନ୍ନାଥ ମନ୍ଦିରକୁ ଯାଇ ପୁରାଣ ପାଠ କରୁଥିଲେ । ଶ୍ରୀମନ୍ଦିରରେ ପୁରାଣ ପାଠହିଁ ତାଙ୍କ ଜୀବିକା ଅର୍ଜନର ମୂଳ ପନ୍ଥା ଥିଲା । ତେଣୁ ସେ 'ପୁରାଣ ପଣ୍ଡା' ରୂପେ ଓଡ଼ିଶାରେ ପରିଚିତ ହୋଇଥିଲେ ।

ଶ୍ରୀକୃଷ୍ଣଙ୍କ ହାସ୍ୟରୁ ଶ୍ରୀଚୈତନ୍ୟ ଅବତୀର୍ଣ୍ଣ ହେଲାପରି ଶ୍ରୀରାଧାଙ୍କ ହାସ୍ୟରୁ ମହାପୁରୁଷ ଜଗନ୍ନାଥ ମର୍ତ୍ତ୍ୟରେ ଅବତୀର୍ଣ୍ଣ ହୋଇଥିଲେ ବୋଲି 'ଶ୍ରୀଜଗନ୍ନାଥ-ଚରିତାମୃତ'ର ନିମ୍ନୋକ୍ତିରୁ ସୂଚିତ ହୁଏ—

ଶ୍ରୀବଇକୁଣ୍ଠ ନିତ୍ୟଧାମେ । ଶ୍ରୀରାଧାକୃଷ୍ଣ ଏକ ପ୍ରେମେ ॥
ଏକାତ୍ମା ଭାବରେଣ ଛନ୍ତି । କୋଟି ଯୁଗେ ଭିନ୍ନ ନୁହନ୍ତି ॥
ଶ୍ରୀରାଧା ମୁଖ ଚାହିଁ ହରି । ମନ୍ଦେ ମଧୁର ହାସ୍ୟ କରି ॥
ସେ ହାସ୍ୟ ମଧୁର ଅମୃତ । ତହୁଁ ଚୈତନ୍ୟ ହେଲେ ଜାତ ॥
ଯେଣୁ ଦୁହିଙ୍କ ଏକଭାବ । ରାଧା ହସିଲେ ତହୁ ଲବ ॥
ସେ ହାସ୍ୟୁଁ ଜନ୍ମିଲେ ତୁରିତ । ଶ୍ରୀ ଅତିବଡ଼ ଜଗନ୍ନାଥ ॥
ସେ ବେନି ନିଜ ଅଙ୍ଗ ଚାହିଁ । ଜାଣିଲେ ଭକତ ଅଂଶହିଁ ॥
ଆଜ୍ଞା ଦେଲେ ନିତ୍ୟଠାକୁର । ଦୁହେଁ ଜନ୍ମିବ ମର୍ତ୍ତ୍ୟପୁର ॥

(ଜ:ଚ:, ପୃ—୧୦)

× × ×

ଉତ୍କଳେ ଯେ ପୁରୁଷୋତ୍ତମ । କପିଳେଶ୍ୱର ପୁର ଗ୍ରାମ ॥
ତହିଁ ଜନମ ହୁଅ ଯାଇ । ଆମ୍ଭର ଏ ଆଜ୍ଞାକୁ ପାଇ ॥
ମନ୍ତ୍ରରାଜ ରାମାଦି ନାମ । ହସାରେ କରାଅ କୀର୍ତ୍ତନ ॥

(ଜ:ଚ:, ପୃ—୧୨)

ଶ୍ରୀଜଗନ୍ନାଥଙ୍କ ପରମ ଭକ୍ତ ଭଗବାନ ଦାସଙ୍କ ଔରସରେ ପଦ୍ମାବତୀଙ୍କ ଗର୍ଭରୁ ଜଗନ୍ନାଥ ଦାସ ଭାଦ୍ରବ ମାସର ଶୁକ୍ଳାଷ୍ଟମୀ (ରାଧାଷ୍ଟମୀ) ଦିନ ମଧ୍ୟାହ୍ନ ସମୟରେ ଅନୁରାଧା—ବିଚ୍ଛ ରାଶିରେ ଜନ୍ମ ଗ୍ରହଣ କରିଥିବା ଜଣାଯାଏ—

ଆଜ୍ଞା ପ୍ରମାଣେ ସେ ଆସିଲେ । ଓଡ଼ିଶା ରାଜ୍ୟେ ଜନ୍ମ ହେଲେ ॥
ନାମ କପିଳେଶ୍ୱରପୁର । ଶାସନ ମଧ୍ୟେ ତାଙ୍କ ଘର ॥
ପୁରାଣ ପଣ୍ଡା ଭଗବାନ । ସ୍ୱପତ୍ନୀ ପଦ୍ମାବତୀ ନାମ ॥
ପୂର୍ବେ ତପସ୍ୟା କରିଥିଲେ । ତେଣୁ ସେ ତାହାଙ୍କୁ ପାଇଲେ ॥
ତେଣୁ ସେ ପଦ୍ମର ଉଦରେ । ନବମାସ ଗର୍ଭ ପ୍ରବାହରେ ॥
ଏମନ୍ତେ ଗଲା କେତେଦିନ । ଆନନ୍ଦ ସର୍ବଙ୍କର ମନ ॥
ଭାଦ୍ର ଯେ ଶୁକ୍ଳାଷ୍ଟମୀ ଦିନ । ମଧ୍ୟାହ୍ନ କାଳେ ହେଲେ ଜନ୍ମ ॥
ବୁଧ ଅନୁରାଧା ବିଚ୍ଛରେ । ମାହେନ୍ଦ୍ର ଗୁରୁଙ୍କ ବେଳାରେ ॥

(ଜ:ଚ:, ପୃ—୧୨)

କିନ୍ତୁ କବି ଦିବାକର ଦାସ, ଜଗନ୍ନାଥ ଦାସଙ୍କ ଜନ୍ମ ମାସ ଓ ତିଥିର ନାମ ସମ୍ବନ୍ଧରେ ସୂଚନା ଦେଇଥିଲେ ମଧ୍ୟ ଜନ୍ମବର୍ଷ ସମ୍ବନ୍ଧରେ କିଛି ଉଲ୍ଲେଖ କରିନାହାନ୍ତି । ସେଥିପାଇଁ ଆଲୋଚକମାନେ ଜଗନ୍ନାଥ ଦାସଙ୍କ ଜନ୍ମକାଳ ନିର୍ଦ୍ଧାରଣ କରିବାକୁ ଯାଇ ଭିନ୍ନ ଭିନ୍ନ ମତ ପୋଷଣ କରିଛନ୍ତି । କେତେକ ଗବେଷକ ଜଗନ୍ନାଥ ଦାସଙ୍କ ଜନ୍ମ ବର୍ଷ ୧୪୮୫ ବା ୧୪୮୭ ଖ୍ରୀଷ୍ଟାବ୍ଦ ହୋଇପାରେ ବୋଲି ମତ ଦେଲାବେଳେ ଅନ୍ୟ କେତେକ ଆଲୋଚକ ୧୪୯୦, ୧୪୯୧ ଅଥବା ୧୪୯୮ ଖ୍ରୀଷ୍ଟାବ୍ଦ ବୋଲି ସ୍ଥିର କରିଛନ୍ତି । କେତେକ ତାଙ୍କର ଜନ୍ମ ସୋମବାର ହୋଇଥିଲା ବୋଲି କହିଲାବେଳେ ଆଉ କେତେକ ଜନ୍ମଦିନଟି ବୁଧବାର ଥିଲା ବୋଲି ମତ ଦେଇଛନ୍ତି ।

ଭାରତୀୟ ପଞ୍ଜିକା (Indian Ephemeries)ର ଗଣନା ଅନୁସାରେ ଉପଯୁକ୍ତ ବର୍ଷଗୁଡ଼ିକର ତିଥି, ବାର ଓ ନକ୍ଷତ୍ର ମଧ୍ୟରେ ପାରସ୍ପରିକ ସାମଞ୍ଜସ୍ୟ ନ ଥିବାର ଦେଖାଯାଏ । ପଞ୍ଜିକାର ଉଲ୍ଲେଖ ଅନୁସାରେ ୧୪୮୫ ମସିହାର ଭାଦ୍ର ଶୁକ୍ଳାଷ୍ଟମୀ ମାସ ୧୮ ଦିନ ଗୁରୁବାର (୧୮.୮.୧୪୮୫) ଅନୁରାଧା ନକ୍ଷତ୍ରରେ ପଡ଼ିଥିଲା । ୧୪୮୭ ଖ୍ରୀଷ୍ଟାବ୍ଦରେ ଭାଦ୍ର ମାସ ୨୭ ଦିନ ରବିବାର (୨୭.୮.୧୪୮୭) ଜ୍ୟେଷ୍ଠା ନକ୍ଷତ୍ରରେ ଶୁକ୍ଳାଷ୍ଟମୀ ତିଥି ପାଳିତ ହୋଇଥିଲା । ୧୪୯୦ ମସିହାରେ ଭାଦ୍ର ମାସ ୨୪ ଦିନ ସୋମବାର (୨୩.୮.୧୪୯୦) ଜ୍ୟେଷ୍ଠା ନକ୍ଷତ୍ରରେ ଶୁକ୍ଳାଷ୍ଟମୀ

ପଡ଼ିଥିଲା । ୧୪୯୧ ଖ୍ରୀଷ୍ଟାବ୍ଦରେ ଶୁକ୍ଳାଷ୍ଟମୀ ମାସ ୧୪ ଦିନ ଶନିବାର ଅନୁରାଧା—ଜ୍ୟେଷ୍ଠା ନକ୍ଷତ୍ରରେ ପଡ଼ିଥିବାର ଜଣାଯାଏ । ସେଦିନଟି ୧୩.୮.୧୪୯୧ ତାରିଖ ରୂପେ ନିର୍ଦ୍ଧାରଣୀୟ । ସେହିପରି ଭାଦ୍ରପଦର ୨୫ ଦିନ ଶୁକ୍ଳାଷ୍ଟମୀ ତିଥି ଜ୍ୟେଷ୍ଠା ନକ୍ଷତ୍ରରେ ଶୁକ୍ରବାର ୨୪.୮.୧୪୯୮ ତାରିଖରେ ପଡ଼ିଥିଲା ।

ଶ୍ରୀଚୈତନ୍ୟଙ୍କର ପୁରୀ ଆଗମନ ବେଳକୁ ଅଠର ଊଣେଇଶ ବର୍ଷ ବୟସ୍କ ଜଗନ୍ନାଥ ଦାସ ପୁରୀ ବଡ଼ ଦେଉଳରେ ପୁରାଣ ପାଠ କରୁଥିଲେ ବୋଲି ଆଲୋଚକମାନେ ଅନୁମାନ କରନ୍ତି । କବି ଦିବାକରଙ୍କ ଉଲ୍ଲେଖ ଅନୁସାରେ ଆଲୋଚକମାନଙ୍କ ଅନୁମାନ ସମର୍ଥିତ ହେଉଛି—

ଅଷ୍ଟାଦଶ ବରଷଠାରେ । ଶ୍ରୀଚୈତନ୍ୟ ଭେଟ ହେଲେ ॥
ଷଡ଼ବରଷ ନିରନ୍ତର । ସେବେଳେ ଚୈତନ୍ୟ ପସ୍ୱର ॥
(ଜ:ଚ:, ପୃ—୩୦୮)

ଶ୍ରୀଚୈତନ୍ୟ ଚବିଶ ବର୍ଷ ବୟସରେ (୧୫୦୯ ଖ୍ରୀଷ୍ଟାବ୍ଦ) ରେ ସନ୍ନ୍ୟାସ ଗ୍ରହଣ କରି ନିଜର ଏକାନ୍ତ ଅନୁଗତ ଶିଷ୍ୟ ନିତ୍ୟାନନ୍ଦ, ମୁକୁନ୍ଦ, ଦାମୋଦର, ଗଙ୍ଗାଧର, ବକ୍ରେଶ୍ୱର ପ୍ରଭୃତିଙ୍କ ସହିତ କୃଷ୍ଣସମାଜ ପ୍ରତିଷ୍ଠା ପାଇଁ ବୃନ୍ଦାବନ ଯିବାକୁ ବାହାରିଲେ । କିନ୍ତୁ ଜନନୀ ଶଚୀଦେବୀଙ୍କ ଅନୁରୋଧ କ୍ରମେ ଶିଷ୍ୟମାନଙ୍କ ସହିତ ମାତୃଭକ୍ତ ଶ୍ରୀଚୈତନ୍ୟ ପୁରୁଷୋତ୍ତମ କ୍ଷେତ୍ରବାସୀ ହେବା ନିମନ୍ତେ ଦୃଢ଼ ନିଶ୍ଚୟ ହୋଇ ୧୫୧୦ ମସିହା ଜାନୁଆରୀ ମାସରେ ନବଦ୍ୱୀପରୁ ପଦଯାତ୍ରା ଆରମ୍ଭ କରି ଫେବୃଆରୀ ମାସରେ ପୁରୀରେ ପହଞ୍ଚିଥିଲେ । ଅଳ୍ପ କେତୋଟି ଦିନ ପୁରୀରେ ସାର୍ବଭୌମଙ୍କ ଘରେ ଅତିଥି ହୋଇ ରହିବା ପରେ ସେ ଦାକ୍ଷିଣାତ୍ୟ ତୀର୍ଥ ଭ୍ରମଣରେ ଯାଇଥିଲେ । ବିଦ୍ୟାନଗରଠାରେ ଓଡ଼ିଶାର ରାଜ୍ୟପାଳ ପରମ ବୈଷ୍ଣବ ରାୟରାମାନନ୍ଦ ପଟ୍ଟନାୟକଙ୍କ ସହିତ ତାଙ୍କର ସାକ୍ଷାତ ହୋଇଥିଲା । ଶ୍ରୀଚୈତନ୍ୟ ତାଙ୍କଠାରୁ ଶ୍ରୀକୃଷ୍ଣ ପ୍ରେମ ଓ ପ୍ରେମଭକ୍ତି ବିଷୟରେ ଶିକ୍ଷା ପାଇ ରାମାନନ୍ଦଙ୍କୁ ନିଜର ଗୁରୁ ଓ ପ୍ରିୟସଖା ରୂପେ ସ୍ୱୀକାର କରିଥିଲେ । ପରବର୍ତ୍ତୀ କାଳରେ ଯେଉଁ ପ୍ରେମଭକ୍ତି ଚୈତନ୍ୟ ମତବାଦର ମୂଳ ପ୍ରତିପାଦ୍ୟ ରୂପେ ଗୃହୀତ ହୋଇଥିଲା । ଦାକ୍ଷିଣାତ୍ୟ ତୀର୍ଥଭ୍ରମଣରୁ ଫେରିବା ପରେ ଶ୍ରୀଚୈତନ୍ୟ ୧୫୧୨—୧୫୧୪ ପର୍ଯ୍ୟନ୍ତ ପୁରୀରେ ରହିଥିଲେ । ପୁଣି ୧୫୧୪ର ଶେଷଭାଗରେ ସେ ବୃନ୍ଦାବନ ଯାଇଥିଲେ ଏବଂ ୧୫୧୫ରେ ସେଠାରୁ ଫେରିଆସି ପୁରୀରେ ବଳରାମ, ଜଗନ୍ନାଥ, ରାମାନନ୍ଦ ପ୍ରଭୃତି ସଖାମାନଙ୍କ ସହିତ ଜୀବନର ଶେଷ ୧୮ ବର୍ଷ (୧୫୩୩—ଖ୍ରୀ:ଅ:) ଅତିବାହିତ କରିଥିଲେ ।

ଆଲୋଚକମାନଙ୍କ ମଧ୍ୟରୁ କେତେକ ମହାପୁରୁଷ ଜଗନ୍ନାଥ ଦାସ ଚବିଶ ବର୍ଷ ବୟସରେ ବୈଷ୍ଣବ ଦୀକ୍ଷା ନେଇଥିଲେ ବୋଲି ମତ ବ୍ୟକ୍ତ କରିଛନ୍ତି । କିନ୍ତୁ ଏହା ଠିକ୍ ମନେହୁଏ ନାହିଁ । କାରଣ ଯଦି ଜଗନ୍ନାଥ ଦାସ ଚବିଶ ବର୍ଷ ବୟସରେ ଅର୍ଥାତ୍ ୧୫୧୫ ଖ୍ରୀଷ୍ଟାବ୍ଦରେ ଦୀକ୍ଷା ନେଇଥିବେ ତେବେ ପରବର୍ତ୍ତୀ ବୟାଳିଶ ବର୍ଷ ଜୀବିତ ଥିବେ ଏବଂ ତାଙ୍କର ମହାପ୍ରୟାଣ ଷାଠିଏ ବର୍ଷରେ ନୁହେଁ, ୬୬ ବର୍ଷ ବୟସରେ ହୋଇଥିବ । ଅବଶ୍ୟ କେତେକ ଆଲୋଚକ ଜଗନ୍ନାଥ ଦାସ ୭୦ ବର୍ଷ ବୟସ ପର୍ଯ୍ୟନ୍ତ ଜୀବିତ ଥିଲେ ବୋଲି ମତ ଦେଇଛନ୍ତି । କିନ୍ତୁ ମୁଦ୍ରିତ ତଥା ପ୍ରାଚୀନ ତାଳପତ୍ର ପୋଥି ଆକାରରେ ଥିବା ଚରିତାମୃତର ଉଲ୍ଲେଖ ଅନୁସାରେ ଏ ପ୍ରକାର ବିଚାରର କୌଣସି ଦୃଢ଼ଭିତ୍ତି ନାହିଁ ବୋଲି ମନେହୁଏ ।

‘ଶ୍ରୀଜଗନ୍ନାଥ ଚରିତାମୃତ’ରେ ଥିବା ତଥ୍ୟ ଅନୁସାରେ ଜଗନ୍ନାଥ ଦାସ ଅନୁରାଧା-ବୃଶ୍ଚିକ ରାଶିରେ ଭାଦ୍ରପଦ ମାସ ଶୁକ୍ଳାଷ୍ଟମୀ ଦିନ ଜନ୍ମ ହୋଇଥିଲେ । ଭାରତୀୟ ପଞ୍ଜିକାର ଗଣନା ଅନୁସାରେ ଏହି ତିଥି ଓ ନକ୍ଷତ୍ର ୧୮-୮-୧୪୮୫ ଓ ୧୩-୮-୧୪୯୧ ତାରିଖ ଦିନ ପଡ଼ିଥିବାର ଦେଖାଯାଏ । ଶ୍ରୀଚୈତନ୍ୟଙ୍କ ସହିତ ଜଗନ୍ନାଥ ଦାସଙ୍କର ୧୫୧୦ ଖ୍ରୀଷ୍ଟାବ୍ଦରେ ପ୍ରଥମ ସାକ୍ଷାତ ଘଟିଥିଲା । ସେତେବେଳକୁ ତାଙ୍କର ଊଣେଇଶ ବର୍ଷ ବୟସ ହୋଇଥିଲା । ୧୪୮୫ରୁ ଯଦି ତାଙ୍କର ଜନ୍ମ ବୋଲି ଗ୍ରହଣ କରାଯିବ ତେବେ ୧୫୧୦ ବେଳକୁ ଜଗନ୍ନାଥ ଦାସଙ୍କ ବୟସ ୨୫ ବର୍ଷ ହେବ ଏବଂ ୧୫୫୨ ଖ୍ରୀଷ୍ଟାବ୍ଦରେ ୬୭ ବର୍ଷ ବୟସରେ ତାଙ୍କର ଦେହାନ୍ତ ହୋଇଥିବ । କିନ୍ତୁ ଏପରି ଅନୁମାନ କରିବାର କୌଣସି ଭିତ୍ତି ନାହିଁ । ତେଣୁ ମହାତ୍ମା ଜଗନ୍ନାଥ ଦାସ ୧୪୧୩ ଶକାବ୍ଦ ଭାଦ୍ରମାସ ୧୪ଦିନ ଶନିବାର ଶୁକ୍ଳପକ୍ଷ ଅଷ୍ଟମୀରେ ଅନୁରାଧା ନକ୍ଷତ୍ର ଯୁକ୍ତ ବୃଶ୍ଚିକ ରାଶିରେ ଜନ୍ମ ଗ୍ରହଣ କରିଥିବା ଆପାତତଃ ଗ୍ରହଣୀୟ ମନେହୁଏ । ଭାରତୀୟ ପଞ୍ଜିକାର ଗଣନା ଅନୁସାରେ ସେହି ଦିନଟି ୧୪୯୧ ମସିହା ଅଗଷ୍ଟ ମାସ ୧୩ ତାରିଖ ବୋଲି ନିର୍ଦ୍ଧାରଣ କରାଯାଇ ପାରେ ।



# ବାଲ୍ୟଜୀବନ ଓ ଶିକ୍ଷା

ପଣ୍ଡିତ ଭଗବାନ ଦାସ ପରିଣତ ବୟସରେ ପୁତ୍ର ସନ୍ତାନ ପାଇଥିବାରୁ ମହାବାହୁ ଶ୍ରୀଜଗନ୍ନାଥଙ୍କ କୃପା ଲାଭ ହେଲା ବୋଲି ଭାବି ଯଥା ସମୟରେ ନବଜାତ ପୁତ୍ରର 'ଜଗନ୍ନାଥ' ବୋଲି ନାମକରଣ କଲେ । ବାଳକମାନଙ୍କ ସହିତ ଖେଳିବା ସମୟରେ ସେ ହରେରାମ କୃଷ୍ଣ ଉଚ୍ଚାରଣ କରୁଥିଲେ ବୋଲି ଜନ-ଶ୍ରୁତିରୁ ସୂଚନା ମିଳେ । ବ୍ରାହ୍ମଣ କୁଳର ପରମ୍ପରା ଅନୁସାରେ ଚତୁର୍ଥ ବର୍ଷ ବୟସରେ ପଦାର୍ପଣ କରିବା ସଙ୍ଗେ ସଙ୍ଗେ ତାଙ୍କର ଚୂଡ଼ାକରଣାଦି ସଂସ୍କାର ଯଥାରୀତି ଅନୁଷ୍ଠିତ ହୋଇଥିଲା । ପଞ୍ଚମ ବର୍ଷରେ ବିଦ୍ୟାରମ୍ଭ ପରେ ସେ ଗ୍ରାମ ଚାଟଶାଳୀରେ ଅଧ୍ୟୟନ ଆରମ୍ଭ କଲେ । ଅଷ୍ଟମ ବର୍ଷରେ ତାଙ୍କର ବ୍ରତୋପନୟନ ହେଲା । ଉପନୟନ ପରେ ବାରବର୍ଷ ବୟସ ମଧ୍ୟରେ ସେ ପିତାଙ୍କଠାରୁ ସାଧାରଣ ଭାବେ ବେଦ, ବେଦାଙ୍ଗ, ଅମରକୋଷ, କଳାପ ଓ ବର୍ଦ୍ଧମାନ ବ୍ୟାକରଣ ଶିକ୍ଷା ଶେଷ କଲେ । ତତ୍କାଳୀନ ପରମ୍ପରା ଅନୁଯାୟୀ ପିତାମାତା ପୁତ୍ରର ବିବାହ ପାଇଁ ଉଦ୍ୟମ କଲେ । କିନ୍ତୁ ଜଗନ୍ନାଥ ବିବାହ କରିବେ ନାହିଁ ବୋଲି ପିତାଙ୍କୁ ବିନୀତଭାବେ ଜଣାଇଦେଲେ । ବହୁ ବୁଝାଇବା ପରେ ବି ଜଗନ୍ନାଥ ବିବାହ ପାଇଁ ସମ୍ମତ ନ ହେବାରୁ ମାତାପିତା ପୁତ୍ରର ଅନୁରୋଧ ଏଡ଼ିନପାରି ନିଜ ଉଦ୍ୟମରୁ ନିବୃତ୍ତ ହୋଇଥିଲେ ।

ମହାତ୍ମା ଜଗନ୍ନାଥ ଦାସ ପିଲାଟି ଦିନରୁ କୃଷ୍ଣଭକ୍ତିରେ ବିଭୋର ଥିଲେ । ଆଜୀବନ ସନ୍ନ୍ୟାସ ବ୍ରତ ନେବାର ସିଦ୍ଧାନ୍ତ ନେବା ପରେ ସେ ନିକଟବର୍ତ୍ତୀ ଶାସନରେ ଥିବା ଆଚାର୍ଯ୍ୟଙ୍କଠାରୁ ଋଗ୍‌ବେଦ, ଯଜୁର୍ବେଦ ଓ ସାମବେଦ ସଂହିତରେ ବିଶେଷ ଶିକ୍ଷାଲାଭ ସହିତ ନ୍ୟାୟ, ବେଦାନ୍ତ, ଧର୍ମଶାସ୍ତ୍ର, ରାମାୟଣ, ମହାଭାରତ, ଭାଗବତାଦି ପୁରାଣ ଗ୍ରନ୍ଥ ଅଧ୍ୟୟନ କରିଥିଲେ ବୋଲି ଦିବାକର ଦାସଙ୍କ ନିମ୍ନୋକ୍ତ ଉଲ୍ଲେଖରୁ ସୂଚନା ମିଳେ—

ଦ୍ୱାଦଶ ବରଷର ବେଳେ । ପିତା ବିବାହ ବିଚାରିଲେ ॥
ପିତାଙ୍କୁ ବିଷ୍ଣ ବୋଲି ନାସ୍ତି । ସିଦ୍ଧାନ୍ତ ବେଦାନ୍ତ ପଢ଼ନ୍ତି ॥

ବୋଲଇ ବିପ୍ର ଜଗନ୍ନାଥ । ଗୀତ ପ୍ରବନ୍ଧେ ଭାଗବତ ॥

(୭—୧୦)

× × ×

ସଂସାର ହିତେ କୃଷ୍ଣବାଣୀ । ଗୀତ ମୁଁ ବିରଚିଲି ଆଣି ॥

(୧୦—୮୦)

ମହାତ୍ମା ଜଗନ୍ନାଥ ଦାସ ସଂସ୍କୃତ ଭାଷାରେ ପ୍ରଣୀତ ବିଭିନ୍ନ ଶାସ୍ତ୍ର, ପୁରାଣ, କାବ୍ୟ ନାଟକାଦି ସହିତ ଓଡ଼ିଆ ଭାଷା ଓ ସାହିତ୍ୟ ତଥା ସଙ୍ଗୀତ ବିଦ୍ୟାରେ ନିପୁଣତା ଅର୍ଜନ କରିଥିବାର ଜଣାଯାଏ ।



# ପୁରାଣ ପାଠ ଓ ଭାଗବତ ରଚନା

ଗଜପତି କପିଳେନ୍ଦ୍ର ଦେବ ତାଙ୍କ ରାଜତ୍ୱ ସମୟରେ ଶ୍ରୀଜଗନ୍ନାଥ ମନ୍ଦିରରେ ନିତ୍ୟ ଶ୍ରୀମଦ୍‌ଭାଗବତ ପାଠର ବ୍ୟବସ୍ଥା କରିଥିଲେ । କପିଳେଶ୍ୱରପୁର ଶାସନର ନରୋତ୍ତମ ଦାସ ପ୍ରଥମେ ଏହି କାର୍ଯ୍ୟରେ ନିୟୋଜିତ ହୋଇଥିଲେ । ସେହିଦିନ ଠାରୁ ପୁରାଣପାଠ ଶ୍ରୀମନ୍ଦିରରେ ହୋଇଆସୁଛି । ନରୋତ୍ତମ ଦାସ ହେଉଛନ୍ତି ଭଗବାନ ଦାସଙ୍କର ଚତୁର୍ଥ ପୁରୁଷ । ଶ୍ରୀଜଗନ୍ନାଥ ମନ୍ଦିରରେ ପୁରାଣପାଠ ଦାସବଂଶର କୌଳିକ ବୃତ୍ତି ରୂପେ ଗୃହୀତ ହୋଇଥିଲା । ଜଗନ୍ନାଥ ଦାସଙ୍କ ପିତା ଭଗବାନ ଦାସ ମଧ୍ୟ ପୁରାଣପଣ୍ଡା ରୂପେ ନିଯୁକ୍ତ ହୋଇଥିଲେ ବୋଲି ପୂର୍ବରୁ ସୂଚନା ଦିଆଯାଇଛି ।

ଭକ୍ତକବି ଜଗନ୍ନାଥ ବାଲ୍ୟକାଳରୁ ତୀକ୍ଷ୍ଣବୁଦ୍ଧିସମ୍ପନ୍ନ ଥିଲେ । ତେଣୁ ଅଳ୍ପକାଳ ମଧ୍ୟରେ ବେଦାଦି ଶାସ୍ତ୍ର, ବ୍ୟାକରଣ, କୋଷ, କାବ୍ୟ, ନାଟକାଦି ସହିତ ପୁରାଣ ଗ୍ରନ୍ଥଗୁଡ଼ିକ ଅଧ୍ୟୟନ ଶେଷ କରିପାରିଥିଲେ । ଅଠର ବର୍ଷ ବୟସରେ ତାଙ୍କର ପିତା ଭଗବାନ ଦାସଙ୍କର ଦେହାନ୍ତ ହୋଇଯିବାରୁ ସେ ପୈତୃକ ପୁରାଣ-ପଣ୍ଡା ବୃତ୍ତି ଅବଲମ୍ବନ କରି ପ୍ରତ୍ୟହ ଶ୍ରୀମନ୍ଦିରକୁ ଯାଇ ବଟଗଣେଶଙ୍କ ପାଖରେ ପୁରାଣ ପାଠ ଆରମ୍ଭ କଲେ । ସଂସ୍କୃତ ଭାଗବତକୁ ସୁସ୍ୱରରେ ଆବୃତ୍ତି କରି ସେ ଶ୍ଲୋକଗୁଡ଼ିକର ଅର୍ଥ ସରଳ ଓ ପ୍ରାଞ୍ଜଳ ଭାଷାରେ ଜନସାଧାରଣଙ୍କୁ ବୁଝାଇବାକୁ ଲାଗିଲେ ।

ପରମ ଭାଗବତ ଜଗନ୍ନାଥ ଦାସ ପୂର୍ବ ପରମ୍ପରା ଭଙ୍ଗ କରି ତତ୍କାଳୀନ ସମାଜର ଆବଶ୍ୟକତା ଅନୁସାରେ ଓଡ଼ିଆ ଭାଗବତ ରଚନା କରିଥିବା ବିଷୟରେ ସୂଚନା ଦେବାକୁ ଯାଇ ଦିବାକର ଦାସ କହିଛନ୍ତି—

ଏମାନ ସାଧିଲେ ବିଶେଷ । ହୋଇଲା ଅଷ୍ଟାଦଶ ବର୍ଷ ।।
ବଟ ଗଣେଶଙ୍କ ଅଗ୍ରତ । ରଚିଲେ ଭାଷା ଭାଗବତ ।।
ପଢୁଣଥାନ୍ତି ସୁଖ ପାଇ । ଗଣେଶ ଦେଉଥାନ୍ତି କହି ।।

(ଜ:ଚ:, ପୃ—୧୩)

ଜଗନ୍ନାଥ ଦାସ ଅଷ୍ଟାଦଶ ବର୍ଷ ବୟସରେ ଓଡ଼ିଆ ଭାଷାରେ 'ଭାଗବତ' ଗ୍ରନ୍ଥ ରଚନା କରିଥିବା ଉପର୍ଯ୍ୟୁକ୍ତ ଉକ୍ତିରୁ ସ୍ପଷ୍ଟ ସୂଚିତ ହୁଏ ।

କିନ୍ତୁ 'ଶ୍ରୀଜଗନ୍ନାଥ ଚରିତାମୃତ'ର ଉପର୍ଯ୍ୟୁକ୍ତ ଉଦ୍ଧୃତ ଅନ୍ତର୍ଗତ "ବଟଗଣେଶଙ୍କ ଅଗ୍ରତ । ରଚିଲେ ଭାଷା ଭାଗବତ ॥" ପଙ୍‌କ୍ତି ମୁଦ୍ରିତ ପୁସ୍ତକରେ ଥିଲେ ମଧ୍ୟ କୌଣସି ପ୍ରାଚୀନ ତାଳପତ୍ର ପୋଥିରେ ତାହା ଦେଖାଯାଏ ନାହିଁ । ତାଳପତ୍ର ପୋଥିଗୁଡ଼ିକରେ ସେହି ପଙ୍‌କ୍ତି ନିମ୍ନମତେ ଉଲ୍ଲେଖ କରାଯାଇଛି—

ବଟ ଗଣେଶଙ୍କ ଆଗରେ । ଶ୍ରୀଭାଗବତ ନିରନ୍ତରେ ॥

ପୂର୍ବାପର ସଙ୍ଗତି ଦୃଷ୍ଟିରୁ ଏହି ପାଠ ଯଥାର୍ଥ ଓ ଯୁକ୍ତିସଙ୍ଗତ ମନେ ହୁଏ । ତେଣୁ ମୁଦ୍ରିତ ପୁସ୍ତକରେ ମୂଳ ପାଠକୁ ସଂଶୋଧନ କରିବାକୁ ଯାଇ ବିକୃତ କରାଯାଇଥିବାର ଦେଖାଯାଏ । କେତେକ ଆଲୋଚକ ଏହି ପଙ୍‌କ୍ତିକୁ ବିଶ୍ବରକୁ ନେଇ ଅତିବଡ଼ ଜଗନ୍ନାଥ ଦାସ ଭାଗବତ ରଚନା କରିନାହାନ୍ତି ବୋଲି ମତ ଦିଅନ୍ତି । କିନ୍ତୁ ଏହାଦ୍ୱାରା କବି ଦିବାକର ଦାସଙ୍କ ବର୍ଣ୍ଣିତ ଅତିବଡ଼ ଜଗନ୍ନାଥ ଦାସ ଯେ ଭାଗବତକାର ନୁହନ୍ତି, ତାହା ପ୍ରମାଣିତ ହୁଏ ନାହିଁ । ମହାପୁରୁଷ ଜଗନ୍ନାଥ ଦାସ ସ୍ୱପ୍ରଣୀତ ଓଡ଼ିଆ ଭାଗବତ ବଟଗଣେଶଙ୍କ ଆଗରେ ପଢ଼ି ସମବେତ ଭକ୍ତମାନଙ୍କୁ ଶୁଣାଉଥିଲେ । ଏଥିରେ ସନ୍ଦେହ କରିବାର କିଛି ନାହିଁ । ତେଣୁ ବଟଗଣେଶଙ୍କ ଅଗ୍ରବର୍ତ୍ତୀ କ୍ଷେତ୍ରକୁ ଭାଗବତର ରଚନା କ୍ଷେତ୍ର ଅପେକ୍ଷା ତା'ର ପଠନ, ଶ୍ରବଣ ଓ ପ୍ରବଚନର କ୍ଷେତ୍ର ରୂପେ ଗ୍ରହଣ କରିବା ଯୁକ୍ତିଯୁକ୍ତ ମନେ ହୁଏ ।

ଓଡ଼ିଶାରେ ପ୍ରଚଳିତ ଜନଶ୍ରୁତି ଅନୁଯାୟୀ ନିରକ୍ଷର ବିଧବା ଜନନୀ ପଦ୍ମାବତୀ ଶ୍ରୀକୃଷ୍ଣ ଚରିତ ଶୁଣିବା ପାଇଁ ଇଚ୍ଛା ପ୍ରକାଶ କରିଥିଲେ । ମାତୃଭକ୍ତ ଜଗନ୍ନାଥ ଦାସ ଜନନୀଙ୍କର ଅନ୍ତିମ ଅଭିଳାଷ ପୂରଣ ନିମିତ୍ତ ସଂସ୍କୃତ ଭାଗବତକୁ ଓଡ଼ିଆ ଭାଷାରେ ଅନୁବାଦ କରି ତାଙ୍କୁ ଶୁଣାଇଥିଲେ । ଓଡ଼ିଆ ଭାଗବତ ରଚନାର ଏହାହିଁ ମୂଳ କାରଣ ଥିଲା ବୋଲି ପଣ୍ଡିତମାନେ ମତବ୍ୟକ୍ତ କରନ୍ତି । ଓଡ଼ିଆ ଭାଗବତ ରଚନାର କାରଣ ସମ୍ପର୍କରେ ପରବର୍ତ୍ତୀ ଚରିତକାରମାନେ ଭିନ୍ନ ଭିନ୍ନ ମତ ପୋଷଣ କରିଥିବାର ଜଣାଯାଏ ।

ଈଶ୍ୱର ଦାସ ତାଙ୍କ "ଚୈତନ୍ୟ ଭାଗବତ" ରେ ମଧ୍ୟ ଏ ପ୍ରସଙ୍ଗର ଅବତାରଣା କରିବାକୁ ଯାଇ କହିଛନ୍ତି—

ଜଗନ୍ନାଥଙ୍କ ମୁଖ ଶ୍ରୁତି । କହନ୍ତି ଚୈତନ୍ୟ ଗୋସାଇଁ ॥
ପଞ୍ଚସଖାଙ୍କୁ ଆଜ୍ଞା କର । ପୁରାଣ ଯେତେ ଗ୍ରନ୍ଥସାର ॥
ନ ଜାଣି ପ୍ରାଣୀ ପଶୁଜନ । ପାପରେ ହୋଇଲେ ଦହନ ॥
ପଞ୍ଚସଖାଏ ଅବତାର । ମୋହର ଅଂଶରୁ ବାହାର ॥
ପୁରାଣ ଗୀତ ରସ କରି । ଗାଇବେ ମୁଖେ ରାମହରି ॥
ଲେଖିବେ ମୋହର ଚରିତ । ଶୁଣିଣ ପ୍ରାଣୀ ହେବେ ମୁକ୍ତ ॥
ପୁରାଣ ଗୀତ ରସସାର । ଲେଖ ଶ୍ରୀମୁଖେ ଅଙ୍ଗୀକର ॥

( ଚୈ: ଭା:, ପୃ-୨୬ )

ଓଡ଼ିଶାର ଅନ୍ୟତମ ଚରିତକାର ଭକ୍ତ ରାମଦାସ ତାଙ୍କ "ଦାର୍ଢ୍ୟତା ଭକ୍ତି ରସାମୃତ" ଗ୍ରନ୍ଥରେ ଏ ବିଷୟରେ କହିଛନ୍ତି ଯେ, ସ୍ୱୟଂ ଶ୍ରୀଜଗନ୍ନାଥଙ୍କ ଆଦେଶ ମତେ ଜଗନ୍ନାଥ ଦାସ ଓଡ଼ିଆ ଭାଗବତ ରଚନା କରିଥିଲେ—

ଯେ ମହାପୁରାଣ ଚରିତ । ପ୍ରକୃତ ବନ୍ଧେ କଲେ ଗୀତ ॥
ତୁ ଜନ୍ମେ ପବିତ୍ର ହୋଇବୁ । ଅଶେଷ ପ୍ରାଣୀଙ୍କି ତାରିବୁ ॥
ଶ୍ରୀଭାଗବତ ଶୁଣି କର୍ଣ୍ଣେ । ପବିତ୍ର ହେବେ ପ୍ରାଣୀମାନେ ॥
କରି ତୁ ଏହି ଅନୁକୂଳ । ଲଭ ତୁ ପରମ ମଙ୍ଗଳ ॥
ଏମନ୍ତ ଦାସେ ଆଜ୍ଞା ପାଇ । ସ୍ୱପନେ ପ୍ରଭୁଙ୍କୁ ଜଣାଇ ॥
ଏ ଗ୍ରନ୍ଥ ଦିଶ ମୁଁ ବାହାର । ମୁନିମାନଙ୍କୁ ଅଗୋଚର ॥
ଫେଡ଼ି ଏକଥା ଆଜ୍ଞା ହେଉ । ଶୁଣି ବୋଲନ୍ତି ମହାବାହୁ ॥
ଭୟ ନକର ତୁମ୍ଭେ କିଛି । ଗୀତ ତୁ କର ମୁହିଁ ଅଛି ॥
ତୋ ହୃଦପଦ୍ମେ ବସିଥାଇ । ମୁଁ ଯାହା ଦେଉଥିବି କହି ॥
ତାହା ତୁ ପଦ ଯୋଡ଼ି ଲେଖ । କହି ଚଳିଲେ ପଦ୍ମମୁଖ ॥

(ଦା:ଭ:ର, ପୃ—୧୨୪-୧୨୫)

ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଆଦେଶ ଅନୁସାରେ ଓଡ଼ିଆ ଭାଗବତ ରଚନା କରିଥିବା ବିଷୟ ଜଗନ୍ନାଥ ଦାସ ଗ୍ରନ୍ଥର ବିଭିନ୍ନ ସ୍ଥଳରେ ଉଲ୍ଲେଖ କରିଛନ୍ତି ।

କବି ଦିବାକରଙ୍କ ବର୍ଣ୍ଣନା ଅନୁସାରେ ଜଗନ୍ନାଥ ଦାସ ଅଠର ବର୍ଷ ବୟସରେ ଓଡ଼ିଆ ଭାଗବତ ରଚନା କରିଥିଲେ । ଶ୍ରୀମନ୍ଦିରରେ ଶ୍ରୀଚୈତନ୍ୟଙ୍କ ସହିତ ତାଙ୍କର ସାକ୍ଷାତ ସମୟରେ ଜଗନ୍ନାଥ ଦାସ ଦଶମ ସ୍କନ୍ଧର ଶ୍ରୀକୃଷ୍ଣ ସ୍ତୁତିର ଓଡ଼ିଆ ଅନୁବାଦ କରି ଲୋକମାନଙ୍କୁ ଶୁଣାଉଥିଲେ—

ଶ୍ରୀ ଅତିବଡ଼ ଜଗନ୍ନାଥ । ଦଶମସ୍କନ୍ଧ ଭାଗବତ ॥
ଶ୍ରୀକୃଷ୍ଣ ସ୍ତୁତିର ବସ୍ତୁର । ପଢ଼ନ୍ତି ଗଣେଶ ଅଗ୍ରର ॥
ପୁରାଣ ପଢ଼ିବାର କାଳେ । ଭକତ ପ୍ରକାଶନ୍ତି ବଳେ ॥
ସୁସାଧୁଗଣ ସଙ୍ଗେ ମିଶି । କଳ୍ପବଟର ମୂଳେ ବସି ॥
ପ୍ରାକୃତ ଭାଗବତ ବାଣୀ । ଶ୍ରୀକୃଷ୍ଣଲୀଳା ତରଙ୍ଗିଣୀ ॥
ନିର୍ମଳ ସୁଧା ପାନ କରି । ସମସ୍ତେ ଛନ୍ତି କର୍ଣ୍ଣ ଡେରି ॥
ଏହି ସମୟେ ଶ୍ରୀଚୈତନ୍ୟ । ସଙ୍ଗତେ ଘେନି ସଖାଗଣ ॥
ବଟ ତଳରେ ବିଜେ କଲେ । ପୁରାଣ ଶୁଣି ତୋଷ ହେଲେ ॥

(ଜ.ଚ.,ପୃ—୧୫-୧୬)

ଜଗନ୍ନାଥ ଦାସ ଶ୍ରୀମଦ୍ ଭାଗବତର ଦଶମ ସ୍କନ୍ଧରୁ ଯେଉଁ ଶ୍ରୀକୃଷ୍ଣ ସ୍ତୁତିଟି ପଢ଼ି ସମବେତ ଭକ୍ତମାନଙ୍କୁ ଶୁଣାଉଥିଲେ ଚରିତକାର ଦିବାକର ତାହାକୁ ନିମ୍ନମତେ ଉଲ୍ଲେଖ କରିଛନ୍ତି—

ଶ୍ରେୟଃ ସ୍ରୁତିଂ ଭକ୍ତିମୁଦସ୍ୟତେ ବିଭୋ
କ୍ଲିଶ୍ୟନ୍ତି ଯେ କେବଳ ବୋଧ ଲବ୍ଧୟେ ।
ତେଷାମସୌ କ୍ଲେଶଳ ଏବଂ ଶିଷ୍ୟତେ
ନାନ୍ୟଦ୍ ଯଥା ସ୍ଥୂଳ ତୁଷାବଘାତିନାମ୍ । ୧୦-୧୪-୪ ॥

ହେ ପ୍ରଭୋ ଭକତି ତୃମ୍ଭର । ଆଶ୍ରେ ନକରି ଯେଉଁ ନର ॥
କେବଳ ଲଭିବାକୁ ଜ୍ଞାନ । କ୍ଲେଶ କରନ୍ତି ଅନୁକ୍ଷଣ ॥
ତାଙ୍କର କ୍ଲେଶ ହିଁ ଯେ ମୂଳ । କେବେହେଁ ନ ଲଭନ୍ତି ଫଳ ॥
ତଣ୍ଡୁଳ ଆଶେ ତମ୍ବୁ କୁଟି । କେବଳ ସେ ପରିଶ୍ରମଟି ॥

(ଜ.ଚ.,ପୃ—୧୬)

ଶ୍ରୀଚୈତନ୍ୟଙ୍କ ଶ୍ରୀପୁରୁଷୋତ୍ତମ କ୍ଷେତ୍ର ଆଗମନ ବେଳକୁ (୧୫୧୦— ଖ୍ରୀ:ଅ.) ଓଡ଼ିଆ ଭାଗବତର ରଚନା ଶେଷ ହୋଇଥିବା ଉପଯୁକ୍ତ ଆଲୋଚନାରୁ ସ୍ପଷ୍ଟ ଅନୁମିତ ହୁଏ । ଏ ବିଷୟରେ କେତେକ ପଣ୍ଡିତ ଆଲୋଚକ ସନ୍ଦେହ ପ୍ରକାଶ କରି କହିଛନ୍ତି ଯେ ଅଠର ବର୍ଷ ବୟସ୍କ ଜଣେ ଯୁବକ ପକ୍ଷରେ ଭାଗବତ ପରି ଗ୍ରନ୍ଥ ରଚନା ସମ୍ଭବ ନୁହେଁ । କିନ୍ତୁ ଏପରି ସନ୍ଦେହର କୌଣସି ଦୃଢ଼ଭିତ୍ତି ଥିଲାପରି ମନେହୁଏ ନାହିଁ । କାରଣ କେବଳ ଅନୁମାନ ଆଧାରରେ 'ଶ୍ରୀଜଗନ୍ନାଥ-ଚରିତାମୃତ'ର ଉଲ୍ଲେଖକୁ ଅସ୍ୱୀକାର କରିବା ଆଦୌ ଯୁକ୍ତିସଙ୍ଗତ ନୁହେଁ । କବି ଦିବାକର ଦାସ ଗ୍ରନ୍ଥର ଉପସଂହାରରେ ଲେଖିଛନ୍ତି—

ଅଷ୍ଟାଦଶ ବରଷଠାରେ । ଶ୍ରୀଚଇତନ୍ୟ ଭେଟ ହେଲେ ॥
ଷଡ଼ବରଷ ନିରନ୍ତର । ସେବିଲେ ଚୈତନ୍ୟ ପଯର ॥
ଏ ଅନ୍ତେ ଛତିଶ ବରଷ । ପ୍ରେମ ସାଧିଲେ ଅହର୍ନିଶ ॥
ଷାଠିଏ ବର୍ଷ ସମୟରେ । ପ୍ରେମ ସ୍ଥାପି ସ୍ଥାନେ ଗମିଲେ ॥

(ଜ:ଚ:, ପୃ—୩୦୮)

ଶ୍ରୀଚୈତନ୍ୟ ନୀଳାଚଳରେ ପହଞ୍ଚିବା ପରେ ଓ ଦାକ୍ଷିଣାତ୍ୟ ତୀର୍ଥ ଭ୍ରମଣରେ ଯିବା ପୂର୍ବରୁ ପୁରୀରେ ଅଳ୍ପ କେତୋଟି ଦିନ ଅବସ୍ଥାନ କରିଥିଲେ । ସେହି ସମୟରେ ଶ୍ରୀଚୈତନ୍ୟଙ୍କ ସହିତ ଜଗନ୍ନାଥ ଦାସଙ୍କର ପ୍ରଥମ ସାକ୍ଷାତ ହୋଇଥିଲା । ସମ୍ଭବତଃ ଜଗନ୍ନାଥ ଦାସ ସେତେବେଳେ ଶ୍ରୀଚୈତନ୍ୟଙ୍କ ଅନୁମତି କ୍ରମେ ବଳରାମ ଦାସଙ୍କଠାରୁ ଦୀକ୍ଷା ଗ୍ରହଣ କରିଥିଲେ । ଶ୍ରୀଚୈତନ୍ୟ ତୀର୍ଥ-ଭ୍ରମଣରୁ ଫେରି ପୁରୀରେ ସ୍ଥାୟୀଭାବେ ଅବସ୍ଥାନ କରିବା ପର୍ଯ୍ୟନ୍ତ (୧୫୧୦—୧୫୧୬ ଖ୍ରୀ:ଅ:) ଦୀର୍ଘ ଛଅ ବର୍ଷ କାଳ ଜଗନ୍ନାଥ ଦାସ ତାଙ୍କ ପଦସେବା ଅଥବା ପାଦୁକା ସେବା କରି ତାଙ୍କର ଭବନାରେ ସମସ୍ତ ଅତିବାହିତ କରିଥିବା ଉପର୍ଯ୍ୟୁକ୍ତ ଉକ୍ତିରୁ ସୂଚିତ ହୁଏ । ପରବର୍ତ୍ତୀ ଛତିଶ ବର୍ଷ ସେ ପ୍ରେମଭକ୍ତି ସାଧନାରେ ନିମଜ୍ଜିତ ଥିଲେ । ତେଣୁ ତାପୂର୍ବରୁ ଅର୍ଥାତ୍ ୧୫୧୦ ଖ୍ରୀଷ୍ଟାବ୍ଦ ବେଳକୁ ଓଡ଼ିଆ ଭାଗବତ ଏକାଦଶ ସ୍କନ୍ଧ ପର୍ଯ୍ୟନ୍ତ ଯେ ରଚିତ ହୋଇ ସାରିଥିଲା ସେଥିରେ ସନ୍ଦେହର ଅବକାଶ ନାହିଁ ।



# ଶ୍ରୀଚୈତନ୍ୟ ଓ ଜଗନ୍ନାଥ ଦାସ

ଓଡ଼ିଶା ଇତିହାସରେ ଶ୍ରୀଚୈତନ୍ୟଙ୍କର ପୁରୁଷୋତ୍ତମ କ୍ଷେତ୍ରକୁ ଆଗମନ ଏବଂ ସନ୍ନ୍ୟାସୀ ହୋଇଥିଲେ ବି ଆଜୀବନ ଶ୍ରୀକ୍ଷେତ୍ରରେ ଅବସ୍ଥାନ କରିବା ଏକ ଉଲ୍ଲେଖଯୋଗ୍ୟ ଘଟଣା । ଓଡ଼ିଶାର ଧର୍ମ ଓ ସଂସ୍କୃତି ସହିତ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ ଏହାର ପ୍ରଭାବ ଯେପରି ଗଭୀର ସେହିପରି ଯେ ବିସ୍ତୃତ ଏଥିରେ ସନ୍ଦେହ ନାହିଁ । ସାଧାରଣ ଜନଜୀବନରେ ନବ ନୀରଦସୁନ୍ଦର ଘନକୃଷ୍ଣ ଶ୍ରୀକୃଷ୍ଣ-ଜଗନ୍ନାଥଙ୍କ ଅଂଶାବତାର ରୂପେ ଅବତୀର୍ଣ୍ଣ ଗୌରକୃଷ୍ଣ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କର ଆସନ ଲାଭ କରିବା ସଙ୍ଗେ ସଙ୍ଗେ ଦେବତାର ସମ୍ମାନରେ ଆଦୃତ ଓ ପୂଜିତ ହୋଇଥିଲେ । ଓଡ଼ିଶାବାସୀ ବିଶେଷତଃ ଶ୍ରୀକ୍ଷେତ୍ରବାସୀ ସାଧୁ, ସଜ୍ଜନ, ଭକ୍ତ, କବି କୋବିଦବୃନ୍ଦ ଶ୍ରୀଚୈତନ୍ୟଙ୍କୁ ନିଜ ଭିତରେ ପାଇ ଜୀବନକୁ ଧନ୍ୟ ମନେ କରିବା ସଙ୍ଗେ ସଙ୍ଗେ ସ୍ୱରଚିତ କାବ୍ୟ, କବିତା, ଚରିତ ଗ୍ରନ୍ଥଗୁଡ଼ିକରେ ତାଙ୍କୁ ପ୍ରମୁଖ ସ୍ଥାନ ଦେଇଥିଲେ ।

ଶ୍ରୀଚୈତନ୍ୟ ଓଡ଼ିଶାରେ ପହଞ୍ଚିବା ପରେ ଓ ନୀଳାଚଳରେ ପହଞ୍ଚିବାର ଅବ୍ୟବହିତ ପୂର୍ବରୁ ଓଡ଼ିଶାର ମୂର୍ଦ୍ଧନ୍ୟ ଭକ୍ତକବି ବଳରାମ ଦାସ, ଯଶୋବନ୍ତ ଦାସ, ଅନନ୍ତ ଦାସ ଓ ଅଚ୍ୟୁତ ଦାସଙ୍କ ସହିତ ତାଙ୍କର ସାକ୍ଷାତ ହୋଇଥିଲା । ଶ୍ରୀମନ୍ଦିର ପରିକ୍ରମା ଓ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ସମୟରେ ସେମାନେ ଶ୍ରୀଚୈତନ୍ୟଙ୍କ ସହିତ ଉପସ୍ଥିତ ଥିଲେ ବୋଲି କବି ଈଶ୍ୱର ଦାସଙ୍କ ପ୍ରଣୀତ 'ଚୈତନ୍ୟ ଭାଗବତ'ରୁ ସୂଚନା ମିଳେ ।

ସଙ୍ଗତେ ବଳରାମ ଦାସ । ଯଶୋବନ୍ତ ଅଚ୍ୟୁତ ଦାସ ॥
ଅନନ୍ତ ଦାସ ସଙ୍ଗତରେ । ଗୃହ ସଖାଙ୍କ ଧରି କର ॥
ଏମନ୍ତେ ଚୈତନ୍ୟ ଗୋସାଇଁ । କ୍ଷେତ୍ର ତାହାଣାବୃତ ହୋଇ ॥
ଅଇଲେ ପ୍ରଦକ୍ଷିଣ କରି । ଶିଙ୍ଘା ମୁରଲୀ ନାଦ ପୂରି ॥

(ଚୈ:ଭା: ଅ—୪୭, ପୃ—୧୬୧)

ଉପର୍ଯ୍ୟୁକ୍ତ ଉକ୍ତିରୁ ଶ୍ରୀଚୈତନ୍ୟଙ୍କ ସହିତ ଜଗନ୍ନାଥଙ୍କ ସାକ୍ଷାତ ଓ ପରିଚୟ ସର୍ବଶେଷରେ ଘଟିଥିବାର ସ୍ପଷ୍ଟ ଅନୁମିତ ହୁଏ । କବି ଦିବାକର ଦାସଙ୍କ 'ଶ୍ରୀଜଗନ୍ନାଥ ଚରିତାମୃତ'ର ବର୍ଣ୍ଣନା ଅନୁଯାୟୀ ନୀଳାଚଳରେ ଆସି ପହଞ୍ଚିବାର (୧୫୧୦—ଖ୍ରୀଷ୍ଟାବ୍ଦ) ଅଳ୍ପ କେତେଦିନ ମଧ୍ୟରେ ଶ୍ରୀଚୈତନ୍ୟ ଓ ଶ୍ରୀଜଗନ୍ନାଥ ଦାସଙ୍କ ମଧ୍ୟରେ ପ୍ରଥମ ସାକ୍ଷାତ ହୋଇଥିଲା । ଶ୍ରୀଚୈତନ୍ୟ ଯେତେବେଳେ ଶ୍ରୀକ୍ଷେତ୍ରରେ ଏକମାସ ଅବସ୍ଥାନ କରିଥିଲେ ବୋଲି କବି ମାଧବ ପଟ୍ଟନାୟକଙ୍କ ପ୍ରଣୀତ 'ବୈଷ୍ଣବ ଲୀଳାମୃତ'ର ନିମ୍ନୋକ୍ତିରୁ ଜଣାଯାଏ ।

କ୍ଷେତ୍ରେ ଏକମାସ ଅବଧି । ଶାସ୍ତ୍ର ଚରଚ୍ଚ କଲେ ବୃଦ୍ଧି ॥
ମାସକ ରହିଲେ କ୍ଷେତ୍ରର । ଦେଉଳେ କରନ୍ତି ସଞ୍ଚାର ॥

(ବୈ:ଲୀ: ଅ—୪, ପୃ—୨୩)

ଶ୍ରୀଚୈତନ୍ୟ ଯେଉଁ ଅଳ୍ପ କେତେଦିନ ପାଇଁ ଶ୍ରୀକ୍ଷେତ୍ରରେ ଅବସ୍ଥାନ କରିଥିଲେ ସେତେବେଳେ ନିଜର ଅନୁଗତ ବୈଷ୍ଣବ ଭକ୍ତମାନଙ୍କ ସହିତ ପ୍ରତିଦିନ ସେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ନିମିତ୍ତ ଶ୍ରୀମନ୍ଦିରକୁ ଯାଉଥିଲେ ଏବଂ ନାମ-କୀର୍ତ୍ତନ ଓ ବିଭିନ୍ନ ଶାସ୍ତ୍ରଚର୍ଚ୍ଚା କରୁଥିଲେ । ଦିନେ ଶ୍ରୀମନ୍ଦିର ପରିକ୍ରମା କରିବା ସମୟରେ ଶ୍ରୀଚୈତନ୍ୟ ବଟଗଣେଶଙ୍କ ପାଖରେ ଯେତେବେଳେ ପହଞ୍ଚିଲେ ସେତେବେଳେ ଜଗନ୍ନାଥ ଦାସ ସରଳ ସୁବୋଧ ଭାଷାରେ ସଂସ୍କୃତ ଭାଗବତର ବ୍ୟାଖ୍ୟା କରି ସେଠାରେ ସମବେତ ହୋଇଥିବା ଭକ୍ତମାନଙ୍କୁ ଶୁଣାଉଥିଲେ । ଭକ୍ତ ଜଗନ୍ନାଥ ଦାସଙ୍କ ଲଳିତ ମଧୁର କଣ୍ଠସ୍ୱର ଓ ଭାଗବତର ତତ୍ତ୍ୱ ସମ୍ବନ୍ଧୀୟ ସୁନ୍ଦର ବ୍ୟାଖ୍ୟା ଶୁଣି ଶ୍ରୀଚୈତନ୍ୟ ପରମ ସନ୍ତୋଷ ଲାଭକରିବା ସଙ୍ଗେ ସଙ୍ଗେ ତାଙ୍କ ମନରେ ଭାବାନ୍ତର ଜାତ ହେଲା । ସେ ପ୍ରେମବିଭୋର ହୋଇ ଜଗନ୍ନାଥ ଦାସଙ୍କୁ ଗାଢ଼ ଆଲିଙ୍ଗନ ପାଶରେ ଆବଦ୍ଧ କଲେ । ପ୍ରାଣ ଓ ମନରେ ଅପୂର୍ବ ପୁଲକ ସୃଷ୍ଟି ହେବାରୁ ଉଭୟ ଦୀର୍ଘ ସମୟ ଧରି ଆଲିଙ୍ଗନାବଦ୍ଧ ହୋଇ ରହିଥିଲେ । ଦିବାକର ଦାସ ଏହି ମିଳନ ଘଟଣାକୁ ନିମ୍ନମତେ ବର୍ଣ୍ଣନା କରିଛନ୍ତି—

ଏହି ସମୟେ ଶ୍ରୀଚୈତନ୍ୟେ । ସଙ୍ଗତେ ଘେନି ସଖାଗଣ ॥
ବଟ ତଳରେ ବିଜେ କଲେ । ପୁରାଣ ଶୁଣି ତୋଷ ହେଲେ ॥
ପ୍ରେମଭାବରେ ଶ୍ରୀଚୈତନ୍ୟ । ଦାସଙ୍କୁ କଲେ ଆଲିଙ୍ଗନ ॥
ଅଠାଇ ଦିବସ ପର୍ଯ୍ୟନ୍ତ । ବେନି ରହିଲେ ପ୍ରେମଚିତ୍ତ ॥
ତହୁଁ ସେ ତୃପ୍ତଚିତ୍ତ ହୋଇ । ବୋଲାଣ କଲେକ ଗୋସାଇଁ ॥

ଦେଉଳ କରି ପ୍ରଦକ୍ଷିଣ । ଦାସଙ୍କ ସଙ୍ଗତେ ଯେଜଣ ।
ଦ୍ୱାଦଶ ବାର ଦଣ୍ଡବତ । କଲେ ସେ ଦାସ ଜଗନ୍ନାଥ ॥

(ଜ:ଚ:, ପୃ—୧୭)

'ଶ୍ରୀଜଗନ୍ନାଥ ଚରିତାମୃତ'ର ପ୍ରାଚୀନ ତାଳପତ୍ର ପୋଥିରେ ଅଠାଇ ଦିବସ ନୁହେଁ, ଅଠାଇ ପ୍ରହର ବୋଲି ଉଲ୍ଲେଖ ଅଛି । କବି ମାଧବ ପଟ୍ଟନାୟକଙ୍କ ଲିଖିତ 'ବୈଷ୍ଣବ ଲୀଳାମୃତ'ରେ ମଧ୍ୟ ଏହି ସମସ୍ତ ଅଠେଇ ପ୍ରହର ବୋଲି ଉଲ୍ଲେଖ କରାଯାଇଛି । ଉଭୟ ମହାପୁରୁଷଙ୍କ ମିଳନକୁ କବି ମାଧବ ପଟ୍ଟନାୟକ ନିମ୍ନମତେ ବର୍ଣ୍ଣନା କରିଛନ୍ତି—

ଅନେକ ସନ୍ତ ଅବକାଶେ । ଭଗତେ ବୃନ୍ଦ ଯେ ବିଶେଷେ ॥
ଭାଗବତ ଅର୍ଥ ବଖାଣେ । ଆସି ମିଳିଲେ ଶ୍ରୀଚୈତନ୍ୟ ॥
ଭାଗବତ ଅର୍ଥ ଶୁଣିଲେ । ସ୍ୱାମୀର ଭାବ ସେ ବୁଝିଲେ ॥
ନୟନ ଅଶ୍ରୁ ଝର ଝର । ଅଙ୍ଗେଣ ପୁଲକ ଅପାର ॥
ଜଗନ୍ନାଥର ଏତେ ଭାବ । ଚୈତନ୍ୟ କଲେ ତାହା ଠାବ ॥
ବୋଇଲେ ତୁ ଭଗତଶ୍ରେଷ୍ଠ । ଭଗତଭାବେ ମତି ପୁଷ୍ଟ ॥
ତୋ ଭାବ ମୁଁ କାହୁଁ ପାଇବି । ତୋହର ସଙ୍ଗ ନ ଛାଡ଼ିବି ॥
ଅଠେଇ ପହର ପର୍ଯ୍ୟନ୍ତେ । ଦୁହେଁ ରହିଲେ କୋଳାଗତେ ॥
ଦୁହେଁ ଏକତ୍ର ଠାବେ ବସି । ପରସ୍ପରକୁ ପ୍ରଶଂସନ୍ତି ॥
ସ୍ୱାମୀ ତୁ ବୋଇଲା ଚୈତନ୍ୟ । ପ୍ରଭୁ ତୁ ବୋଇଲା ଆପଣ ॥
ସମୁଦ୍ର ନଦୀ ଯେ ମିଶିଲା । ଭାବ ତରଙ୍ଗ ଉଛୁଳିଲା ॥

(ବୈ:ଲୀ:, ଅ—୪, ପୃ—୨୩-୨୪)

ଶ୍ରୀମନ୍ଦିର ପରିକ୍ରମା ପରେ ମହାପ୍ରଭୁ ଶ୍ରୀଚୈତନ୍ୟ ଭକ୍ତ ପ୍ରବର ଜଗନ୍ନାଥ ଦାସଙ୍କୁ ଶ୍ରୀରାଧାକୃଷ୍ଣଙ୍କ ପ୍ରେମମୟ ମୂର୍ତ୍ତି ମହାବାହୁ ଶ୍ରୀଜଗନ୍ନାଥଙ୍କ ଅନନ୍ୟ ଭକ୍ତ ବୋଲି ଭାବ ସମ୍ମାନିତ କରିବା ସଙ୍ଗେ ସଙ୍ଗେ କହିଲେ—'ଜଗନ୍ନାଥ ଦାସ ମହାପ୍ରେମର ଭଣ୍ଡାର । ତେଣୁ ସେ ଆମ ସମସ୍ତଙ୍କର ନମସ୍ୟ ଓ ପୂଜ୍ୟ'—ଏହି କଥା ଶ୍ରୀଚୈତନ୍ୟଙ୍କ ମୁଖରୁ ଶୁଣି ସମବେତ ବୈଷ୍ଣବବୃନ୍ଦ ଜଗନ୍ନାଥ ଦାସଙ୍କୁ ଯଥୋଚିତ ସମ୍ମାନ ପ୍ରଦର୍ଶନ କରିଥିଲେ । ପ୍ରତିଦିନ ଜଗନ୍ନାଥ ଦାସଙ୍କ ସହିତ ଶ୍ରୀଜଗନ୍ନାଥ ମନ୍ଦିର ପରିକ୍ରମା ଓ ପ୍ରେମଭକ୍ତି ସମ୍ବନ୍ଧୀୟ ଆଲୋଚନାରେ ଶ୍ରୀଚୈତନ୍ୟଙ୍କ ସମୟ ଅତିବାହିତ ହେବାକୁ ଲାଗିଲା । ଏଥିରେ ତାଙ୍କର ଅନୁଗାମୀ ବୈଷ୍ଣବମାନଙ୍କ ମନରେ ଘୋର ଅସନ୍ତୋଷ ଭାବ ଜାତ ହେଲା । ଶ୍ରୀଚୈତନ୍ୟ

ବୈଷ୍ଣବମାନଙ୍କର ମନୋଭାବ ବୁଝିପାରି ସେମାନଙ୍କୁ ସାନ୍ତ୍ୱନା ଦେବାକୁ ଯାଇ କହିଥିଲେ—

ଦ୍ୱାରକା ପୁରେ ଆଜ୍ଞାଯାଏ । ଉଣ୍ଡ୍ରିମ ଶବଦଷ୍ଟି ହୁଏ ॥
ଜ୍ଞାନୀ ବା ଅଜ୍ଞାନ ବ୍ରାହ୍ମଣ । ହରିଙ୍କ ଶରୀର ସେ ଜାଣ ॥
ଜଗତ ଦଇବ ଅଧୀନ । ମନ୍ତ୍ର ଅଧୀନ ଦେବ ଜାଣ ॥

× × ×

ଯେ ଅଙ୍ଗେ ଶ୍ରୀକୃଷ୍ଣଙ୍କ ବାସ । ସେ ଅଙ୍ଗେ ଅଛୁ ଭକ୍ତିରସ ॥
ସେ ବପୁ ଶ୍ରୀକୃଷ୍ଣ ସମାନ । ତା ସଙ୍ଗେ ନ ଗଣିବ ଆନ ॥

(ଜ:ଚ:, ପୃ—୧୮)

ଜଗନ୍ନାଥ ଦାସ ସେହିପରି ଜଣେ ଅନନ୍ୟ ସାଧାରଣ ଜ୍ଞାନୀ ଭକ୍ତ । ତେଣୁ ତାଙ୍କ ସମ୍ବନ୍ଧରେ କାହାରି ମନରେ ଦ୍ୱିଧାଭାବ ରହିବା ଉଚିତ ନୁହେଁ । କିନ୍ତୁ ଶ୍ରୀଚୈତନ୍ୟଙ୍କ ଉଦାର ଭାବନାର ବିଶେଷ କିଛି ପ୍ରଭାବ ପଡ଼ିଲା ନାହିଁ । ଫଳରେ ବୈଷ୍ଣବମାନଙ୍କ ହୃଦୟରେ କୌଣସି ପରିବର୍ତ୍ତନ ଘଟିଲା ନାହିଁ ।

ଶ୍ରୀଚୈତନ୍ୟଙ୍କ ଅନୁଗତ ବୈଷ୍ଣବ ଗୋଷ୍ଠୀରେ ତାଙ୍କୁ କେନ୍ଦ୍ର କରି ଅସନ୍ତୋଷ ସୃଷ୍ଟି ହୋଇଥିବାର ଜାଣିବାକୁ ପାଇ ଭକ୍ତ ଜଗନ୍ନାଥ ଦାସ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିସାରି ଦୁଇହାଣ୍ଡି ଅଭଡ଼ା ଦୁଇ ହାତରେ ଧରି ଶ୍ରୀଚୈତନ୍ୟଙ୍କ ପାଖରେ ପହଞ୍ଚିଲେ ଏବଂ ହାତ ଧୋଇସାରି ତାଙ୍କୁ ସାଷ୍ଟାଙ୍ଗ ପ୍ରଣାମ କଲେ । ଶ୍ରୀଚୈତନ୍ୟ 'ଆସ ହେ ଭକ୍ତିପୂର୍ଣ୍ଣ ଦାସେ' ବୋଲି କହିବାରୁ ଜଗନ୍ନାଥ ଦାସ ହାତଯୋଡ଼ି କହିଲେ—'ପ୍ରଭୋ ! ମୁଁ ଦୀକ୍ଷା ଗ୍ରହଣ କରିନାହିଁ । ତେଣୁ ମୁଁ ଅସ୍ପୃଶ୍ୟ । ଆପଣ ଦୟାକରି ମୋତେ ଦୀକ୍ଷା ପ୍ରଦାନ କରନ୍ତୁ ।' ଶ୍ରୀଚୈତନ୍ୟ ତାଙ୍କୁ ଆଲିଙ୍ଗନ କରି କହିଲେ—'କାହିଁକି ଏପର୍ଯ୍ୟନ୍ତ ଉପଦେଶ ଗ୍ରହଣ କରିନାହଁ ତାହା ପ୍ରକାଶ କର । ଦୀକ୍ଷା ନେଇ ନ ଥିବାର କାରଣ ମୁଁ ଶୁଣିବା ପାଇଁ ଚାହୁଁଛି ।'

ଶ୍ରୀଚୈତନ୍ୟଙ୍କୁ ବିନମ୍ର ଭାବେ ପ୍ରଣାମ କରି ଜଗନ୍ନାଥ ଦାସ କହିଲେ—'ପ୍ରଭୋ ! ଦୀକ୍ଷା ଦ୍ୱାରା ଜ୍ଞାନାଜ୍ଞାନ କୃତ ସମସ୍ତ ପାପ ଦୂର ହୁଏ ଏବଂ ବ୍ରହ୍ମହତ୍ୟା, ସୁରାପାନ, ସୁବର୍ଣ୍ଣସ୍ତେୟ, ଭ୍ରୂଣହତ୍ୟାଦି ମହାପାତକ କ୍ଷୟ ହୁଏ । ଉତ୍ତମକୁଳରେ ଜନ୍ମ ହୋଇ ବେଦାଦି ଶାସ୍ତ୍ରମାନ ଅଧ୍ୟୟନ କରି ମଧ୍ୟ ବିଷ୍ଣୁଭକ୍ତିହୀନ ହେଲେ ବ୍ୟକ୍ତିର ଜୀବନ ନିରର୍ଥକ ହୋଇଯାଏ । ସେଥିପାଇଁ ଦୀକ୍ଷା ଗ୍ରହଣ ଆବଶ୍ୟକ । ବ୍ରାହ୍ମଣ ବୈଷ୍ଣବ ଗୁରୁଙ୍କଠାରୁ ଦୀକ୍ଷା ନେଲେ ଦୀକ୍ଷିତ ବ୍ୟକ୍ତି ବ୍ରହ୍ମଲୋକ ଲଭ-

କରେ । ସେହିପରି କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଗୁରୁଙ୍କଠାରୁ ଦୀକ୍ଷା ଗ୍ରହଣ କଲେ ବ୍ୟକ୍ତି ଯଥାକ୍ରମେ ଇନ୍ଦ୍ରଲୋକ, ପ୍ରଜାପତିଲୋକ ଓ ଗନ୍ଧର୍ବଲୋକ ପ୍ରାପ୍ତ ହୁଅନ୍ତି । ସର୍ବୋପରି ବର୍ଣ୍ଣ, ଲିଙ୍ଗ ନିର୍ବିଶେଷରେ ଯେ ରାଧାକୃଷ୍ଣ ନାମ କୀର୍ତ୍ତନ କରନ୍ତି ଦୀକ୍ଷା ପ୍ରଦାନରେ ସେ ସର୍ବଶ୍ରେଷ୍ଠ ବୈଷ୍ଣବଗୁରୁ ରୂପେ ବିବେଚିତ । ଆପଣ ଆଚାର୍ଯ୍ୟସୁଲଭ ସର୍ବଗୁଣରେ ପରିପୂର୍ଣ୍ଣ । ତେଣୁ ଆପଣ ମୋତେ ନିମ୍ନୋକ୍ତ ମନ୍ତ୍ରରେ ଦୀକ୍ଷା ପ୍ରଦାନ କରନ୍ତୁ—

ହରେ ରାମ ହରେ ରାମ     ରାମ ରାମ ହରେ ହରେ ।
ହରେ କୃଷ୍ଣ ହରେ କୃଷ୍ଣ     କୃଷ୍ଣ କୃଷ୍ଣ ହରେ ହରେ ॥

ଏହି ଷୋଳ ନାମ ଓ ବତିଶ ଅକ୍ଷର ବିଶିଷ୍ଟ ମହାମନ୍ତ୍ରରେ ମୁଁ ଦୀକ୍ଷା ନେବା ପାଇଁ ଇଚ୍ଛା କରୁଛି । କାରଣ, ଏହି ମନ୍ତ୍ର ଯେ ସାଧନା କରେ ତାର ସମସ୍ତ ବାଞ୍ଛା ସିଦ୍ଧ ହୁଏ । ମନ୍ତ୍ରଟିର ବ୍ୟାଖ୍ୟା ପ୍ରସଙ୍ଗରେ ସ୍ୱୟଂ ମହାବାହୁ ଶ୍ରୀଜଗନ୍ନାଥ କହିଛନ୍ତି—

ଚିତ୍ତକୁ ହରିବାରୁ ମୁହିଁ । ହରି ନାମରେ ମୁଁ ବୋଲଇ ॥
ଚିତ୍ତରେ ରମଣ ମୋହର । ତେଣୁଟି ରାମ ନାମ ମୋର ॥
କାମକଳାକୁ ଆକର୍ଷଣ । କରିବାରୁଟି ମୁହିଁ କୃଷ୍ଣ ॥
ଆଦ୍ୟରୁ ରାମ ପଛେ କୃଷ୍ଣ । ପ୍ରସିଦ୍ଧ ଅଟେ ଏହା ଜାଣ ॥
ରାକାର ରାଧା ଆହ୍ଲାଦିନୀ । ମାକାର ଲକ୍ଷ୍ମୀ ସ୍ୱରୂପିଣୀ ॥
ଏହାଙ୍କ ଯୋଗରେ ମୋହର । ସମସ୍ତ ସୃଷ୍ଟି କାରବାର ॥
ତେଣୁ ଏ ରାମଶବ୍ଦ ବାଛି । ପ୍ରଥମେ ମୁହିଁ ରଖିଅଛି ॥

(ଜ:ଚ:, ପୃ—୨୮)

ଜଗନ୍ନାଥ ଦାସଙ୍କ ମନୋଭାବ ଜାଣିବା ପରେ ଶ୍ରୀଚୈତନ୍ୟ କହିଲେ— ବିପ୍ରବର ! ସବୁ ନାମ ମଧ୍ୟରେ କୃଷ୍ଣନାମ ସର୍ବୋତ୍କୃଷ୍ଟ ଓ ଅନୁପମ । କିନ୍ତୁ ସେ ନାମ ରାମ ନାମ ପରେ କିପରି ଉଚ୍ଚାରିତ ହୋଇପାରିବ । ପୂର୍ବସିଦ୍ଧାନ୍ତ ଅନୁସାରେ କୃଷ୍ଣ ନାମହିଁ ପ୍ରଥମେ ଉଚ୍ଚାରଣ କରିବାର ବିଧି ଅଛି । ତୁମ୍ଭେ ଏହାର ବ୍ୟତିକ୍ରମ କରିପାର । ସେଥିରେ ମୋର ଆପତ୍ତି ନାହିଁ । କିନ୍ତୁ ତୁମେ ଦୀକ୍ଷା ନେବା ପୂର୍ବରୁ ମୋର ଏହି ଶଙ୍କାର ସମାଧାନ କର ।

ଶ୍ରୀଚୈତନ୍ୟ ଉତ୍କଳୀୟ ବୈଷ୍ଣବମାନଙ୍କ ଦ୍ୱାରା ଗୃହୀତ ମହାମନ୍ତ୍ରର ଆଧ୍ୟାତ୍ମିକ ବ୍ୟାଖ୍ୟା ଜଗନ୍ନାଥ ଦାସଙ୍କଠାରୁ ଶୁଣିବା ପରେ ସନ୍ତୁଷ୍ଟ ହୋଇ ସମ୍ପ୍ରଦାୟ ଅନୁସୃତ 'ହରେକୃଷ୍ଣ' ମନ୍ତ୍ରରେ ଦୀକ୍ଷିତ ହେବା ପାଇଁ ତାଙ୍କୁ ବାଧ୍ୟ ନ କରି ଶ୍ରୀରାମଭକ୍ତ ବଲରାମ ଦାସଙ୍କଠାରୁ ରାମମନ୍ତ୍ରରେ ଦୀକ୍ଷା ନେବା ପାଇଁ ପରାମର୍ଶ ଦେଇଥିଲେ—

ତୁମ୍ଭେ ତ ହେବାକୁ ଦୀକ୍ଷିତ । ଆମ୍ଭର ଅଟେ ସନମତ ॥
ଏ ମତ୍ତ ବଳରାମ ଦାସ । ପୁରାଇବେ ତୁମ୍ଭ ମାନସ ॥
ହରେରାମାଦି ମହାମନ୍ତ୍ର । ଯାହା ତୁମ୍ଭର ଅଭିମତ ॥
ପାଇ ସେ ମୋହର ଆଦେଶ । ତୁମ୍ଭଙ୍କୁ ଦେବ ଉପଦେଶ ॥
ଏମନ୍ତ କହି ଶ୍ରୀଚୈତନ୍ୟ । ସେ ବଳରାମଙ୍କୁ ରାଇଣ ॥
ଆଜ୍ଞା ଦେଲେକ ହୋଇ ହର୍ଷ । ଦାସଙ୍କୁ ଦିଅ ଉପଦେଶ ॥

× × ×

ଚୈତନ୍ୟ ସାକ୍ଷ୍ୟ କରି ତହିଁ । ଗୁରୁ ସନ୍ତୋଷ ଭାବ ବହି ॥
ଶ୍ରୀମତ୍ତ ବଳରାମ ଦାସ । ଦୀକ୍ଷା ଦିହଲେକ ବିଶେଷ ॥

(ଜ:ଚ:, ପୃ—୩୧,୩୨)

ଶ୍ରୀଚୈତନ୍ୟଙ୍କର ଉଦାରଭାବ, ସହୃଦୟତା, ଶ୍ରଦ୍ଧା, ସମ୍ମାନରେ ଅଭିଭୂତ ହୋଇ ଜଗନ୍ନାଥ ଦାସ ତାଙ୍କର ଉପଦେଶ ଅନୁସାରେ ମତ୍ତ ବଳରାମ ଦାସଙ୍କ ଠାରୁ 'ହରେରାମାଦି' ମହାମନ୍ତ୍ର ଦୀକ୍ଷା ଗ୍ରହଣ କଲେ । ଦୀକ୍ଷାଲାଭ ପରେ ପ୍ରଭୁ ଶ୍ରୀଗୌରାଙ୍ଗଙ୍କ ପ୍ରତି ଜଗନ୍ନାଥ ଦାସଙ୍କର ଭକ୍ତି କ୍ରମଶଃ ବୃଦ୍ଧି ପାଇବାରେ ଲାଗିଲା । ପ୍ରତିଦିନ ନିତ୍ୟକର୍ମ ସାରିବା ପରେ ସେ ଦେବାର୍ଚ୍ଚନ ଓ ମହାମନ୍ତ୍ର ଜପ ଶେଷ କରି ଶ୍ରୀଚୈତନ୍ୟଙ୍କ ସେବା ପାଇଁ ଉପସ୍ଥିତ ହେଉଥିଲେ । ଦିନେ ଜଗନ୍ନାଥ ଦାସଙ୍କ ଭକ୍ତିଭାବ ଓ ବୈଷ୍ଣବ ଜନୋଚିତ ନିରଭିମାନତାରେ ସନ୍ତୁଷ୍ଟ ହୋଇ ତାଙ୍କର ପୂର୍ବ ସିଦ୍ଧ ଅଙ୍ଗ ବିଷୟରେ ଜାଣିବା ପାଇଁ ଶ୍ରୀଚୈତନ୍ୟ ଇଚ୍ଛା ପ୍ରକାଶ କଲେ । ଜଗନ୍ନାଥ ଦାସ କହିଲେ—"ପ୍ରଭୋ ! ବୈକୁଣ୍ଠପୁରରେ ନିତ୍ୟରାସଲୀଳା ମଣ୍ଡଳସ୍ଥ ଶ୍ରୀରାଧା ଦାମୋଦର ପରସ୍ପରକୁ ଚାହିଁ ଆନନ୍ଦରେ ହସିଉଠିଲେ । ଶ୍ରୀକୃଷ୍ଣଙ୍କର ସେହି ଅପୂର୍ବ ହାସ୍ୟରୁ ଆପଣ ମର୍ତ୍ତ୍ୟମଣ୍ଡଳରେ ଅବତୀର୍ଣ୍ଣ ହେଲେ ଏବଂ ଶ୍ରୀରାଧାଙ୍କ ହାସ୍ୟରୁ ମୁଁ ଜନ୍ମ ଗ୍ରହଣ କଲି । କଳିଯୁଗରେ ହରିନାମ କୀର୍ତ୍ତନ କରି ଅଚେତନମାନଙ୍କୁ ସଚେତନ କରିବା ପାଇଁ ଆପଣ ଅବତୀର୍ଣ୍ଣ ହୋଇଥିବାରୁ ଚୈତନ୍ୟ ନାମରେ ଅଭିହିତ ହୋଇଛନ୍ତି ।"

ଜଗନ୍ନାଥ ଦାସଙ୍କଠାରୁ ତାଙ୍କର ଓ ନିଜର ପୂର୍ବ ସିଦ୍ଧ ଅଙ୍ଗ ପ୍ରସଙ୍ଗ ଶୁଣି ଶ୍ରୀଚୈତନ୍ୟ ଅତୀବ ଆନନ୍ଦିତ ହେଲେ ଏବଂ ସଙ୍ଗେ ସଙ୍ଗେ ନିଜର ଉତ୍ତରୀୟ ବସ୍ତ୍ର ବାହାର କରି ଜଗନ୍ନାଥ ଦାସଙ୍କ ମୁଣ୍ଡରେ ବାନ୍ଧିଦେଲେ । ଶ୍ରୀଚୈତନ୍ୟ କହିଲେ— 'ଭକ୍ତିପୂର୍ଣ୍ଣ ଦାସେ ! ବେଦବେଦାନ୍ତରେ ଯାହା ନାହିଁ ଓ ଯାହା ଯୋଗୀମାନଙ୍କର ଅଗମ୍ୟ ସେହି ଦୁର୍ଲଭ ଚରିତ ତୁମେ ଆଜି ମୋ' ଆଗରେ କହିଲ । ତୁମେ ଅତି

ବଡ଼କଥା କହିଲ । ତେଣୁ ଆଜଠାରୁ ତୁମେ 'ଅତିବଡ଼' ହେଲ ।' କବି ଦିବାକର ଏ ବିଷୟରେ ସୂଚନା ଦେବାକୁ ଯାଇ କହିଛନ୍ତି—

ଆପଣା ଶ୍ରୀଅଙ୍ଗ ପାଟ୍ଟେଡ଼ି । ପଞ୍ଚ ବସନ ଅଙ୍ଗୁ କାଢ଼ି ॥
ଦାସଙ୍କ ଶିରେ ବାନ୍ଧିଦେଲେ । ଅତିବଡ଼ ବୋଲି ବୋଇଲେ ॥

× × ×

ଅତିବଡ଼ କଥା କହିଲ । ତେଣୁ ଅତିବଡ଼ ହୋଇଲ ॥
ଅତି ଆନନ୍ଦେ ସ୍ନେହ ଚିତ୍ତେ । ଡାକନ୍ତି ଅତିବଡ଼ ନିତ୍ୟେ ॥
ଶ୍ରୀ ଅତିବଡ଼ ଜଗନ୍ନାଥ । ସ୍ୱାମୀଙ୍କି ବୋଲନ୍ତି ଜଗତ ॥
ମହାପ୍ରଭୁଙ୍କ ମୁଖୁଁ ଶୁଣି । ସର୍ବେ ବୋଲନ୍ତି ଏହି ବାଣୀ ॥

(ଜ:ଚ:, ପୃ—୩୨)

ଜଗନ୍ନାଥଙ୍କ ସ୍ୱରଚିତ ବୋଲି କୁହାଯାଉଥିବା 'ପରତତ୍ତ୍ୱବୋଧିନୀ' ନାମକ ଅନ୍ୟ ଏକ ଗ୍ରନ୍ଥରେ ମଧ୍ୟ ଉକ୍ତ ଘଟଣାର ସମର୍ଥନସୂଚକ ଉଲ୍ଲେଖ ଥିବାର ଦେଖାଯାଏ—

ସନ୍ନ୍ୟାସୀ ଯୋଗରେ ଜାଣିଲେ । ସିଦ୍ଧାନ୍ତ ପରତତ୍ତ୍ୱ ତୁଲେ ॥
ମୋହର କନ୍ଧେ ଦେଇ କର । ଆଘ୍ରାଣ କଲେ ମୋର ଶିର ॥
ମୁଣ୍ଡରୁ ବସନ ଉତାରି । ମୋହରେ ବଢ଼ାଇଲେ ଶିରି ॥
କହିଲ ଅତିବଡ଼ ଭବ । ସେ ନାମେ କଲି ତୋର ଠାବ ॥

(ମ:ଜ:, ପୃ—୨୮)

ଉପଯୁକ୍ତ ଘଟଣା ୧୫୧୮ ଖ୍ରୀଷ୍ଟାବ୍ଦରେ ଘଟିଥିବା ବୈଷ୍ଣବ ଲୀଳାମୃତର ପଞ୍ଚମ ଅଧ୍ୟାୟାନ୍ତର୍ଗତ ନିମ୍ନୋଦ୍ଧୃତ ବର୍ଣ୍ଣନାରୁ ସୂଚିତ ହୁଏ—

ଏଥୁ ଅନ୍ତରେ ଶୁଣ ରସେ । ରାଜାର ଅଙ୍କ ସପ୍ତବଂଶେ ॥
ଦିନେ ବସିଣ ଏକାନ୍ତରେ । ପ୍ରଭୁ ସ୍ୱାମୀକଇ ପଶ୍ଚରେ ॥
ସିଦ୍ଧାଙ୍ଗ ବାର୍ତ୍ତା ମୋତେ କହ । ତୋ ତହୁଁ ଭିନ୍ନ ମାତ୍ର ଦେହ ॥
ସ୍ୱାମୀ ବୋଇଲେ ଭଲ ହେଲା । ପ୍ରଭୁ ବୋଲଇ କହ ଭଲ ।

× × ×

ପ୍ରଭୁ ସେ ପ୍ରେମେ ଆଲିଙ୍ଗିଲା । ଏ ଅତି ବଡ଼ଟି ବୋଇଲା ॥
ତୋହ ମୋହର ଏକ ପ୍ରାଣ । ଦେହଟି ମାତ୍ରକ ସେ ଭିନ୍ନ ॥
ଅତିବଡ଼ ଏ କଥା କହୁ । ଅତିବଡ଼ ହେଲୁ ଆଜହୁଁ ॥

କାନ୍ଥରୁ ଉଈଶ୍ୱ କାଢ଼ିଲ । ସ୍ୱାମୀ ମସ୍ତକେ ଭିଡ଼ିଦେଲ ॥
ବୋଲେ ଏ ଅତିବଡ଼ ପଣ । ସ୍ୱାମୀ ରୂ ମୋହର ଶରଣ ॥
ପ୍ରଭୁ ବୋଇଲ ସ୍ୱରୂପକୁ । ଏ ଅତିବଡ଼ ବୋଲିବାକୁ ॥
ଆଜ ଯେତେକ ଭକ୍ତମେଳେ । ପ୍ରଭୁ ଅତିବଡ଼ ପ୍ରସ୍ତରେ ॥

(ବୈ:ଲୀ:, ପୃ—୮,୧୯)

ଭକ୍ତ ଜଗନ୍ନାଥ ଦାସଙ୍କ ଭକ୍ତିପୂର୍ଣ୍ଣ ଓ ଅତିବଡ଼ ବୋଲି କହି ଶ୍ରଦ୍ଧା ଓ ସମ୍ମାନ ଜଣାଇବାରୁ ଶ୍ରୀଚୈତନ୍ୟଙ୍କ ଅନୁଗାମୀ କେତେକ ବୈଷ୍ଣବ ଅତ୍ୟନ୍ତ ମର୍ମାହତ ହୋଇ ପ୍ରଭୁଙ୍କୁ କହିଲେ—

ଏପରି ପ୍ରତାପନ ପୁଣି । ଦାସଙ୍କ ଗଉରବ ବାଣୀ ॥
ବୈଷ୍ଣବେ ବିମୁଖ ହୋଇଲେ । ମହାପ୍ରଭୁଙ୍କୁ ଜଣାଇଲେ ॥
ଉତ୍କଳ ବିପ୍ରେ ସଙ୍ଗ ହେଲ । ତାହାଙ୍କୁ ଅତିବଡ଼ ବୋଲ ॥
ଆମ୍ଭେ ବୈଷ୍ଣବେ ହେଲୁ ସାନ । ହେ ପ୍ରଭୁ ଏ ନୁହେଁ ବିଧାନ ॥

(ଜ:ଚ:, ପୃ—୩୯)

ମହାପ୍ରଭୁ ଶ୍ରୀଚୈତନ୍ୟ ପୁରୁଷୋତ୍ତମ କ୍ଷେତ୍ରର ମହତ୍ତ୍ୱ ଓ ଭକ୍ତ ଜଗନ୍ନାଥ ଦାସଙ୍କ ଅସାଧାରଣ ଜ୍ଞାନ ଓ ଭକ୍ତି ବିଷୟରେ ସେମାନଙ୍କୁ ଯାହା ବୁଝାଇଥିଲେ ତାହା 'ଶ୍ରୀଜଗନ୍ନାଥ ଚରିତାମୃତ'ରେ ନିମ୍ନମତେ ବର୍ଣ୍ଣିତ ହୋଇଛି—

ଏ କ୍ଷେତ୍ରେ ପତଙ୍ଗ ଯେ କୀଟ । ବାଲୁକା ପାଷାଣ ବା କାଷ୍ଠ ॥
ଅନ୍ୟ ଦେଶକୁ ଏ ଦେବତା । ମନୁଷ୍ୟ ବଡ଼ ନୁହେଁ କଥା ॥
ଏ ହେତୁ ଅତିବଡ଼ ବାଣୀ । ଦାସଙ୍କୁ ଚିତ୍ର ନୁହେ ପୁଣି ॥

( ପୃ-୩୯ )

ଏ କ୍ଷେତ୍ରବରେ ଯେତେଜନ୍ତୁ । ପଶୁ ପକ୍ଷୀ ନର ଯୁବତୀ ॥
ନ ଜାଣି ଭକତି ସାଧନ । ଲଭନ୍ତି ଶ୍ରୀକୃଷ୍ଣ ଚରଣ ॥

( ପୃ-୪୦ )

× × ×

ମହାଜ୍ଞାନୀ ଏ ଦ୍ୱିଜବର । ଭକତ ଅଟନ୍ତି ଆବର ॥
ଏହାଙ୍କ ସଙ୍ଗତେ ରହିବ । ଏ କ୍ଷେତ୍ରବର ନ ଛାଡ଼ିବ

(ପୃ — ୪୧)

× × ×

ଶ୍ରୀରାଧା କୃଷ୍ଣତତ୍ତ୍ୱ ଦେହ । ଶ୍ରୀଜଗନ୍ନାଥ ନାମ ବହ ॥

ଭକ୍ତ ବତ୍ସଳ ଜଗନ୍ନାଥ । ଦର୍ଶନେ କରନ୍ତି କୃତାର୍ଥ ॥
ମୁଁ ଅଛୁ ଏ ଅଙ୍ଗ ଆଶ୍ରିତେ । ଛାଡ଼ିବ ନାହିଁ କଦାଚିତେ ॥

(ପୃ—୫୧)

କିନ୍ତୁ ଗୌଡ଼ୀୟ ବୈଷ୍ଣବମାନଙ୍କ ମନ ବୁଝିଲା ନାହିଁ । ସେମାନଙ୍କ ମଧ୍ୟରୁ ଜଗନ୍ନାଥ ଦାସଙ୍କ ଭକ୍ତିର ପରାକାଷ୍ଠା ହୃଦୟଙ୍ଗମ କରିଥିବା ଭକ୍ତ ହରିଦାସ, ଜଗଦାନନ୍ଦ, ଚକ୍ରବର୍ତ୍ତୀ, ମୁକୁନ୍ଦ ଦତ୍ତ, ଦାମୋଦର ଚକ୍ରବର୍ତ୍ତୀ, ନିତ୍ୟାନନ୍ଦ, ଅଦ୍ୱୈତ ଓ ରୂପ, ସନାତନାଦି ଷଡ଼୍ ଗୋସ୍ୱାମୀ ପୁରୀରେ ରହିଲେ ଏବଂ ଅନ୍ୟ ଗୌଡ଼ୀୟ ବୈଷ୍ଣବମାନେ ନୀଳାଚଳ ତ୍ୟାଗକରି ଗୌଡ଼ ପ୍ରତ୍ୟାବର୍ତ୍ତନ ପଥେ ଯାଜନଗରରେ (ଯାଜପୁର) ଯାଇ ରହିଲେ । ସେମାନଙ୍କୁ ଫେରାଇ ଆଣିବା ପାଇଁ ଶ୍ରୀଚୈତନ୍ୟ ପ୍ରଥମେ ଭକ୍ତ ହରିଦାସଙ୍କୁ ପଠାଇଲେ । ହରିଦାସ ଫେରିଆସି ଜଣାଇଲେ ଯେ ପ୍ରଭୁ ନିଜେ ଗଲେ ସେମାନେ ଶ୍ରୀକ୍ଷେତ୍ରକୁ ଆସିବେ ବୋଲି କହିଲେ । ଶ୍ରୀଚୈତନ୍ୟ ଆନନ୍ଦିତ ହୋଇ ଜଗନ୍ନାଥ ଦାସ ଓ ଷଡ଼ଗୋସ୍ୱାମୀଙ୍କ ସହିତ ଯାଜପୁର ଗଲେ ଏବଂ ସେଠାରେ ଛଅଦିନ ରହିଲେ । କିନ୍ତୁ ସପ୍ତମ ଦିନ ଶ୍ରୀଚୈତନ୍ୟ ଜଗନ୍ନାଥ ଦାସଙ୍କୁ ଅତିବଡ଼ ଦାସ ବୋଲି ପୁଣି ସମ୍ବୋଧନ କରି ଶ୍ରୀକ୍ଷେତ୍ର ପ୍ରତ୍ୟାବର୍ତ୍ତନ ପାଇଁ ପ୍ରସ୍ତୁତ ହେବାକୁ କହିବାରୁ ଗୌଡ଼ୀୟ ବୈଷ୍ଣବମାନେ କ୍ଷୁବ୍ଧ ହୋଇ ଯାଜପୁର ତ୍ୟାଗ କରି ବରିବିଷ୍ଣୁପୁରରେ ଯାଇରହିଲେ । ଶ୍ରୀଚୈତନ୍ୟ, ଅତିବଡ଼ ଦାସ ଓ ଆଶ୍ରିତ ଭକ୍ତମାନଙ୍କ ସହିତ ପୁରୁଷୋତ୍ତମ କ୍ଷେତ୍ରକୁ ଫେରିଆସିଲେ ।

ବରିବିଷ୍ଣୁପୁରରେ କିଛିଦିନ ରହିବା ପରେ ବୈଷ୍ଣବମାନେ ବିଚାର କଲେ ଯେ ଶ୍ରୀଚୈତନ୍ୟ ପୁରୀରେ ଥିବା ପର୍ଯ୍ୟନ୍ତ ଅତିବଡ଼ ଜଗନ୍ନାଥ ଦାସଙ୍କ ପ୍ରଭାବରୁ ମୁକ୍ତ ହୋଇପାରିବେ ନାହିଁ । ତେଣୁ ତାଙ୍କୁ ପୁରୁଷୋତ୍ତମରୁ ଅନ୍ୟତ୍ର ନେଇଯିବା ଉଚିତ ହେବ । ଏହା ଭାବି ସେମାନେ ଚିଠି ଖଣ୍ଡିଏ ଲେଖି ମାଧୋଇ ଦାସଙ୍କ ହାତରେ ଶ୍ରୀଚୈତନ୍ୟଙ୍କ ପାଖକୁ ପଠାଇଲେ । ସେଥିରେ ଲେଖା ଥିଲା—

ହେ ଦେବ ଦେବ ଆସ ତୁମ୍ଭେ । ତୀର୍ଥ ଦର୍ଶନେ ଯିବା ଏବେ ॥
କି ଅଛୁ ତହିଁ ତୁମ୍ଭେ ଅଛ । ଭକ୍ତବାନ୍ଧବ ବୋଲାଉଛ ॥

(ଜ:ଚ:, ପୃ—୪୮)

ପତ୍ରଟି ପଢ଼ି ଶ୍ରୀଚୈତନ୍ୟ ପ୍ରତ୍ୟୁତ୍ତର ରୂପେ ଯେଉଁ ଆଜ୍ଞା ପତ୍ରିକା ମାଧୋଇ ଦାସଙ୍କ ହାତରେ ପଠାଇଥିଲେ ସେଥିରେ ସେ ଲେଖିଥିଲେ—

ମଧୁପୁର ଗୋପନଗର । ବୃନ୍ଦାବନ ଦ୍ୱାରକାପୁର ॥
ଗଙ୍ଗାଦ୍ୱାର ଗଙ୍ଗାସଙ୍ଗମ । ଅଯୋଧ୍ୟା ବଦରିକାଶ୍ରମ ॥
କାଶୀପୁରୀ ତ ଯାଇଅଛୁ । ଏହା ସମସ୍ତ ମୁଁ ଦେଖିଛୁ ॥
ଛାଡ଼ି ସକଳ କ୍ଷେତ୍ରତୀର୍ଥ । ନୀଳକନ୍ଦରେ ଜଗନ୍ନାଥ ॥
ମୂର୍ତ୍ତିରେ ଜଗତକୁ ମୋହି । ତେଣୁ ଆଶ୍ରେ କରିଛୁ ମୁହିଁ ॥
ଏ ଅଙ୍ଗ ଥିବା ପରିଯନ୍ତେ । ଛାଡ଼ିବ ନାହିଁ କଦାଚିତେ ॥
ପୃଥ୍ୱୀରେ ଛନ୍ତି ଯେତେ ତୀର୍ଥ । କ୍ଷେତ୍ର ଆୟତନ ସହିତ ॥
ସେ ସବୁ ଏକ ରୁଣ୍ଡ ହୋଇ । ପୁରୁଷୋତ୍ତମେ ଛନ୍ତି ରହି ॥
ମୁକ୍ତି କେବଳ ଗଙ୍ଗା ଜଳେ । ବାରଣସୀରେ ଜଳେ ସ୍ଥଳେ ॥
ଜଳେ ସ୍ଥଳେ ବା ଅନ୍ତରୀକ୍ଷେ । ମୁକତି ଏ କ୍ଷେତ୍ରେ ପ୍ରତ୍ୟକ୍ଷେ ॥

× × ×

ଏବେ କଳିଯୁଗରେ ମୁହିଁ । ଜଗନ୍ନାଥ ଆଶ୍ରା କଲଈଁ ॥
ତୁମ୍ଭେ ନ ଛାଡ଼ ଏହି ପୁର । ଭଜ ଜଗନ୍ନାଥ ପୟର ॥
କ୍ଷେତ୍ରେ ତୀର୍ଥେ ମୋ କାର୍ଯ୍ୟ ନାହିଁ । ଏ କ୍ଷେତ୍ର ନ ଛାଡ଼ିବ ମୁହିଁ ॥
(ଜ:ଚ:, ପୃ—୪୯-୫୭)

ସମ୍ଭବତଃ ଶ୍ରୀଚୈତନ୍ୟ ଆଜୀବନ ଶ୍ରୀକ୍ଷେତ୍ରରେ ଅବସ୍ଥାନ କରିବାର ଏହାହିଁ ଥିଲା ମୁଖ୍ୟ କାରଣ । ଶ୍ରୀଚୈତନ୍ୟଙ୍କ ସିଦ୍ଧାନ୍ତ ଓ ଦୃଢ଼ତାରେ ହତାଶ ହୋଇ ଗୌଡ଼ୀୟ ବୈଷ୍ଣବମାନେ ବୃନ୍ଦାବନ ଚାଲିଗଲେ ।

କବି ଦିବାକର ଦାସଙ୍କ 'ଶ୍ରୀଜଗନ୍ନାଥ ଚରିତାମୃତ'ର ବର୍ଣ୍ଣନା ଅନୁସାରେ (ପୃଷ୍ଠା-୫୧) ପୁରୁଷୋତ୍ତମ ତ୍ୟାଗ କରି ବୃନ୍ଦାବନବାସୀ ହେବା ସଙ୍ଗେ ସଙ୍ଗେ ଗୌଡ଼ୀୟ ବୈଷ୍ଣବଗଣ ବୈଧ ପ୍ରେମଭକ୍ତି ପରକ କର୍ମ ଓ ଆଚରଣ ପରିବର୍ତ୍ତେ ରାମ ମାର୍ଗରେ କୃଷ୍ଣ ଭଜନ କରିବାକୁ ଲାଗିଲେ । ନିର୍ମାଲ୍ୟ ସେବା ଛାଡ଼ି ବ୍ରଜଧୂଳି ଆସ୍ୱାଦନ କଲେ । ସମୁଦ୍ରସ୍ନାନ ପରିବର୍ତ୍ତେ ଯମୁନା ସ୍ନାନକୁ ଶ୍ରେୟସ୍କର ମନେ-କଲେ । ହରି ମନ୍ଦିର ଚିତା, ଶଙ୍ଖଚକ୍ର ଚିହ୍ନ ଓ ଜଗନ୍ନାଥ ମୂର୍ତ୍ତି ଛାଡ଼ି ଯଥାକ୍ରମେ କଳି ତିଳକ, ନାମଚିହ୍ନ ଓ ମଦନମୋହନଙ୍କଠାରେ ପ୍ରୀତି ବଢ଼ାଇଲେ । କଳ୍ପ-ବଟର ଛାୟା ଓ ଶ୍ରୀକ୍ଷେତ୍ର ପରିକ୍ରମା ପରିବର୍ତ୍ତେ ସେମାନେ କଦମ୍ବ ମୂଳର ଆଶ୍ରୟ ଓ ଗୋବର୍ଦ୍ଧନ ଗିରି ଭ୍ରମଣ କରିବାରେ ଲାଗିଲେ । ଏହାହିଁ ଉତ୍କଳୀୟ ଓ ଗୌଡ଼ୀୟ ବୈଷ୍ଣବ ସମ୍ପ୍ରଦାୟ ମଧ୍ୟରେ ଆଚରଣଗତ ପାର୍ଥକ୍ୟ ଥିଲା । ଗୌଡ଼ୀୟ ବୈଷ୍ଣବ ଧର୍ମ ରାଗାନୁଗାପ୍ରେମ ଆଧାରିତ ଓ ଉତ୍କଳୀୟ ବୈଷ୍ଣବ ଧର୍ମ ଜ୍ଞାନ ଓ ଯୋଗ ସମନ୍ୱିତ ପ୍ରେମଭକ୍ତି ଉପରେ ପ୍ରତିଷ୍ଠିତ । ଏହାର ମୂଳଭିତ୍ତି ଥିଲା ଶ୍ରୀଧର ସ୍ୱାମୀଙ୍କ ପ୍ରଣୀତ ଶ୍ରୀମଦ୍ ଭାଗବତର 'ଭାବାର୍ଥ ଦୀପିକା' ଟୀକା, ଯାହାକୁ

ଶ୍ରୀଚୈତନ୍ୟ ସର୍ବଶ୍ରେଷ୍ଠ ପ୍ରାମାଣିକ ବ୍ୟାଖ୍ୟା ରୂପେ ଗ୍ରହଣ କରିଥିଲେ । ସେହି ଟୀକା ଆଧାରରେ ରଚିତ ଓଡ଼ିଆ ଭାଗବତ ଓ ଭାଗବତକାର ପରମ ଭାଗବତ ଜଗନ୍ନାଥ ଦାସଙ୍କୁ 'ଅତିବଡ଼' ବୋଲି ସ୍ୱୀକାର କରିବାକୁ ଗୌଡ଼ୀୟ ବୈଷ୍ଣବମାନେ ଯେ କୁଣ୍ଠିତ ହୋଇଥିଲେ ସେଥିରେ ସନ୍ଦେହର ଅବକାଶ ନାହିଁ । ଏ ପ୍ରସଙ୍ଗରେ ସୂଚନା ଦେବାକୁ ଯାଇ ଦିବାକର ଦାସ କହିଛନ୍ତି—

ଖଳ ଲୋକଙ୍କ ଡରେ ମୁହିଁ । ଗ୍ରନ୍ଥରୁ ଅଳପ ଲେଖଇ ॥
କରନ୍ତି ବିଶେଷ ବର୍ଣ୍ଣନ । ଗ୍ରନ୍ଥେ ରହିଲା ଭାବମାନ ॥

( ଜ:ଚ:, ପୃ—୩୯ )

ଉଦ୍ଧୃତ ପଙ୍କ୍ତିଦ୍ୱୟ ମୁଦ୍ରିତ ପୁସ୍ତକରେ ନାହିଁ । କେତେକ ଆଲୋଚକ ଏହା ଶ୍ରୀଜଗନ୍ନାଥ ଚରିତାମୃତର ତୃତୀୟ ଅଧ୍ୟାୟରେ ଥିବାର ଉଲ୍ଲେଖ କରିଥିଲେ ମଧ୍ୟ ପ୍ରାଚୀନ ତାଳପତ୍ର ପୋଥିଗୁଡ଼ିକରେ ଏହି ପଙ୍କ୍ତି ଦୁଇଟି ପଞ୍ଚମ ଅଧ୍ୟାୟ ଆରମ୍ଭରେ ଥିବାର ଦେଖାଯାଏ । କିନ୍ତୁ ବଙ୍ଗୀୟ ଆଲୋଚକମାନେ ଓ ଗୌଡ଼ୀୟ-ପନ୍ଥୀ ଓଡ଼ିଆ ଲେଖକମାନେ ଉପଯୁକ୍ତ ଘଟଣାବଳୀକୁ ସତ୍ୟ ବୋଲି ସ୍ୱୀକାର କରିବା ପାଇଁ କୁଣ୍ଠିତ ହୋଇଛନ୍ତି । ଏ ପ୍ରସଙ୍ଗରେ ବାବାଜି ବୈଷ୍ଣବ ଚରଣ ଦାସଙ୍କ ଲିଖିତ 'ଉତ୍କଳେ ଶ୍ରୀକୃଷ୍ଣ ଚୈତନ୍ୟ' ଶୀର୍ଷକ ପୁସ୍ତକରୁ (ପୃ—୭୭-୭୯) କେତୋଟି ବାକ୍ୟ ଉଦ୍ଧାର କରାଯାଇପାରେ ।

"ମୁଁ ଅନ୍ୟାନ୍ୟ ପ୍ରଚଳିତ ଧର୍ମମାନ ସମ୍ୟକ୍ ଆଲୋଚନା କରି ଦେଖିନାହିଁ କିମ୍ବା ସେ ବିଷୟରେ ବିଶେଷ ତତ୍ତ୍ୱାନୁସନ୍ଧାନ କରିନାହିଁ । ଘଟଣା କ୍ରମେ ଯାହା ଯାହା ମୋ ଚକ୍ଷୁରେ ପଡ଼ିଅଛି, ତାହାକୁ ଲକ୍ଷ୍ୟକରି ମୁଁ ଏହା ଲେଖୁଅଛି । ଶ୍ରୀମାନ ଅଚ୍ୟୁତାନନ୍ଦ, ଶ୍ରୀମାନ୍ ବଳରାମ ପ୍ରଭୃତି ମହାପ୍ରଭୁଙ୍କର ପଞ୍ଚସଖା ଥିବାର ମୁଁ ଅନେକ ଉତ୍କଳବାସୀଙ୍କ ମୁଖରୁ ଶୁଣେ ଓ ସେମାନେ କହନ୍ତି ଏ ପାଞ୍ଚଜଣ ମହାପ୍ରଭୁଙ୍କ ସଖା ଥାଇ ମହାପ୍ରଭୁଙ୍କ ମତ ହିଁ ପ୍ରଚାର କରିଅଛନ୍ତି । ଶ୍ରୀମାନ୍ ଅଚ୍ୟୁତାନନ୍ଦ ପ୍ରଭୃତି ଯେରୂପ ମହାତ୍ମା ଥିବାର ଶୁଣାଯାଏ, ସେମାନେ ଯେ ମହାପୁରୁଷ ଥିଲେ ଓ ନିଜ ନିଜ ମହିମା ଅଶେଷ ରୂପେ ପ୍ରକାଶ କରିଥିଲେ ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । କିନ୍ତୁ ସେମାନଙ୍କ ପ୍ରଚାରିତ ଧର୍ମ ସମ୍ବନ୍ଧରେ 'ଶୂନ୍ୟସଂହିତା' ନାମକ ଖଣ୍ଡିଏ ଗ୍ରନ୍ଥ ମୁଁ ପାଠ କରିଥିଲି । ସେ ଗ୍ରନ୍ଥ ଉକ୍ତ ମହାଜନମାନଙ୍କ ପ୍ରକୃତ ମତ ଯେଣି ରଚିତ କିମ୍ବା ତାହାଙ୍କର ପରବର୍ତ୍ତୀ କେହି ଶିଷ୍ୟ ପ୍ରଶିଷ୍ୟ ସେ ମହାତ୍ମାମାନଙ୍କ ମତ ତ୍ୟାଗକରି ନିଜର ମତ ସେ ଗ୍ରନ୍ଥରେ ପ୍ରକାଶ କରିଅଛନ୍ତି, ତାହା ମୁଁ କହି ନପାରେ । ତେବେ ସେ ଗ୍ରନ୍ଥରୁ ଏହା ଦେଖାଯାଏ ଯେ ଗ୍ରନ୍ଥକର୍ତ୍ତା ଶ୍ରୀକୃଷ୍ଣଚୈତନ୍ୟ ମହାପ୍ରଭୁଙ୍କୁ ମୂଳ ଧରି, ଏ ପଞ୍ଚମହାତ୍ମାଙ୍କୁ

ତାହାଙ୍କର "ସଖୀଥିବାର ପ୍ରକାଶ କରିଅଛନ୍ତି ଏବଂ ଉକ୍ତ ଗ୍ରନ୍ଥର ମତ ଶ୍ରୀମାନ୍ ମହାପ୍ରଭୁ ଓ ଶ୍ରୀଲ ସନାତନ ଗୋସ୍ୱାମୀଙ୍କର ଅନୁମୋଦିତ ବୋଲି ସେଥିରେ ଲେଖାଅଛି । କିନ୍ତୁ ଉକ୍ତ ଗ୍ରନ୍ଥରେ ଭକ୍ତିର ପ୍ରାଧାନ୍ୟ ପରିତ୍ୟାଗ ପୂର୍ବକ ଯୋଗ ଓ ଜ୍ଞାନର ପ୍ରାଧାନ୍ୟ ଖ୍ୟାପିତ ହୋଇଅଛି । ସ୍ୱୟଂ ମହାପ୍ରଭୁ କିମ୍ବା ତାହାଙ୍କ ପ୍ରିୟାତିପ୍ରିୟ ବୈଷ୍ଣବଶାସ୍ତ୍ର ପ୍ରଣେତା ଶ୍ରୀମଦ୍ ଭାଗବତ ତୋଷଣୀ ନାମକ ଟୀକାର ରଚୟିତା ଶ୍ରୀଲ ସନାତନ ଗୋସ୍ୱାମୀ ଯେ ଉକ୍ତ ମତ ପୋଷଣ କରିଥିଲେ, ଏହା କଦାପି ସମ୍ଭବ ନୁହେଁ । ମୁଁ ଅନୁମାନ କରେଁ ମହାପ୍ରଭୁଙ୍କର ତେତେବେଳେ ପ୍ରବଳ ଭାବରେ ପ୍ରସିଦ୍ଧ ହୋଇଥିବାରୁ ମହାପ୍ରଭୁଙ୍କୁ ନିଜ ଗ୍ରନ୍ଥକୁ ଟାଣି ନ ନେଲେ ଲୋକେ ତାହା ଆଦର କରିବେ ନାହିଁ । ଏହି ହେତୁ ସେ ଗ୍ରନ୍ଥର ରଚୟିତା କୌଶଳ କ୍ରମେ ମହାପ୍ରଭୁ ଓ ସନାତନ ଗୋସ୍ୱାମୀଙ୍କୁ ସେ ଗ୍ରନ୍ଥରେ ଅବତାରଣା କରିଅଛନ୍ତି ।

ଶ୍ରୀଜଗନ୍ନାଥ ଚରିତାମୃତ ନାମକ ଏକ ନୂତନ ପ୍ରକାଶିତ ଗ୍ରନ୍ଥରେ ଦେଖିଲି ଶ୍ରୀକୃଷ୍ଣଚୈତନ୍ୟ ମହାପ୍ରଭୁ ସମଦର୍ଶୀ ଓ ନିରପେକ୍ଷ, "କିନ୍ତୁ ତାହାଙ୍କର ଅତିପ୍ରିୟ ବଙ୍ଗଦେଶୀ ପାର୍ଷଦମାନେ ଈର୍ଷାପରବଶ ହୋଇ ଉକ୍ତ ଗ୍ରନ୍ଥର ନାୟକ ଶ୍ରୀଜଗନ୍ନାଥ ଦାସଙ୍କୁ ପରିତ୍ୟାଗ କରିବାକୁ ମହାପ୍ରଭୁଙ୍କୁ ଅନୁରୋଧ କଲେ । ମହାପ୍ରଭୁ ସେଥିରେ ସମ୍ମତ ନ ହେବାରୁ ବଙ୍ଗବାସୀ ଭକ୍ତମାନେ ମହାପ୍ରଭୁଙ୍କୁ ତ୍ୟାଗ କରି ନିଜ ଦେଶକୁ ଚାଲିଗଲେ । ମହାପ୍ରଭୁଙ୍କର କି ଉତ୍କଳ, କି ବଙ୍ଗ, କି କଳିଙ୍ଗ ସମସ୍ତ ପ୍ରଦେଶର ପ୍ରିୟ ପାର୍ଷଦମାନେ ତାହାଙ୍କର ନିତ୍ୟ ପାର୍ଷଦ ଓ ନିତ୍ୟଧାମରୁ ଆସିଥିଲେ । ସେମାନଙ୍କ ମନରେ ଓଡ଼ିଆ ଓ ବଙ୍ଗାଳୀ ଏ ଭେଦଜ୍ଞାନ ଆଦୌ ନଥିଲି । ସେମାନେ ଯବନମାନଙ୍କୁ ସମଚକ୍ଷୁରେ ଦେଖୁଥିଲେ । ସେମାନଙ୍କଠାରେ ଏଭଳି ଈର୍ଷାଭାବ ଯତ୍‌ସାମାନ୍ୟରେ ମଧ୍ୟ ରହିବା ଅସମ୍ଭବ । ଏ ଈର୍ଷ୍ୟାଦ ଏହି ଜଡ଼ରାଜ୍ୟର ବିଷୟ ତାହା ଚିନ୍ମୟ ରାଜ୍ୟର ପାର୍ଷଦମାନଙ୍କୁ ସ୍ପର୍ଶ କରିବ କାହିଁକି ?"

କଟକ ଦତ୍ତପ୍ରେସରୁ ଏହାର ପ୍ରଥମ ସଂସ୍କରଣ ୧୯୨୬ ରେ ପ୍ରକାଶ ପାଇଥିଲି । ବାବାଜୀ ମହାଶୟ ଶ୍ରୀଚୈତନ୍ୟଙ୍କ ଅତି ନିକଟବର୍ତ୍ତୀ ଥିବା ପଞ୍ଚସଖା ଓ ଅନ୍ୟାନ୍ୟ ଉତ୍କଳୀୟ ବୈଷ୍ଣବମାନଙ୍କ ନାମ ବଙ୍ଗୀୟ ଚରିତଗ୍ରନ୍ଥଗୁଡ଼ିକରେ କାହିଁକି ଉଲ୍ଲେଖ କରାଯାଇ ନାହିଁ, ଗୌଡ଼ୀୟ ବୈଷ୍ଣବମାନେ ପୁରୁଷୋତ୍ତମ ତ୍ୟାଗ କରି କାହିଁକି ବୃନ୍ଦାବନରେ ଶ୍ରୀକୃଷ୍ଣ ଲୀଳାକେନ୍ଦ୍ର ପ୍ରତିଷ୍ଠା କଲେ ଏବଂ ଶ୍ରୀଚୈତନ୍ୟ ତାଙ୍କର ସମସ୍ତ ସନ୍ନ୍ୟାସ ଜୀବନ କାହିଁକି ପୁରୁଷୋତ୍ତମ କ୍ଷେତ୍ରରେ ଅତିବାହିତ କଲେ ଓ କିପରି ଅତିବାହିତ କଲେ ସେ ପ୍ରସଙ୍ଗରେ କିଛି ସୂଚନା ଦେଇନାହାନ୍ତି । ତେଣୁ ବାବାଜୀ ମହାଶୟଙ୍କ ମନ୍ତବ୍ୟ କେତେଦୂର ସତ୍ୟର

ନିକଟବର୍ତ୍ତୀ ହୋଇଛି, ତାହା ସେ କେନ୍ଦ୍ର ବିଗ୍ରହ କରିପାରିବେ । ବାବାଜୀ ମହାଶୟ ତାଙ୍କର ଉକ୍ତ ପୁସ୍ତକ ପାଇଁ ସମ୍ଭବତଃ ସୁନ୍ଦରାନନ୍ଦ ବିଦ୍ୟାବିନୋଦଙ୍କ ପ୍ରଣୀତ 'ଶ୍ରୀକ୍ଷେତ୍ର' ଶୀର୍ଷକ ପୁସ୍ତକରୁ ତଥ୍ୟ ଆହରଣ କରିଥିବାର ମନେହୁଏ ।

ମହାପ୍ରଭୁ ଶ୍ରୀଚୈତନ୍ୟ ଫାଲ୍‌ଗୁନ ପୂର୍ଣ୍ଣିମା ବୁଧବାର (୧.୩.୧୪୮୫) ଦିନ ଆସାମର ଶ୍ରୀହଟ୍ଟରେ ଜନ୍ମଗ୍ରହଣ କରିଥିଲେ ଏବଂ ପରେ ପିତାମାତାଙ୍କ ସହିତ ନବଦ୍ୱୀପରେ ସ୍ଥାୟୀଭାବେ ରହୁଥିଲେ । ସେ ମାତ୍ର ୨୪ ବର୍ଷ ବୟସରେ ସନ୍ନ୍ୟାସ ଗ୍ରହଣ କରିବା ପରେ ପୁରୀ ଆସିଲେ ଏବଂ ତୀର୍ଥଦର୍ଶନରୁ ଫେରି ଇହଲୀଳା ସାଙ୍ଗ କରିବା ପର୍ଯ୍ୟନ୍ତ (୨୭.୪.୧୫୩୩) ଶ୍ରୀକ୍ଷେତ୍ରରେ ଦୀର୍ଘ ୧୮ ବର୍ଷର ସନ୍ନ୍ୟାସ ଜୀବନ ଅତିବାହିତ କରିଥିଲେ । ବୈଶାଖ ମାସ ଅକ୍ଷୟ ତୃତୀୟା ଦିନ ସକାଳେ ଶ୍ରୀଚୈତନ୍ୟଙ୍କ ଦେହାବସାନ ଘଟିଥିଲା । କିନ୍ତୁ ଏହି ଘଟଣା ପରବର୍ତ୍ତୀ ରଥଯାତ୍ରା ଅବସରରେ ଘୋଷିତ ହୋଇଥିଲା । ତେଣୁ ବଙ୍ଗୀୟ ଚରିତ ଗ୍ରନ୍ଥରେ ଚୈତନ୍ୟଙ୍କ ତିରୋଧାନ ଦିବସ ୨୮.୭.୧୫୩୩ ଅଥବା ୧୩.୭.୧୫୩୩ ବୋଲି ଉଲ୍ଲେଖ କରାଯାଇଛି । ଶ୍ରୀଜଗନ୍ନାଥ ଧାମର ମହତ୍ତ୍ୱ ଓ ବୈଶିଷ୍ଟ୍ୟ ତଥା ରାୟରାମାନନ୍ଦ, ଅତିବଡ଼ ଜଗନ୍ନାଥ ଦାସ ଅନ୍ୟ ଭକ୍ତବୃନ୍ଦଙ୍କ ସାନ୍ନିଧ ଓ ସଖ୍ୟ ଲାଭ ହେତୁ ସେ ନିଜର ଅନୁଗତ ବୈଷ୍ଣବମାନଙ୍କୁ ତ୍ୟାଗ କଲେ ମଧ୍ୟ ଶ୍ରୀକ୍ଷେତ୍ର ଛାଡ଼ି ଅନ୍ୟତ୍ର ଯାଇ ନ ଥିଲେ । ଗୌଡ଼ୀୟ ବୈଷ୍ଣବମାନେ ପୁରୁଷୋତ୍ତମରୁ ଯାଇ ବୃନ୍ଦାବନରେ ଶ୍ରୀକୃଷ୍ଣଧାମ ପ୍ରତିଷ୍ଠା କଲେ । ଶ୍ରୀଚୈତନ୍ୟଙ୍କ ଆମନ୍ତ୍ରଣ କ୍ରମେ ବୃନ୍ଦାବନ ଓ ଗୌଡ଼ର ନବଦ୍ୱୀପାଦି ଅନ୍ୟାନ୍ୟ ଦ୍ୱାଦଶ ପୀଠରୁ ବୈଷ୍ଣବମାନେ ରଥଯାତ୍ରା ଅବସରରେ ପୁରୀ ଆସିଲେ । ଶ୍ରୀଗୁଣ୍ଡିଚ୍ଚା ଦର୍ଶନ ପରେ ଯେତେବେଳେ ସେମାନେ ଫେରିଯିବାକୁ ବାହାରିଲେ ସେତେବେଳେ ଶ୍ରୀଚୈତନ୍ୟ ସେମାନଙ୍କୁ ପଞ୍ଚକୋଶ ବ୍ୟାପୀ ଶ୍ରୀକ୍ଷେତ୍ରର ମହିମା ସହିତ ସମସ୍ତ କ୍ଷେତ୍ର ଓ ତୀର୍ଥର ମିଳନ ସ୍ଥଳ ପୁରୁଷୋତ୍ତମ ତ୍ୟାଗ ନ କରିବା ପାଇଁ ଅନୁରୋଧ କରିଥିଲେ । କିନ୍ତୁ ବୈଷ୍ଣବଗଣ ତାଙ୍କ ଅନୁରୋଧ ରକ୍ଷା ନ କରି ବୃନ୍ଦାବନ ଫେରିଗଲେ । ଗୁଣ୍ଡିଚ୍ଚାରେ ଗୌଡ଼ୀୟ ବୈଷ୍ଣବମାନଙ୍କ ଶ୍ରୀଜଗନ୍ନାଥ ଦର୍ଶନ ଶ୍ରୀଚୈତନ୍ୟଙ୍କ ସମୟରେ ଏକ ପରମ୍ପରା ରୂପେ ଗୃହୀତ ହୋଇଥିଲା । ଫଳରେ ସେହିଦିନଠାରୁ ଗୌଡ଼ୀୟ ବୈଷ୍ଣବମାନେ ପ୍ରତିବର୍ଷ ଗୁଣ୍ଡିଚ୍ଚାରେ ଶ୍ରୀଜଗନ୍ନାଥ ଦର୍ଶନ ପାଇଁ ଶ୍ରୀକ୍ଷେତ୍ରକୁ ଆସୁଥିବାର ମନେହୁଏ ।

●

# ସାଧନା ଓ ସିଦ୍ଧି

ଶ୍ରୀକୃଷ୍ଣ-ଜଗନ୍ନାଥଙ୍କ ଭକ୍ତ ଜଗନ୍ନାଥ ଦାସ ଆଦ୍ୟ ଯୌବନରେ ନିଜର ଅସାଧାରଣ ପାଣ୍ଡିତ୍ୟ ଓ ଓଡ଼ିଆ ଭାଗବତର ସରଳ ସୁଲଳିତ ପଦାବଳୀ ରଚନା ପାଇଁ ଶ୍ରୀକ୍ଷେତ୍ରବାସୀଙ୍କ ହୃଦୟରେ ସମ୍ମାନପ୍ରଦ ସ୍ଥାନ ଲାଭ କରିଥିଲେ । ଶ୍ରୀଚୈତନ୍ୟଙ୍କ ସହିତ ସାକ୍ଷାତ୍ ଓ ବନ୍ଧୁତା ସ୍ଥାପିତ ହେବା ପରେ ତାଙ୍କର ଅନ୍ତର୍ନିହିତ ଭକ୍ତିଭାବନା କ୍ରମଶଃ ପ୍ରକାଶୋନ୍ମୁଖୀ ହେଲା । ଉଭୟ ମହାନୁଭବଙ୍କ ମଧ୍ୟରେ ଘନିଷ୍ଠ ବନ୍ଧୁତାର ମୂଳ କାରଣ ଥିଲା ଓଡ଼ିଆ ଭାଗବତ, ଶ୍ରୀଚୈତନ୍ୟ ଥିଲେ ଗୁଣଗ୍ରାହୀ । ଜଗନ୍ନାଥ ଦାସଙ୍କଠାରେ ଜ୍ଞାନ ଓ ଭକ୍ତିର ଅପୂର୍ବ ସମାବେଶ ଲକ୍ଷ୍ୟ କରି ଶ୍ରୀଚୈତନ୍ୟ ତାଙ୍କୁ ଉତ୍କଳୀୟ ବୈଷ୍ଣବ ପରମ୍ପରା ଅନୁଯାୟୀ ଦୀକ୍ଷା ନେବାକୁ ଉପଦେଶ ଦେଇଥିଲେ । ଶ୍ରୀଜଗନ୍ନାଥ ଦାସଙ୍କଠାରେ ଅନାବିଳ ଭକ୍ତିରସାତ୍ମକ ଜ୍ଞାନଗର୍ଭକ ପ୍ରବଚନ ଶୁଣି ତାଙ୍କୁ 'ଅତିବଡ଼' ଜ୍ଞାନୀ ଭକ୍ତ ବୋଲି କହିଥିଲେ । ଏହାଦ୍ୱାରା ଜଗନ୍ନାଥ ଦାସଙ୍କ ପ୍ରତିଷ୍ଠା ବଢ଼ିଯାଇଥିଲା । ଓଡ଼ିଶାର ଗଜପତି ରାଜା ପ୍ରତାପରୁଦ୍ରଦେବ ତାଙ୍କଠାରୁ ମନ୍ତ୍ରରାଜର ଉପାସନା ସହିତ ଶ୍ରୀଜଗନ୍ନାଥଙ୍କ ମୂର୍ତ୍ତିରେ ତଥା ପ୍ରେମଭକ୍ତିର ମହତ୍ତ୍ୱ ପ୍ରସଙ୍ଗ ଶୁଣି ଅତୀବ ଆନନ୍ଦିତ ହୋଇଥିଲେ ଓ ତାଙ୍କୁ ସମ୍ମାନ ପ୍ରଦର୍ଶନ କରିଥିଲେ । କବି ଦିବାକରଙ୍କ ଭାଷାରେ—

ଶ୍ରୀ ଅତିବଡ଼ ସ୍ୱାମୀଙ୍କର । କୀର୍ତ୍ତି ବଢ଼ିଲା ଦେଶାନ୍ତର ॥
ସର୍ବେ ଜାଣିଲେ ତାଙ୍କ କଥା । ପ୍ରେମ ଭକ୍ତିରେ ସାମରଥା ॥
ଶ୍ରୀଚଇତନ୍ୟ ଆଜ୍ଞା କଲେ । ରାଜା ଅତିବଡ଼ ବୋଇଲେ ॥
ଅତିବଡ଼ ବୋଲିଣ ବାଣୀ । ରାଜ୍ୟେ ସମସ୍ତ ମୁଖେ ଭଣି ॥
କୀର୍ତ୍ତି ବଢ଼ିଲା ନିରନ୍ତର । ଶୁକ୍ଳ ପକ୍ଷେ କି ଶୀତକର ॥

(ଜ:ଚ:, ପୃ—୧୮୦)

ଗଜପତି ପ୍ରତାପରୁଦ୍ରଦେବ ସନ୍ତୁଷ୍ଟ ହୋଇ ମହାପୁରୁଷ ଜଗନ୍ନାଥ ଦାସଙ୍କୁ ଭୂରିଭୂରି ସମ୍ମାନିତ କରିବା ସଙ୍ଗେ ସଙ୍ଗେ ଶ୍ରୀମନ୍ଦିରର ପଶ୍ଚାଦ୍‌ଭାଗରେ ପାଟରାଣୀଙ୍କ

ଉଦ୍ଦେଶ୍ୟରେ ନିର୍ମିତ ଉଆସଟି ରହିବା ପାଇଁ ଦେଇଥିଲେ ବୋଲି ଅନୁମିତ ହୁଏ । ସେହି ଉଆସରେ ଜଗନ୍ନାଥ ଦାସ କିଛୁକାଳ ଅବସ୍ଥାନ କରିଥିଲେ । ବର୍ତ୍ତମାନ ତାହା ଓଡ଼ିଆ ମଠ ବା ସ୍ୱାମୀ ମଠ ନାମରେ ଅଭିହିତ । କିନ୍ତୁ ପରବର୍ତ୍ତୀ ସମୟରେ ସେ ସମୁଦ୍ରକୂଳର ଏକ ନିର୍ଜନ ସ୍ଥାନରେ କୁଡ଼ିଆଟିଏ କରି ସେଠାରେ ସାଧନା କରିବାକୁ ଲାଗିଲେ । ସେହି ସ୍ଥାନ ବର୍ତ୍ତମାନ ସାତଲହଡ଼ି ମଠ ନାମରେ ପରିଚିତ ।

ଜଗନ୍ନାଥ ଦାସଙ୍କ ମହିମା ଚାରିଆଡ଼େ ବ୍ୟାପିଗଲା । ଭାରତର ବିଭିନ୍ନ ଅଞ୍ଚଳରୁ ଶ୍ରୀଜଗନ୍ନାଥ ଦର୍ଶନ ପାଇଁ ଆସୁଥିବା ଜ୍ଞାନୀ, ଗୁଣୀ, ସାଧକ, ପଣ୍ଡିତ ସାଧୁ, କବି କୋବିଦଗଣ ଗୋସ୍ୱାମୀ ଜଗନ୍ନାଥ ଦାସଙ୍କଠାରେ ସମବେତ ହୋଇ କର୍ମବାଦରୁ ବ୍ରହ୍ମତତ୍ତ୍ୱ ପର୍ଯ୍ୟନ୍ତ ଯେ ଯାହା ପ୍ରଶ୍ନ ପଚାରୁଥିଲେ ସେ ଶାସ୍ତ୍ରାନୁମୋଦିତ ଯୁକ୍ତି ଓ ଉକ୍ତି ଦ୍ୱାରା ତାର ସମାଧାନ କରୁଥିଲେ । ଦିନେ ବ୍ରହ୍ମାନନ୍ଦ ନାମକ ଜଣେ ସନ୍ନ୍ୟାସୀ ଶତାଧିକ ଶିଷ୍ୟଙ୍କ ଗହଣରେ ଆସି ପୁରୀରେ ପହଞ୍ଚି ରାଜାଙ୍କୁ ସାକ୍ଷାତ କରି କହିଲେ—ରାଜନ୍, ଆମେ ଅଦ୍ୱୈତବାଦୀ । ଆମର ସନ୍ଦେହ ମୋଚନ ହେଲେ ଭୋଜନ କରିବୁ ନୋହିଲେ ଅନଶନ କରିବୁ । ଏହା ଶୁଣି କୌଣସି ପଣ୍ଡିତ ତାଙ୍କ ଶଙ୍କାର ସମାଧାନ କରିବା ପାଇଁ ଆସିଲେ ନାହିଁ । ଏହିପରି ସାତଦିନ ଅତିବାହିତ ହେଲା । ରାଜା ମନେ ମନେ ଦୁଃଖିତ ଓ ବ୍ୟସ୍ତ ହୋଇ ପଡ଼ିଲେ । ଜଗନ୍ନାଥ ଦାସ ଏହା ଶୁଣି ସନ୍ନ୍ୟାସୀଙ୍କ ପାଖରେ ଆସି ପହଞ୍ଚିଲେ ଏବଂ ହସି ହସି ତାଙ୍କର ସମସ୍ତ ପ୍ରଶ୍ନର ଶାସ୍ତ୍ରସମ୍ମତ ଉତ୍ତର ଦେଇଥିଲେ । ଦାରୁବ୍ରହ୍ମ ଜଗନ୍ନାଥଙ୍କୁ ବ୍ରହ୍ମ ବୋଲି ପ୍ରତିପାଦନ କରିବାକୁ ଜଗନ୍ନାଥ ଦାସ କହିଥିଲେ—

ଏ ଦାରୁବ୍ରହ୍ମ ଜଗନ୍ନାଥ । ନାମ ବ୍ରହ୍ମ ଖ୍ୟାତ ଜଗତ ॥
ଏହାଙ୍କ ଉପାସନା କର । ତରିବ ସଂସାର ସାଗର ॥
ବେଦାନ୍ତର ଏ ଗୂଢତତ୍ତ୍ୱ । ନ ଜାଣି ହୁଅ ଇତସ୍ତତ ॥
ତୁମ୍ଭେ ଭକ୍ତି ନାମକୁ ସ୍ମର । ସଂସାର ଭ୍ରମ ଦୂର କର ॥
ଶୁଷ୍କଭାବକୁ ପରିହର । ସମଭାବ ସର୍ବେ ଧର ॥
ବ୍ରହ୍ମଜ୍ଞାନ ସାଧନ କର । କେବଳ ନାମ ବ୍ରହ୍ମ ସ୍ମର ॥

( ଜ. ଚ., ପୃ-୯୮—୯୭ )

ଏହାଦ୍ୱାରା ନିରୁପାଧିକ ଅଦ୍ୱୈତବାଦର ଖଣ୍ଡନ ପୂର୍ବକ ଜ୍ଞାନମିଶ୍ର ଭକ୍ତିବାଦର ଶ୍ରେଷ୍ଠତ୍ୱ ପ୍ରତିପାଦିତ ହେଲା । ଜଗନ୍ନାଥ ଦାସଙ୍କ ଶାସ୍ତ୍ର ବ୍ୟାଖ୍ୟା ଶୁଣି ସନ୍ନ୍ୟାସୀ ବ୍ରହ୍ମାନନ୍ଦ 'ସାଧୁ ସାଧୁ' ବୋଲି କହି ବହୁ ପ୍ରଶଂସା କରିବା ସଙ୍ଗେ

ସଙ୍ଗେ ତାଙ୍କ ମସ୍ତକରେ ଦିବ୍ୟବସ୍ତ୍ର ବାନ୍ଧି 'ଅତିବଡ଼ ତପୋଧନ' ବୋଲି ସମ୍ବୋଧିତ ଓ ସମ୍ମାନିତ କରିଥିଲେ । ଏହି ଘଟଣାର ଉଲ୍ଲେଖ କରିବାକୁ ଯାଇ ଦିବାକର ଦାସ କହିଛନ୍ତି—

ଦିବ୍ୟ ପଟନେତ ଧରି କରେ । ବାନ୍ଧିଲେ ସ୍ୱାମୀଙ୍କର ଶିରେ ॥
ବୋଲନ୍ତି କରି ସମ୍ବୋଧନ । ହେ ଅତିବଡ଼ ତପୋଧନ ॥
ବ୍ରାହ୍ମଣ ବୈଷ୍ଣବ ପଣ୍ଡିତ । ଭକ୍ତି ଯୋଗରେ ଶୁଦ୍ଧ ଚିତ୍ତ ॥

× × ×

ଧନ୍ୟ ଏ ବ୍ରହ୍ମତତ୍ତ୍ୱ ବେତ୍ତା । ବୈଷ୍ଣବ ଭକ୍ତି ଶାସ୍ତ୍ର ଜ୍ଞାତା ॥
ପ୍ରକୃତି ପୁରୁଷ ଲକ୍ଷଣ । ନାହିଁ ଏ ଭକ୍ତି ରୂପ ଜାଣ ॥
ସ୍ୱାସନେ ସ୍ୱାମୀଙ୍କୁ ବସାଇ । ସମାନ ଆତ୍ମବୁଦ୍ଧି ଥୋଇ ॥
ସ୍ୱାମୀ ଯେ ଭିକ୍ଷା ଆଣିଦେଲେ । ସନ୍ତୋଷେ ଗ୍ରହଣ ସେ କଲେ ॥
ମାସେ ରହିଲେ ମେଳ ହୋଇ । ସନ୍ନ୍ୟାସୀ ବ୍ରହ୍ମାନନ୍ଦ ତହିଁ ॥
ମେଳାଣି ହୋଇ ରାମନାଥ । ଗଲେ ସନ୍ନ୍ୟାସୀ ବହିପଥ ॥

(ଜ:ଚ:, ପୃ—୧୮୭)

ମାସେକାଳ ଜଗନ୍ନାଥ ଦାସଙ୍କ ମେଳରେ ରହି ସନ୍ନ୍ୟାସୀ ଶିଷ୍ୟମାନଙ୍କ ସହି ରାମେଶ୍ୱର ଯାଇଥିଲେ । ଫଳରେ ସ୍ୱାମୀଙ୍କ ଚରିତର ଖ୍ୟାତି ଓଡ଼ିଶା ବାହାରେ ବ୍ୟାପିଗଲା ଏବଂ ଭକ୍ତିତତ୍ତ୍ୱ ସମ୍ବନ୍ଧରେ ଉପଦେଶ ପାଇଁ ଧୀରେ ଧୀରେ ଭକ୍ତମାନେ ଆସି ପହଞ୍ଚିଲେ । ତାଙ୍କଠାରୁ ମନ୍ତ୍ରଦୀକ୍ଷା ନେଇଥିବା ଭକ୍ତମାନଙ୍କ ମଧ୍ୟରେ ଯେଉଁ ଷୋଳଜଣ ପ୍ରଖ୍ୟାତ ଥିଲେ ସେମାନେ ହେଲେ ଉଦ୍ଧବ ଦାସ, ରାମଚନ୍ଦ୍ର ଦାସ, ଗୋପୀନାଥ, ହରି ଦାସ, ବାମନ ମହାପାତ୍ର, ନନ୍ଦନନ୍ଦନ ଦାସ, ଗଜପତି ପ୍ରତାପରୁଦ୍ର ଦେବଙ୍କ ରାଣୀ ଗଉରୀ ପାଟଦେଈ, ଗୋପାଳ ଦାସ, ଆଖଣ୍ଡଳ ଦାସ, ଜନାର୍ଦ୍ଦନ ପତି, କୃଷ୍ଣ ଦାସ, ବନମାଳୀ, ଗୋବର୍ଦ୍ଧନ ମହାପାତ୍ର, କାହ୍ନୁ ଖୁଣ୍ଟିଆ, ଜଗନ୍ନାଥ ଦାସ ଓ ମଧୁସୂଦନ ଦାସ । ଶିଷ୍ୟମାନଙ୍କ ଦ୍ୱାରା ଜଗନ୍ନାଥ ଦାସଙ୍କ ମହିମା ଅଧିକରୁ ଅଧିକ ପ୍ରଚାରିତ ହେବାକୁ ଲାଗିଲା ।

ମହାତ୍ମା ଜଗନ୍ନାଥ ଦାସଙ୍କ ପ୍ରଭାବ ଓ ପ୍ରତିଷ୍ଠାରେ ଇର୍ଷାନ୍ୱିତ ହୋଇ କେତେକ ଖଳଲୋକ ତାଙ୍କ ଚରିତ୍ର କଳୁଷିତ ହୋଇଛି ବୋଲି ରାଜାଙ୍କ ପାଖରେ ମିଥ୍ୟା ଅଭିଯୋଗ କଲେ । ସେମାନଙ୍କ ଅଭିଯୋଗ କ୍ରମେ ଜଗନ୍ନାଥ ଦାସଙ୍କୁ ବନ୍ଦୀ କରାଗଲା । କିନ୍ତୁ ପରେ ପ୍ରକୃତ ସତ୍ୟ ଉଦ୍‌ଘାଟିତ ହେଲା । ରାଜା ତାଙ୍କ ଚରିତ୍ରବତ୍ତାର ପ୍ରମାଣ ପାଇ ନିଜର ଅପରାଧ ପାଇଁ କ୍ଷମା ପ୍ରାର୍ଥନା କଲେ । କବି

ଦିବାକର ଦାସଙ୍କ ବର୍ଣ୍ଣନା ଅନୁଯାରେ ରାଜା ପ୍ରତାପରୁଦ୍ର ଦେବ ମହାପୁରୁଷ ଜଗନ୍ନାଥଙ୍କ ଚରିତର ଶୁଦ୍ଧତା ପରୀକ୍ଷା ପାଇଁ ଗୁପ୍ତଚର ନିଯୁକ୍ତ କଲେ । ଦିନେ ରାତିରେ ଗୁପ୍ତଚରମାନେ ଦୁଇଜଣ ସୁନ୍ଦରୀ 'ଯୁବତୀ ଜଗନ୍ନାଥ ଦାସଙ୍କ ପରିଚର୍ଯ୍ୟା କରୁଥିବାର ଦେଖି ରାଜାଙ୍କୁ ଯାଇ କହିଲେ । ରାଜା ନିଜେ ପାରିଷଦଙ୍କ ସହିତ ଯାଇ ଗୁପ୍ତଚରଙ୍କ ବର୍ଣ୍ଣନା ସତ୍ୟ ବୋଲି ଦେଖି ମର୍ମାହତ ହୋଇପଡ଼ିଲେ । ମହାତ୍ମା ଜଗନ୍ନାଥ ଦାସ ଏସବୁ ଜାଣିପାରି ଭୋଜନ ପରେ ହାତ ଧୋଇ ବସିବା ସ୍ଥାନରୁ ନଉଠି କହିଲେ—

ହେ ରାଜା ରାଣୀଙ୍କୁ ଶୁମର । କେ ସେବା କରେ ଅନ୍ତଃପୁର ॥
ତ୍ରିରୀକୁ ତ୍ରିରୀ ସେବା କରେ । ଏ କଥା ଅଛୁ ସର୍ବଠାରେ ॥
ମୁହିଁଟି ଜଗନ୍ନାଥ ଦାସୀ । ଏ ବେନି ନିତ୍ୟଲୋକ ବାସୀ ॥
ଏ ମୋତେ ନିତ୍ୟ ସେବା କରି । ଜଗିଣ ଥାଅ ଦଣ୍ଡଧାରୀ ॥
ସେବା କରି କେଣିକି ଯାଇ । ପାରିଲେ ଧରିନିଅ କହି ॥

(ଜ:ଚ:, ପୃ—୧୫୧)

କିନ୍ତୁ ସ୍ୱାମୀଙ୍କ ସେବା ଶେଷରେ ଦେହି ଯୁବତୀ ଦୁହେଁ ଦଣ୍ଡବତ କରି ବିଦ୍ୟୁତ୍ ପରି ଅନ୍ତର୍ଦ୍ଧାନ ହୋଇଯିବାର ଦେଖି ରାଜାଙ୍କ ସହିତ ସମସ୍ତେ ଆଶ୍ଚର୍ଯ୍ୟାନ୍ୱିତ ହୋଇପଡ଼ିଲେ । ଏହି ଅଦ୍ଭୁତପୂର୍ବ ଘଟଣାରେ ପ୍ରମ୍ମୀଭୂତ ହୋଇ ରାଜା ତାଙ୍କୁ ସ୍ତୁତି କଲେ—

ମହତ ଆଶ୍ଚର୍ଯ୍ୟ ହୋଇଣ । ଚରଣେ ପଡ଼ିଲେ ତକ୍ଷଣ ॥
କହେ ଚରଣ ତଳେ ନମି । ଜୟ ତୁ ଅତିବଡ଼ ସ୍ୱାମୀ ॥
ଯାହାକୁ ଚୈତନ୍ୟ ଗୋସାଇଁ । ଅତିବଡ଼ ଯେ ଆଜ୍ଞା ହୋଇ ॥
ସ୍ତୁତି କରନ୍ତେ ନୃପବର । ରଜନୀ ହୋଇଲା ଅନ୍ତର ॥

(ଜ:ଚ:, ପୃ—୧୫୨)

ରାଜାଙ୍କ ପ୍ରାର୍ଥନାରେ ସନ୍ତୁଷ୍ଟ ହୋଇ ଜଗନ୍ନାଥ ଦାସ ନିଜର ସ୍ତ୍ରୀଭାବ ପ୍ରକାଶନ ବିଷୟରେ ବୁଝାଇଥିଲେ । ଏହି ଘଟଣା ପ୍ରଚାରିତ ହେବା ମାତେ ବହୁ ସାଧୁ ସଜ୍ଜନଙ୍କ ସହିତ ସାର୍ବଭୌମ ମଧ୍ୟ ସେଠାରେ ପହଞ୍ଚିଲେ ଏବଂ ଜଗନ୍ନାଥ ଦାସଙ୍କ ଐଶୀ ଶକ୍ତି ସମ୍ବନ୍ଧରେ ସୂଚନା ଦେବାକୁ ଯାଇ କହିଲେ—

ଏ ଯେଉଁ ଜଗନ୍ନାଥ ଦାସେ । ଭକ୍ତି ସ୍ୱରୂପେ ପରକାଶେ ॥
ରାଧାକୃଷ୍ଣ ଯୁଗଳ ଭାବ । ଏ ଦେହେ ଖୋଜ ତାହା ସର୍ବ ॥

ଭକ୍ତ ମୁକ୍ତ ଦୁଇ ଦେଖାଇ । ପୁରୁଷେ ତ୍ରିଶ ଅଙ୍ଗ ବନ୍ଧ ॥
ଦେଖାଉଛନ୍ତି ସର୍ବଜନେ । ମୂର୍ତ୍ତିମନ୍ତ ହୋଇ ଆପଣେ ॥

× × ×

ଏ ଯେଉଁ ଜଗନ୍ନାଥ ଦାସ । ସାକ୍ଷାତେ ସୁଧାଂଶ ପ୍ରକାଶ
ଶ୍ରୀକୃଷ୍ଣଚନ୍ଦ୍ର ଅନ୍ତର୍ଯ୍ୟାମୀ । ମହାନୁଭବ ପ୍ରଭୁ ସେହି ॥
ମହିମା ପ୍ରକାଶିବା ଅର୍ଥେ । ସ୍ତ୍ରୀଲିଙ୍ଗ ହୋଇଲେ ଯୁଗତେ ॥

(ଜ.ଚ:, ପୃ—୧୭୪)

ଜଗନ୍ନାଥ ଦାସଙ୍କ କୀର୍ତ୍ତି ଓ ଖ୍ୟାତି ବଢ଼ିବାକୁ ଲାଗିଲା । ଉପଯୁକ୍ତ ଘଟଣା ୧୫୩୬ ବା ୧୫୩୭ ଖ୍ରୀଷ୍ଟାବ୍ଦରେ ଘଟିଥିଲା ବୋଲି ଆଲୋଚକମାନେ ମତ ଦିଅନ୍ତି । ଏହି ଘଟଣାକୁ ଜଗନ୍ନାଥ ଦାସଙ୍କ ପ୍ରେମଭକ୍ତିର ଏକ ପରୀକ୍ଷା ରୂପେ ବିଚାରଣୀୟ ।

ଭକ୍ତ ଜଗନ୍ନାଥ ଦାସଙ୍କ ଜୀବନରେ ଏହିପରି ଆଉ କେତୋଟି ଘଟଣା ଘଟିଥିବାର ସୂଚନା ମିଳେ । ଶ୍ରୀଜଗନ୍ନାଥ ଚରିତାମୃତରୁ ଜଣାଯାଏ ଯେ, ଥରେ କାଶୀରାମ ନାୟକ ନାମରେ ଜଣେ ବୋଇତ ବେପାରୀ ଶ୍ରୀକ୍ଷେତ୍ରକୁ ଜଗନ୍ନାଥ ଦର୍ଶନ ପାଇଁ ଆସିଥିଲେ । ସେ ଗଜପତି ଶ୍ରୀଖଣ୍ଡଚନ୍ଦନ ନାମରେ ଏକ ଚନ୍ଦନକାଠ ରାଜାଙ୍କୁ ଉପହାର ଦେଲେ । ରାଜା ଶ୍ରୀଜଗନ୍ନାଥଙ୍କ ଅଙ୍ଗରେ ଲାଗି କରାଇବା ନିମିତ୍ତ ସେହି ଚନ୍ଦନକାଠଟି ଅତିବଡ଼ି ସ୍ୱାମୀଙ୍କ ହାତରେ ଅର୍ପଣ କଲେ । କିନ୍ତୁ ଜଗନ୍ନାଥ ଦାସ ସେ ଚନ୍ଦନକାଠକୁ ପୁରି ଘୋରି ନିଜ ମଠ କାନ୍ଥରେ ବୋଳିଦେଲେ । ଏହା ଶୁଣି ରାଜା ତାଙ୍କୁ ଡକାଇ ଏପରି କରିବାର କାରଣ ପଚାରିବାରୁ ଜଗନ୍ନାଥ ଦାସ କହିଲେ—ସବୁ ଚନ୍ଦନ ତ ମହାପ୍ରଭୁଙ୍କ ଅଙ୍ଗରେ ଲାଗି କରିଛନ୍ତି । ରାଜା ବିସ୍ମିତ ହୋଇ ସେବକମାନଙ୍କୁ ସତ୍ୟାସତ୍ୟ ପରୀକ୍ଷା ପାଇଁ ଆଦେଶ ଦେଲେ ଏବଂ ଭକ୍ତ ପ୍ରବର ଜଗନ୍ନାଥଙ୍କ କଥାର ସତ୍ୟାସତ୍ୟ ଉପଲବ୍ଧି କରି ତାଙ୍କ ଚରଣ ବନ୍ଦନା ପୂର୍ବକ କ୍ଷମା ପ୍ରାର୍ଥନା କଲେ ।

ସଂସ୍କୃତ ଭାଷାରେ ରଚିତ 'ସୁଧାରହସ୍ୟ' ଶୀର୍ଷକ ଗ୍ରନ୍ଥର ଉଲ୍ଲେଖ ଅନୁସାରେ ଥରେ ଗଜପତି ପ୍ରତାପରୁଦ୍ର ଦେବ ଶ୍ରୀଜଗନ୍ନାଥଙ୍କ ଦର୍ଶନ ପରେ ବଟଗଣେଶଙ୍କ ପାଖରେ ପହଞ୍ଚିଲେ । ସେଠାରେ ଜଗନ୍ନାଥ ଦାସଙ୍କ ପୁରାଣପାଠ ରୀତିରେ ମୁଗ୍ଧ ହୋଇ ତାଙ୍କର ପାଦ ବନ୍ଦନା କଲେ । ଏହି ସମୟରେ ରାଜାଙ୍କ ଭାବାବେଶ ହେବାରୁ ସେ ମହାତ୍ମା ଜଗନ୍ନାଥ ଦାସଙ୍କୁ ଶଙ୍ଖ, ଚକ୍ର, ଗଦା, ପଦ୍ମ, ଧନୁ, ଶରଧାରୀ ବଂଶୀବାଦନରତ ଅକଳ୍ପନୀୟ ଅଷ୍ଟଭୁଜ ବିଶିଷ୍ଟ ଶ୍ୟାମସୁନ୍ଦର ରୂପରେ ବିରାଜିତ ଥିବାର ଦେଖିଲେ—

ଅଷ୍ଟବାହୁର୍ଜଗନ୍ନାଥଦାସୋ ବଂଶୀଧନୁଃଶରାନ୍
ଶଙ୍ଖ ଚକ୍ରଂ ଗଦା ପଦ୍ମଂ ବିଭ୍ରନ୍ତ୍ୟାମୋଽଭିବନ୍ଦିତା ।।

( ସୁଧାଝସ୍ୱ, ପୃ—୧୫ )

ମହାପ୍ରଭୁ ଶ୍ରୀଚୈତନ୍ୟଙ୍କ ଷଡ଼୍‌ଭୁଜ ଧାରଣ ପ୍ରସଙ୍ଗ ଅନୁକରଣରେ ଉପଯୁକ୍ତ ଘଟଣାଟିରେ ଯେ ଅବତାରଣା କରାଯାଇଛି, ସେଥିରେ ସନ୍ଦେହର ଅବକାଶ ନାହିଁ । ଭାରତୀୟ ସାଧୁ ସନ୍ଥ, ସାଧକ, ମହାତ୍ମା, ଭକ୍ତ, ମହାପୁରୁଷ-ମାନଙ୍କ ଜୀବନରେ ଏହିପରି ଅନେକ ପ୍ରକାର ଅଲୌକିକ ଘଟଣା ଘଟିଥିବା ପୁରାଣ, ମାହାତ୍ମ୍ୟ ଓ ଚରିତଗ୍ରନ୍ଥଗୁଡ଼ିକର ଅନୁଶୀଳନରୁ ଜଣାଯାଏ । ଭକ୍ତ ପ୍ରବର ଜଗନ୍ନାଥ ଦାସଙ୍କ ଜୀବନୀରେ ତା'ର ବ୍ୟତିକ୍ରମ ଆଶା କରିବା ଉଚିତ ନୁହେଁ । କାରଣ ବର୍ତ୍ତମାନ ମଧ୍ୟ ଭାରତର ବିଭିନ୍ନ ପ୍ରାନ୍ତରେ ଆବିର୍ଭୂତ ହୋଇଥିବା ବହୁ ସାଧୁସନ୍ଥ ବିଭିନ୍ନ ପ୍ରକାର ଅଲୌକିକ କାର୍ଯ୍ୟ ଦ୍ୱାରା ସାଧାରଣ ଜନସମାଜରେ ପୂଜାର୍ହ ସ୍ଥାନଲାଭ କରିଛନ୍ତି । ତେଣୁ ଜଗନ୍ନାଥ ଦାସଙ୍କ ଅସାଧାରଣ ବ୍ୟକ୍ତିତ୍ୱ, ସାଧନା, ସିଦ୍ଧି ଓ ପ୍ରଭାବ ବିଷୟରେ ପ୍ରଶ୍ନ କରିବାର ଅଧିକାର ଆମର ନାହିଁ ।

ମହାତ୍ମା ଜଗନ୍ନାଥ ଦାସ ଥିଲେ ଜଣେ ଉଚ୍ଚକୋଟୀର ସାଧକ । ପ୍ରଭୁ ଶ୍ରୀଜଗନ୍ନାଥଙ୍କ ପରିଚର୍ଯ୍ୟା ଓ ଉପାସନା ସହିତ ଶାସ୍ତ୍ରତତ୍ତ୍ୱ ଆଲୋଚନା ଓ ବ୍ୟାଖ୍ୟାନରେ ହିଁ ତାଙ୍କର ସାରା ଜୀବନ ଅତିବାହିତ ହୋଇଥିଲା । ମହାପୁରୁଷ ଜଗନ୍ନାଥ ଦାସଙ୍କ ଦୈନନ୍ଦିନ ସାଧନାର ଚିତ୍ର ଦଶମ ଅଧ୍ୟାୟରେ ଅଙ୍କନ କରିବାକୁ ଯାଇ କବି ଦିବାକର ଦାସ କହିଛନ୍ତି—

ସତୀ ଯୁବତୀ ପରି ହେଲେ । ତୀର୍ଥବ୍ରତ ସେ ନ ବାଞ୍ଛିଲେ ।।
ଏ ହେନେ ଅନ୍ୟ କ୍ଷେତ୍ର ତୀର୍ଥ । ବାଞ୍ଛା ନ କଲେ ତାଙ୍କ ଚିତ୍ତ ।।
ରାତ୍ର ଦିବସ ନିରନ୍ତର । ଶ୍ରୀଜଗନ୍ନାଥଙ୍କ ପସ୍ବର ।।
ଯେମନ୍ତ ଜନକ ଦୁଲଣୀ । ରାମହୁଁ ଅନ୍ୟକୁ ନ ଜାଣି ।।
ଯେମନ୍ତ ପର୍ବତ ଦୁହିତା । ହୃଦେ ଭାବନ୍ତି ପଞ୍ଚମଥା ।।
ଯେମନ୍ତ ରାଧା ବୃନ୍ଦାବନ । ହୃଦେ ଭାବ ନନ୍ଦନନ୍ଦନେ ।।
ଯେମନ୍ତ ଋକ୍ମିଣୀଙ୍କ ନନ୍ଦନ । କୃଷ୍ଣ ହୁଁ ଆନକୁ ନ ମାନ ।
ତେମନ୍ତ ଦାସ ଜଗନ୍ନାଥ । ହୃଦେ ଭାବନ୍ତି ଜଗନ୍ନାଥ ।।

(ଜ:ଚ:, ପୃ—୧୩୭)

ମହାପୁରୁଷ ଜଗନ୍ନାଥ ଦାସ ଅନ୍ୟାନ୍ୟ ସାଧୁ ସନ୍ଥଙ୍କ ପରି ତୀର୍ଥ ପର୍ଯ୍ୟଟନ କରିନଥିଲେ । ତାଙ୍କ ସାଧନାର ତପୋଭୂମି ଥିଲା ନୀଳାଚଳ ଓ ସର୍ବଦେବମୟ ଶ୍ରୀଜଗନ୍ନାଥ ଥିଲେ ତାଙ୍କର ପରମ ଉପାସ୍ୟ । ସେଥିପାଇଁ ସେ କହୁଥିଲେ—

ନୃସିଂହ ଅବା ରଘୁନାଥ । ଗୋକୁଳାନନ୍ଦ ନନ୍ଦସୁତ ॥
ବଦରୀ ପତି ଯଦୁପତି । କୃଷ୍ଣଙ୍କ ଅନନ୍ତ ମୂରତି ॥
ବ୍ରହ୍ମାଦି ଦଶ ଦିଗପାଳ । ରବି ପାର୍ବତୀ ଗଣେଶ୍ୱର ॥
ଏ ବାଞ୍ଛା ହୃଦେ ନ ଘେନଇ । ଏକା ଜଗନ୍ନାଥେ ଭାବଇ ॥
ଜଗନ୍ନାଥେ ବିକ ଶରୀର । ଯିବି ମୁଁ କାହାର ପାଶର ॥

(ଜ:ଚ:, ପୃ—୧୩୬)

ଜଗନ୍ନାଥ ଦାସଙ୍କ ଦୃଷ୍ଟିରେ ବୃନ୍ଦାବନ, ଅଯୋଧ୍ୟା, ଗୋପ, ଦ୍ୱାରକା, ବଦ୍ରିକା, କାଶୀ ପ୍ରଭୃତି କ୍ଷେତ୍ର ଗଙ୍ଗା, ଯମୁନା, ଗୋଦାବରୀ, ସରଯୂ, ସିନ୍ଧୁ ପ୍ରଭୃତି ତୀର୍ଥର ସମନ୍ୱିତ କ୍ଷେତ୍ର ହେଉଛି ଶ୍ରୀଜଗନ୍ନାଥ ଧାମ । ତେଣୁ ଶ୍ରୀଜଗନ୍ନାଥ ବିନା ତାଙ୍କ ହୃଦୟରେ ଅନ୍ୟ କାହାରି ସ୍ଥାନ ନଥିଲା । ନୀଳାଚଳ ନାଥ ଶ୍ରୀଜଗନ୍ନାଥଙ୍କଠାରେ ଥିବା ତାଙ୍କର ଐକାନ୍ତିକ ଭକ୍ତି ଓ ଅସାଧାରଣ ଭାବାବେଗର ଏକ ସଶ୍ରେଷ୍ଠ ଚିତ୍ର ସ୍ୱରଚିତ ଭାଗବତର ଏକାଦଶ ସ୍କନ୍ଧ ପଞ୍ଚମ ଅଧ୍ୟାୟରେ ନିମ୍ନମତେ ଚିତ୍ରିତ ହୋଇଛି—

ଦିନ ବୈଷ୍ଣବ ଭକ୍ତ ସଧେ । ବିଷ୍ଣୁ ଭକତଙ୍କର ମଧ୍ୟେ ॥
କଣ୍ଠ କୁଣ୍ଠିତ ଜଡ଼ମତି । ଦେହ ପୁଲକ ପ୍ରେମପନ୍ତି ॥
ଚିତ୍ତେ ଗୋବିନ୍ଦ ନାମ ସ୍ମରେ । ରୋଦନ କରେ ଉଚ୍ଚ ସ୍ୱରେ ॥
କ୍ଷଣେ ହସଇ କ୍ଷଣେ ନାଚେ । ଘନ ଗର୍ଜନ କରେ ଉଚ୍ଚେ ॥
କ୍ଷଣକେ ଗାଏ ଗୁଣ ଗାଥା । କହଇ ଅଲୌକିକ କଥା ॥
କ୍ଷଣକେ କୃଷ୍ଣ ଗୁଣ ଗୁଣି । ଚକ୍ଷୁ ବୁଜଇ ହୋଇ ତୁନି ॥

କବି ଦିବାକର ଦାସ ମଧ୍ୟ ସାଧକ ଜଗନ୍ନାଥ ଦାସଙ୍କ ପ୍ରେମଭକ୍ତି ଜନିତ ଭାବବିହ୍ୱଳତାର ଏକ ନିଖୁଣ ଚିତ୍ର ଶ୍ରୀଜଗନ୍ନାଥ ଚରିତାମୃତର ଦଶମ ଅଧ୍ୟାୟରେ (ପୃ—୧୩୫-୧୩୭) ଉପସ୍ଥାପନ କରିଛନ୍ତି । ସାଧନା ପଥରେ ଅଗ୍ରସର ହେବା ସଙ୍ଗେ ସଙ୍ଗେ ସେ ନିଜର ସର୍ବସ୍ୱ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଅର୍ପଣ କରିଥିଲେ ଏବଂ କୁଳାଶ୍ରର ଧର୍ମ, ଯତିଧର୍ମ, ବେଦବଚନ, ବେଦପାଠାଦି ତ୍ୟାଗ କରି କାୟ ମନୋବାକ୍ୟରେ ଶ୍ରୀଜଗନ୍ନାଥଙ୍କ ଧ୍ୟାନରେ ନିମଜ୍ଜିତ ହୋଇପଡ଼ିଲେ । କବି ଦିବାକରଙ୍କ ଉଲ୍ଲେଖ ଅନୁସାରେ—

ସନ୍ଧ୍ୟା ବନ୍ଦନ ଜପ ହୋମ । ପଞ୍ଚ ଦେବତାଙ୍କ ପୂଜନ ॥
ବୈଶ୍ୱଦେବ ଅତିଥି ପୂଜା । ସମସ୍ତ କଲେ ପରିତେଜ୍ୟା ॥
ଯତିମାନଙ୍କ ଧର୍ମ ଯେତେ । ଆଦର ନକଲେ ସେ ଚିତ୍ତେ ॥

ବ୍ରାହ୍ମଣ କ୍ଷତ୍ର ବୈଶ୍ୟଙ୍କର । ଯେ ଅବା ଶୂଦ୍ରର ବସ୍ତର ॥
ଜାଣି ସର୍ବକର୍ମ ତେଜିଲେ । ଏକା ଜଗନ୍ନାଥେ ଭଜିଲେ ॥
ବେଦ ବେଦାଙ୍ଗ ଯେ ପୁରାଣ । ପୂର୍ବରୁ ଥିଲା ଯେ ପଠନ ॥
ତାହା ଛାଡ଼ିଲେ ଭକ୍ତିବଳେ । ଆଶ୍ରେ ଶ୍ରୀଚରଣ କମଳେ ॥
ସ୍ୱବନ୍ଧୁ କୁଟୁମ୍ବ ସହିତେ । ପ୍ରିୟ ଅପ୍ରିୟ ବର୍ଗ ଯେତେ ॥
ଏ ସଙ୍ଗ ଦୂରେ ପରିହରି । ରହିଲେ କୃଷ୍ଣ ଆଶ୍ରେ କରି ॥
(ଜ.ଚ., ପୃ—୧୪୧)

ମହାପୁରୁଷ ଜଗନ୍ନାଥ ଦାସ ଜଣେ ସୁପଣ୍ଡିତ କବି, ପରମଭକ୍ତ ଓ ସନ୍ନ୍ୟାସୀ ଥିଲେ । ଶ୍ରୀଚୈତନ୍ୟଙ୍କ ଠାରେ ତାଙ୍କର ଗଭୀର ଶ୍ରଦ୍ଧା ଓ ଭକ୍ତି ଥିଲା । ବୈଷ୍ଣବ ମଣ୍ଡଳୀରେ ଜଗନ୍ନାଥ ଦାସ ଶ୍ରୀଚୈତନ୍ୟଙ୍କ ପ୍ରିୟସଖା ରୂପେ ଆଦୃତ ଓ ସମ୍ମାନିତ ହେଉଥିଲେ । ତାଙ୍କର ବହୁଶାସ୍ତ୍ରଦର୍ଶିତା, ପାଣ୍ଡିତ୍ୟ ଓ ଦାର୍ଶନିକ ତତ୍ତ୍ୱର ଦ୍ୱାରା ସମସ୍ତେ ପ୍ରଭାବିତ ହେବା ସଙ୍ଗେ ସଙ୍ଗେ ଜଗନ୍ନାଥଙ୍କ ପ୍ରତି ତାଙ୍କର ଐକାନ୍ତିକ ଭକ୍ତିନିଷ୍ଠା ଦେଖି ଅଭିଭୂତ ହୋଇ ପଡୁଥିଲେ । ଶ୍ରୀଚୈତନ୍ୟଙ୍କ ମତବାଦ ପ୍ରତି ଜଗନ୍ନାଥ ଦାସଙ୍କର ଶ୍ରଦ୍ଧା ଥିଲେ ମଧ୍ୟ ସେ ଉତ୍କଳୀୟ ପରମ୍ପରା ଅନୁସାରେ 'ହରେରାମ' ନାମ ମନ୍ତ୍ରର ଦୀକ୍ଷା ନେଇଥିଲେ । ରାମନାମ ମାହାତ୍ମ୍ୟ ପ୍ରସଙ୍ଗକୁ ନେଇ ଶ୍ରୀଚୈତନ୍ୟଙ୍କୁ ଜଗନ୍ନାଥ ଦାସ ଯେଉଁ ଉତ୍ତର ଦେଇଥିଲେ ତାହା ଶ୍ରୀଜଗନ୍ନାଥ ଚରିତାମୃତରେ ନିମ୍ନମତେ ବର୍ଣ୍ଣନା କରାଯାଇଛି—

ହକାର ଅକ୍ଷରରୁ ପର । ଏକାର ଯୁକ୍ତଟି ରକାର ॥
ଯୋଗ ଆକାର ରକାରରେ । ରଖ ମକାର ତା ପାଖରେ ॥
କୃକାର ଅନ୍ତରେ ଷ୍ଣକାର । ନାମ ହସ୍ତୁଟି ଏ ପ୍ରକାର ॥
ହରେ ରାମକୁ ଦୁଇଥର । ଆଦ୍ୟରୁ ଉଚ୍ଚାରଣ କର ॥
ତାପରେ ରାମ ଦୁଇବାର । ତହୁଁ ହରେ ଦୁଇଥର ॥
ହରେ କୃଷ୍ଣକୁ ଏହିପରି । ଆବୃତ୍ତି କରିବ ବିସ୍ତରି ॥
ଷୋଡ଼ଶ ଅକ୍ଷରରେ ଜାଣ । ମହାମନ୍ତ୍ରଟି ଏ ପ୍ରମାଣ ॥
ଏ ମହାମନ୍ତ୍ର ଯେହୁ ସାଧି । ସମସ୍ତ ବାଞ୍ଛା ହୁଏ ସିଦ୍ଧି ॥
(ଜ:ଚ:, ପୃ—୩୦)

ମହାପ୍ରଭୁ ଶ୍ରୀଚୈତନ୍ୟ ମନ୍ତ୍ରର ବ୍ୟାଖ୍ୟା ଶୁଣି ପ୍ରୀତ ହେବା ସଙ୍ଗେ ଜଗନ୍ନାଥ ଦାସଙ୍କୁ ଆଜନ୍ମ ସିଦ୍ଧ ବୋଲି କହି ସମ୍ମାନିତ କରିଥିଲେ ।

ମହାତ୍ମା ଜଗନ୍ନାଥ ଦାସଙ୍କ ଦୃଷ୍ଟିରେ ନୀଳାଚଳହିଁ ନିତ୍ୟସ୍ଥଳ । ନୀଳାଚଳ-ବିହାରୀ ପୂର୍ଣ୍ଣ ଶ୍ରୀକୃଷ୍ଣ ହେଲେ ଜଗନ୍ନାଥ । ଶ୍ରୀରାଧାକୃଷ୍ଣ, ଲକ୍ଷ୍ମୀନାରାୟଣ ଓ ରୁକ୍ମିଣୀ

ବାସୁଦେବଙ୍କ ଅଦ୍ୱୈତ ରୂପ ହେଉଛନ୍ତି ଶ୍ରୀଜଗନ୍ନାଥ ଏବଂ ତାଙ୍କଠାରୁ ଏମାନେ ଅବତାର ଗ୍ରହଣ କରିଛନ୍ତି । କେବଳ ସେତିକି ନୁହେଁ କପିଳାଦି ବତିଶ ଅବତାର ଶ୍ରୀଜଗନ୍ନାଥଙ୍କ ଅଂଶରୁ ଜାତ ହୋଇଛନ୍ତି । ପୁରୁଷୋତ୍ତମ ସର୍ବପ୍ରାଚୀନ ଓ ପୁରୁଷୋତ୍ତମ ଶ୍ରୀଜଗନ୍ନାଥ ହେଉଛନ୍ତି ଭଗବାନ ! କାରଣ ବିଭିନ୍ନ ଅବତାର ପରି ସେ ସଂସାରରେ ଜନ୍ମଗ୍ରହଣ କରନ୍ତି ନାହିଁ । ଯୁଗ ଅନୁଯାୟୀ ସତ୍ୟରେ ସେ ନୃସିଂହନାଥ, ତ୍ରେତାରେ ରଘୁନାଥ, ଦ୍ୱାପରରେ ଗୋପୀନାଥ ଓ କଳିରେ ଜଗନ୍ନାଥ ନାମରେ ଅଭିହିତ ଏବଂ ଯଥାକ୍ରମେ ନାରାୟଣମନ୍ତ୍ର, ରାମତାରକମନ୍ତ୍ର, ଗୋପାଳମନ୍ତ୍ର ଓ ହରେରାମାଦି କୀର୍ତ୍ତନ ମନ୍ତ୍ରରେ ତାଙ୍କ୍ର ଉପାସନା କରାଯାଏ ।

ଶ୍ରୀନୀଳକନ୍ଦରରେ ଦାରୁବ୍ରହ୍ମ ଶ୍ରୀଜଗନ୍ନାଥ, ନୀଳମାଧବ, ରାଧାମାଧବ, ଓଁକାରମୂର୍ତ୍ତି ଓ ଅକ୍ଷର ରୂପରେ ବିରାଜିତ । ସାଧକ ପ୍ରବର ଜଗନ୍ନାଥ ଦାସଙ୍କର ଏହି ଭାବନାକୁ କବି ଦିବାକର ନିମ୍ନମତେ ବର୍ଣ୍ଣନା କରିଛନ୍ତି—

ସମସ୍ତ ଈଶ୍ୱର ପରମ । ସ୍ୱରୂପ ଜଗନ୍ନାଥ ବ୍ରହ୍ମ ॥
ଯେ ସୂକ୍ଷ୍ମ ରୂପ ମହେଶ୍ୱର । ଲିଙ୍ଗ ବ୍ରହ୍ମନାମ ପ୍ରସ୍ୱର ॥
ସେ ମହାବିଷ୍ଣୁ ହେତୁ କର । ସହସ୍ର ବାହୁ କର୍ଣ୍ଣଶିର ॥
ଏମାନଙ୍କର ପ୍ରଭୁ ଏହି । ବିନ୍ଦୁ ପ୍ରକୃତି ପୁଂସ କହି ॥
ସେହି ସେ ପରମ ପୁରୁଷ । ପରମ ଆତ୍ମା ଏ ପ୍ରକାଶ ॥
ସଚ୍ଚିଦାନନ୍ଦ ସର୍ବେଶ୍ୱର । ଶ୍ରୀଜଗନ୍ନାଥ ନାମ ସାର ॥

(ଜ:ଚ:, ପୃ—୩୦୨)

ମହାପ୍ରଭୁ ଶ୍ରୀଚୈତନ୍ୟ ଏହି ଭକ୍ତିରସକୁ ବୁଝିପାରି ଅନ୍ୟତ୍ର ନ ଯାଇ ପୁରୁଷୋତ୍ତମ କ୍ଷେତ୍ରରେ ହିଁ ନିଜର ସନ୍ନ୍ୟାସ ଜୀବନ ଅତିବାହିତ କରିଥିଲେ । ତେଣୁ ଶ୍ରୀଜଗନ୍ନାଥ ହିଁ ମହାପୁରୁଷ ଜଗନ୍ନାଥ ଦାସଙ୍କର ସର୍ବସ୍ୱ ଥିଲେ । ସେହି ଶ୍ରୀଜଗନ୍ନାଥଙ୍କ ନାମ କୀର୍ତ୍ତନ, ସେବା, ସ୍ମରଣ, ଧ୍ୟାନରେ ଜୀବନ ଅତିବାହିତ କରିବା ପାଇଁ ନିଜର ଶିଷ୍ୟ ଅନୁଗତମାନଙ୍କୁ ଜଗନ୍ନାଥ ଦାସ ଉପଦେଶ ଦେଇଥିଲେ ।

ଶ୍ରୀଜଗନ୍ନାଥ ଓ ଭାଗବତ ଧର୍ମ ଭାବନାର ବ୍ୟାପକ ପ୍ରସାର କ୍ଷେତ୍ରରେ ଜଗନ୍ନାଥ ଦାସ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଥିଲେ । ନିଜର ଶିଷ୍ୟ ପ୍ରଶିଷ୍ୟଙ୍କ ଦ୍ୱାରା ସେ ଭାଗବତ ପ୍ରେମଭକ୍ତିର ବାର୍ତ୍ତା ତତ୍କାଳୀନ ଓଡ଼ିଶାର ଘରେ ଘରେ ପହଞ୍ଚାଇବାରେ ସଫଳ ହୋଇଥିଲେ । ଶିଷ୍ୟମାନଙ୍କୁ ଉପଦେଶ ଛଳରେ କହିଥିଲେ—ଜ୍ଞାନ ଓ କର୍ମର ସାର ହେଉଛି ଭକ୍ତି । ଶ୍ରୀରାଧାକୃଷ୍ଣପ୍ରେମ ହେଉଛି

ସର୍ବଶ୍ରେଷ୍ଠ ସମ୍ପତ୍ତି । ଶ୍ରୀରାଧାକୃଷ୍ଣଙ୍କ ପ୍ରେମଭକ୍ତିର ସାଧକହିଁ ଭକ୍ତମାନଙ୍କ ମଧ୍ୟରେ ଶ୍ରେଷ୍ଠଭକ୍ତ ରୂପେ ବିବେଚିତ । ହରେରାମକୃଷ୍ଣ ମନ୍ତ୍ରସାଧନା ଦ୍ୱାରା ଭକ୍ତର ଇଷ୍ଟ ସାଧିତ ହୁଏ । ନିତ୍ୟଧାମ ପୁରୁଷୋତ୍ତମବାସୀ ଶ୍ରୀଜଗନ୍ନାଥ ହେଉଛନ୍ତି ଜ୍ଞାନ, ପ୍ରେମ ଓ ଭକ୍ତିର କଳ୍ପବୃକ୍ଷ ସେହି କଳ୍ପତରୁର ଆଶ୍ରୟହିଁ ସର୍ବଶ୍ରେଷ୍ଠ ଆଶ୍ରୟ ।

ଶ୍ରୀମଦ୍‌ଭାଗବତ ତତ୍ତ୍ୱର ସରଳ ବ୍ୟାଖ୍ୟା ଶୁଣିବା ପାଇଁ ପୁରୁଷୋତ୍ତମ ଯାତ୍ରୀ ଭକ୍ତଜନ ସାଧାରଣ ଜଗନ୍ନାଥ ଦାସଙ୍କ ପାଖରେ ସମବେତ ହେଉଥିଲେ । ଶ୍ରୀଜଗନ୍ନାଥଙ୍କ ଦର୍ଶନ ପରେ ଗୋସ୍ୱାମୀ ଜଗନ୍ନାଥଙ୍କ୍ର ଦର୍ଶନ ନ କରି ଏବଂ ତାଙ୍କ ସୁମଧୁର ବାଣୀରୁ ଦୁଇ ଅକ୍ଷରପଦ ନ ଶୁଣି କୌଣସି ଭକ୍ତ ଶ୍ରୀକ୍ଷେତ୍ରରୁ ପତ୍ୟାବର୍ତ୍ତନ କରିବାକୁ ଶ୍ରେୟସ୍କର ମଣୁ ନ ଥିଲେ—

ଶୁଣି ମହନ୍ତମାନେ ଯାନ୍ତି । ସ୍ୱାମୀଙ୍କ ସମୀପେ ମିଳନ୍ତି ॥
ଅତିଶୟମାନ ପଚାରନ୍ତି । ପ୍ରବୃତ୍ତ ହୋଇ ସୁଖ ପାନ୍ତି ॥
କର୍ମରୁ ବ୍ରହ୍ମ ପରିଯନ୍ତେ । ଯେ ଯାହା ପଚାରନ୍ତି ନିତ୍ୟେ ॥
କରନ୍ତି ତାର ସମାଧାନ । ଲଭନ୍ତି ଜନେ ବ୍ରହ୍ମଜ୍ଞାନ ॥

(ଜ:ଚ:, ପୃ—୧୮୦)



# ମହାପ୍ରୟାଣ

ଶ୍ରୀକ୍ଷେତ୍ରରେ ରାୟ ରାମାନନ୍ଦ, ଗୋସ୍ୱାମୀ, ଜଗନ୍ନାଥ ଭକ୍ତ ବଳରାମ, ଅଚ୍ୟୁତ, ଅନନ୍ତ, ଯଶୋବନ୍ତ, ସ୍ୱରୂପ ଦାମୋଦର, ରଘୁନାଥ ଦାସ ପ୍ରଭୃତି ମୂର୍ଦ୍ଧନ୍ୟ ବୈଷ୍ଣବମାନଙ୍କ ଗହଣରେ ମହାପ୍ରଭୁ ଶ୍ରୀଚୈତନ୍ୟ ସନ୍ନ୍ୟାସ ଜୀବନର ଅଠର ବର୍ଷକାଳ ଅତିବାହିତ କରିଥିଲେ । 'ବୈଷ୍ଣବ ଲୀଳାମୃତର' ବର୍ଣ୍ଣନା ଅନୁସାରେ ପ୍ରଥମେ ମାଘ ଶୁକ୍ଳ ଏକାଦଶୀରେ (୧୫୩୩ ଖ୍ରୀ:ଅ:) ସ୍ୱରୂପ ଦାମୋଦରଙ୍କ ଦେହାନ୍ତ ଘଟିଥିଲା । ପରବର୍ତ୍ତୀ ଫାଲ୍‌ଗୁନ ଶୁକ୍ଳ ଦଶମୀରେ (୨୭.୩.୧୫୩୩) ଭକ୍ତ ବଳରାମ ଦାସ ଇହଲୀଳା ସମ୍ବରଣ କରିଥିଲେ । ପ୍ରିୟସଖା ବଳରାମଙ୍କ ମୃତ୍ୟୁରେ ବୈଷ୍ଣବମଣ୍ଡଳୀ ସହିତ ଶ୍ରୀଚୈତନ୍ୟ ମ୍ରିୟମାଣ ହୋଇପଡ଼ିଲେ । ଏହା ପରେ ବୈଶାଖ ଅମାବାସ୍ୟା (ରୁକ୍ମିଣୀ ଅମାବାସ୍ୟା) ଦିନ ସନ୍ଧ୍ୟାରେ କୀର୍ତ୍ତନ ଓ ନୃତ୍ୟ କଲାବେଳେ ଶ୍ରୀଚୈତନ୍ୟ ପାଦରେ ଆଘାତ ମାଡି ଅସୁସ୍ଥ ହୋଇପଡ଼ିଲେ । ସେହି ଅସୁସ୍ଥତା ଲାଗି ରହିଲା । ଗୋସ୍ୱାମୀ ଜଗନ୍ନାଥ ଦାସ ତାଙ୍କ ସେବା କରୁଥିଲେ । ଶ୍ରୀଚୈତନ୍ୟ ତାଙ୍କୁ କହିଲେ—

ତୁ ଜଗନ୍ନାଥର ସେବକ । ସେବକ ମୁଁ ତୋ ଅବିବେକ ।।
ସେବା ପାଇଲି ତୋର ହାତୁଁ । ଜାଣଇ ସବୁ ଜଗବନ୍ଧୁ ।।
ତୋ ଋଣ ଶୁଝି ଆଉ ନାହିଁ । ପ୍ରାଣୀର ଆର୍ତ୍ତି ନିବାରଇ ।।
ରଖାଇ ଆପଣା ଚରଣେ । ମୋତେ କି ନେବ ନିଜଧାମେ ।।
ତୁ ସ୍ୱାମୀ ମୋହର ସରଣ । ସୁଜ୍ଞାନୀ ପଣ୍ଡିତ ସୁଜାଣ ।।
ଭକତି ବାଟ ବତାଇଲୁ । ସଖ୍ୟରେ ମୋତେ ବାନ୍ଧିଲୁ ।।
ତୋତେ ଛାଡ଼ି ମୁଁ ଯିବି ନାହିଁ । ତୋ ଯିବା ବାଟ ଥିବି ଚାହିଁ ।।
ପ୍ରଭୁର ନୟନେ ଲୋତକ । ସ୍ୱାମୀ ହେରଇ ପ୍ରଭୁ ମୁଖ ।।

(ବୈ:ଲୀ:, ପୃ—୭୪)

ଶ୍ରୀଚୈତନ୍ୟ ଓ ଜଗନ୍ନାଥ ଦାସଙ୍କ ମଧ୍ୟରେ କିପରି ବନ୍ଧୁତା ଓ ସୌହାର୍ଦ୍ଦ୍ୟ ଥିଲା ତାହାର ସୂଚନା ଏଥିରୁ ମିଳେ । ଅସୁସ୍ଥ ହେବାର ତୃତୀୟ

ଦିନ ଅର୍ଥାତ୍ ବୈଶାଖ ମାସ ଅକ୍ଷୟ ତୃତୀୟା ଦିନ ବ୍ରାହ୍ମ ମୁହୂର୍ତ୍ତରେ ଶ୍ରୀଚୈତନ୍ୟ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । କିନ୍ତୁ ଶ୍ରୀଚୈତନ୍ୟଙ୍କ ମହାପ୍ରୟାଣ ବାର୍ତ୍ତା ସେହି ବର୍ଷ (୧୫୩୩ ଖ୍ରୀ:ଅ:) ରଥଯାତ୍ରା ଅବସରରେ ଘୋଷିତ ହୋଇଥିଲା । ପରବର୍ତ୍ତୀ ଭାଦ୍ର ଶୁକ୍ଳାଷ୍ଟମୀ ଦିନ ରାୟ ରାମାନନ୍ଦ ଇହଧାମ ତ୍ୟାଗ କରିଥିଲେ । ପଞ୍ଚସଖାଙ୍କ ବୈଷ୍ଣବ ଗୋଷ୍ଠୀ ଭାଙ୍ଗିଗଲା ଓ ସେ ଯାହାର ସାଧନା କ୍ଷେତ୍ରକୁ ଫେରିଯାଇଥିବା ନିମ୍ନୋକ୍ତିରୁ ଜଣାଯାଏ—

ମଣ୍ଡପ ଉପର ପାରୁଣେ । ରାମରାୟ ଯେ ଆସି ବସେ ॥
ପ୍ରଭୁର ଭାବ ସେ ସୁମରି । ନୟନୁ ଲୋତକ ଝରଇ ॥
ସ୍ୱାମୀ ବୋଇଲେ ନ ଆସିବ । ସମୁଦ୍ର କୂଳେଣ ରହିବ ॥
ଅଚ୍ୟୁତ ଗଲେ ନେମାଳକୁ । ଅନନ୍ତ ଗଲେ ସ୍ୱସ୍ଥାନକୁ ॥

(ବୈ.ଲୀ , ପୃ—୮୦)

ମହାପ୍ରଭୁ ଶ୍ରୀଚୈତନ୍ୟ ଇହଲୀଳା ସମ୍ବରଣ କରିବାର ଷୋଳବର୍ଷ ପରେ ମହାପୁରୁଷ ଜଗନ୍ନାଥ ଦାସ ଷାଠିଏ ବର୍ଷ ବୟସରେ ମହାପ୍ରୟାଣ କରିଥିଲେ । ପ୍ରତିଦିନ ଭଗବଦ୍ ଆରାଧନା, ହରିନାମ କୀର୍ତ୍ତନ, ଶିଷ୍ୟ ଓ ଜନସାଧାରଣଙ୍କୁ ଭକ୍ତିତତ୍ତ୍ୱ ଓ ଶ୍ରୀକୃଷ୍ଣ-ଜଗନ୍ନାଥଙ୍କ ଲୀଳା ବ୍ୟାଖ୍ୟାନ ମଧ୍ୟରେ ତାଙ୍କର ସେହି ଷୋଳବର୍ଷ ଅତିବାହିତ ହୋଇଥିବାର ମନେ ହୁଏ । ଇହଧାମ ତ୍ୟାଗ କରିବାର ସମୟ ଆସିଯାଇଥିବାର ଜାଣି ମହାପୁରୁଷ ଜଗନ୍ନାଥ ଦାସ ଶିଷ୍ୟମାନଙ୍କୁ କହିଲେ—

ସମସ୍ତ ଶିଷ୍ୟଗଣ ରୁହି । ସ୍ୱାମୀ କହିଲେ ଦୟା ବହି ॥
ଯୁଗଳ ପ୍ରେମ ଭାବୁଥିବ । ଏ ସୁଖ କେବେ ନ ଛାଡ଼ିବ ॥
କାଷ୍ଠ ପାଦୁକା ପାଦୁଁ ଫେଡ଼ି । ବୋଇଲେ ପୂଜା କର ଯାଇ ॥
ଶୁଣିଣ ହରିଦାସେ ଗଲେ । କାଷ୍ଠ ପାଦୁକା ପୂଜା କଲେ ॥
ସମସ୍ତେ କଲେ ସିଦ୍ଧକାର । ପୀଠେ ପାଇଲେ ଅଧିକାର ॥
ତାହାଙ୍କୁ ଦେଲେ ଅଧିକାର । ସମସ୍ତ ଯେନ ରାଜ୍ୟ କର ॥

(ଜ:ଚ:, ପୃ—୩୦୭)

ଜଗନ୍ନାଥ ଦାସ ଶିଷ୍ୟମାନଙ୍କୁ ପାଦୁକା ଅର୍ପଣ କରି ତାହାକୁ ପୂଜା କରିବା ପାଇଁ ଉପଦେଶ ଦେଇ କୁଶାସନରେ ବସି ଭଗବାନଙ୍କୁ ଧ୍ୟାନ କଲେ—

ଏ ମନ୍ତ୍ର ଆଜ୍ଞାକରି ସ୍ୱାମୀ । ଚିନ୍ତିଲେ ଧ୍ୟାନେ ଅନ୍ତର୍ଯ୍ୟାମୀ ॥
ଶ୍ରୀହରି ମନ୍ଦିର କପାଳେ । ତୁଳସୀ ଧଣ୍ଡା ହୃଦୟରେ ॥

ଦସ୍ତାଣୀ ଲଲାଟେ ବେଢ଼ାଇ । ନିର୍ମାଲ୍ୟ ଅଧରେଣ ଦେଇ ॥
ଶଙ୍ଖ ଚକ୍ର ଚିହ୍ନ ଅଙ୍ଗରେ । ବସିଲେ କୁଶ ଆସନରେ ॥
ଦେଉଳ ସମସ୍ତେ ଦେଖିଲେ । ନୀଳଚକ୍ରକୁ ଦୃଷ୍ଟି ଦେଲେ ॥
ରାଧାକୃଷ୍ଣ ଯୁଗଳ ମନ୍ତ୍ର । ଧ୍ୟାନାବସ୍ଥିତ କଲେ ଚିତ୍ତ ॥
ପ୍ରାଣାଦି ପବନକୁ ତୋଳି । ଚକ୍ରେ ଚକ୍ର ଭେଦ ନିର୍ଗଳି ॥

ମହାପ୍ରଭୁ ଶ୍ରୀଚୈତନ୍ୟ ଯେପରି ନର ଶରୀର ତ୍ୟାଗ କରି ଶ୍ରୀଜଗନ୍ନାଥଙ୍କ ଠାରେ ଲୀନ ହୋଇଥିଲେ ସେହିପରି ମହାପୁରୁଷ ଜଗନ୍ନାଥ ଦାସ ଗୋପନରେ ଦିବ୍ୟ ଶରୀର ଧାରଣ କରି ନରଦେହରୁ ବହିର୍ଗତ ହେଲେ ଏବଂ ମେଘମାଳରେ ବିଜୁଳି ଚମକିଲା ପରି ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଅଙ୍ଗରେ ଲୀନ ହୋଇଗଲେ । କବି ଦିବାକର ଦାସଙ୍କ ବର୍ଣ୍ଣନା ଅନୁସାରେ ରହସ୍ୟମୟ ଗୋପଲୀଳା ପ୍ରକାଶ କରିବା ପାଇଁ ଯେପରି ଭଗବାନ ଶ୍ରୀକୃଷ୍ଣ କବି ଜୟଦେବ ରୂପ ଧାରଣ ପୂର୍ବକ ଗୀତଗୋବିନ୍ଦ ରଚନା କରିଥିଲେ ଏବଂ ଦୁଷ୍ଟ ନିବାରଣ ଓ ସନ୍ଥପାଳନ ପାଇଁ ଦଶାବତାର ଲୀଳାକୁ ଯେପରି କମଳଲୋଚନ ବ୍ୟାସ ରୂପରେ ଅବତୀର୍ଣ୍ଣ ହୋଇ ଶାସ୍ତ୍ର ପୁରାଣରେ ପ୍ରକାଶ କରିଥିଲେ । ସେହିପରି ମହାପୁରୁଷ ଜଗନ୍ନାଥ ଦାସ ନିତ୍ୟ ରାଧାଙ୍କ ସ୍ନେହରୁ ଜନ୍ମ ହୋଇ ଭାଗବତ ପ୍ରେମ ଓ ପ୍ରେମଭକ୍ତିର ତତ୍ତ୍ୱ ବ୍ୟାଖ୍ୟା କରିଥିଲେ । ଶ୍ରୀ କିଶୋରୀ କିଶୋରଙ୍କ ଧ୍ୟାନ ଓ ପ୍ରେମଭକ୍ତିର ପ୍ରଚାର କରି ଗୋସ୍ୱାମୀ ଜଗନ୍ନାଥ ଦାସ ମକର ମାସ ଶୁକ୍ଳ ସପ୍ତମୀ ଦିନ ଅପ୍ରକଟ ହୋଇ-ଥିଲେ—

ଜଗନ୍ନାଥଙ୍କ ଦାସ ଯେଣୁ । ସେ ନାମ ଦାସ ପଦ ତେଣୁ ॥
ନିତ୍ୟରେ ଅଂଶ ରାଧା ନାମ । ସ୍ୱରୂପ ଭକ୍ତ ପୂର୍ଣ୍ଣକାମ ॥
ସେ ସତ୍ୟ ଦାସ ଜଗନ୍ନାଥ । ସ୍ୱାମୀଙ୍କି ବୋଲନ୍ତି ଜଗତ ॥
ଏ ଭକ୍ତି ପ୍ରେମ ତରଙ୍ଗିଣୀ । ବଳେ ପ୍ରାଣୀଙ୍କି ନିଏ ଟାଣି ॥
ଯେମନ୍ତେ ସମୁଦ୍ର ଲହରୀ । ପ୍ରାଣୀଙ୍କୁ ବଳେଣ ଓଟାରି ॥
ପ୍ରାଣୀଙ୍କ ଏ ପ୍ରେମ ଭକତି । ଉପଦେଶ ମାତ୍ରେ ପ୍ରାପତି ॥
ଶ୍ରୀ ମନ୍ତ୍ରରାଜ ଉପାସନ । କିଶୋରୀ କିଶୋରଙ୍କ ଧ୍ୟାନ ॥
ଏ ଭକ୍ତି ସଂସାରେ ସ୍ଥାପିଲେ । ତଦନ୍ତେ ତିରୋଧାନ ହେଲେ ॥
ଶୁକଳ ସପ୍ତମୀ ମକର । ଅପ୍ରକଟ ସେହି ଦିନର ॥

(ଜ:ଚ:, ପୃ—୩୦୬-୭)

ମହାତ୍ମା ଜଗନ୍ନାଥ ଦାସ ଷାଠିଏ ବର୍ଷ ବୟସରେ ଇହଲୀଳା ସାଙ୍ଗ କରିଥିବା ଦିବାକର ଦାସଙ୍କ ନିମ୍ନୋକ୍ତ ବର୍ଣ୍ଣନାରୁ ସୂଚିତ ହୁଏ—

ଅଷ୍ଟାଦଶ ବରଷଠାରେ । ଶ୍ରୀଚୈତନ୍ୟ ଭେଟ ହେଲେ ॥
ଷଡ଼ ବରଷ ନିରନ୍ତର । ସେବିଲେ ଚୈତନ୍ୟ ପୟର ॥
ଏ ଅନ୍ତେ ଛତିଶ ବରଷ । ପ୍ରେମ ସାଧିଲେ ଅହର୍ନିଶ ॥
ଷାଠିଏ ବର୍ଷ ବୟସରେ । ପ୍ରେମ ସ୍ଥାପି ସ୍ଥାନେ ଗମିଲେ ॥

(ଜ:ଚ:, ପୃ—୩୦୮)

ସ୍ୱରଚିତ ପଞ୍ଜିକାର ଗଣନା ଅନୁସାରେ ମହାପ୍ରଭୁଙ୍କ ଜଗନ୍ନାଥ ଦାସଙ୍କ ମହାପ୍ରସ୍ଥାନ ମକର ମାସ ଶୁକ୍ଳପକ୍ଷ ଦ୍ୱିଜାନକ୍ଷତ୍ରଯୁକ୍ତ ସପ୍ତମୀ ତିଥି ଅର୍ଥାତ୍ ୨୫-୧-୧୫୫୦ ତାରିଖ ଦିନ ଘଟିଥିଲା । ଶିଷ୍ୟମାନେ ତାଙ୍କର ମରଣଶରୀରକୁ ଭଜନ କୁଟୀରରେ ସମାଧି ଦେଇଥିଲେ । ପରବର୍ତ୍ତୀ କାଳରେ ତାଙ୍କର ମର୍ମରମୂର୍ତ୍ତି ସେଠାରେ ସ୍ଥାପନ କରାଯାଇଛି ।



# ରଚନାବଳୀ

ମହାତ୍ମା ଜଗନ୍ନାଥ ଦାସ ଜଣେ ସିଦ୍ଧ ସାଧକ ମହାପୁରୁଷ ଓ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଅନନ୍ୟ ସାଧାରଣ ଭକ୍ତ ଥିଲେ । ତାଙ୍କର ଅସାଧାରଣ ପାଣ୍ଡିତ୍ୟ ଥିଲା । ସେ ବହୁ ଶାସ୍ତ୍ରରେ ପାରଦର୍ଶୀ ଥିଲେ । ସଂସ୍କୃତ ଭାଷା ଓ ସାହିତ୍ୟ ସହିତ ଓଡ଼ିଆ ଭାଷା ଓ ସାହିତ୍ୟରେ ସେ ଜଣେ ପ୍ରବୀଣ ପଣ୍ଡିତ ଥିଲେ । ତେଣୁ ସଂସ୍କୃତ ଓ ଓଡ଼ିଆ ଭାଷାରେ ସେ ବହୁ ଗ୍ରନ୍ଥ ରଚନା କରିଥିବେ, ଏଥିରେ ସନ୍ଦେହ ନାହିଁ । କିନ୍ତୁ ଦୁର୍ଭାଗ୍ୟର କଥା, ଜଗନ୍ନାଥ ଦାସ ତାଙ୍କର ରଚନାବଳୀ ବିଷୟରେ କୌଣସି ସୂଚନା ଦେଇନାହାନ୍ତି । ଜଗନ୍ନାଥ ଦାସଙ୍କ ଜୀବନ ଓ ଜୀବନୀ ଉପରେ ଆଲୋକପାତ କରିଥିବା କବି ଦିବାକର ଦାସ, ଭକ୍ତ ରାମଦାସ, ଅଣାକାର ସଦ୍ଧିଆର ନନ୍ଦ ଦାସ ପ୍ରଭୃତି କେବଳ ଓଡ଼ିଆ ଭାଗବତ ଓ ଷୋଳ ଚଉପଦୀ ବ୍ୟତୀତ ତାଙ୍କର ଅନ୍ୟାନ୍ୟ ରଚନା ସମ୍ବନ୍ଧରେ କିଛି ଉଲ୍ଲେଖ କରିନାହାନ୍ତି । ଆଧୁନିକ ଗବେଷକ, ଆଲୋଚକ ଓ ଜୀବନୀକାରଙ୍କ ମଧ୍ୟରୁ ଯେଉଁ ବିଶେଷଜ୍ଞମାନେ ମହାପୁରୁଷ ଜଗନ୍ନାଥ ଦାସଙ୍କ ରଚନାବଳୀର ତାଲିକା ପ୍ରସ୍ତୁତ କରିଛନ୍ତି ସେମାନଙ୍କ ମଧ୍ୟରୁ ତିନିଜଣଙ୍କର ତାଲିକା ନିମ୍ନମତେ ଉଦ୍ଧାର କରାଯାଇପାରେ ।

(୧) ମହାମହୋପାଧ୍ୟାୟ ସଦାଶିବ ମିଶ୍ରଙ୍କ ପ୍ରଣୀତ 'ଅତିବଡ଼ି ଜଗନ୍ନାଥ ଦାସ ଗୋସ୍ୱାମୀ' ପୁସ୍ତକରେ ଜଗନ୍ନାଥ ଦାସଙ୍କ ରଚନାବଳୀର ତାଲିକା ନିମ୍ନମତେ ଉଲ୍ଲେଖ ଅଛି—

(କ) ସଂସ୍କୃତ ଗ୍ରନ୍ଥ – (୧) ଶ୍ରୀକୃଷ୍ଣ ଭକ୍ତି କଳ୍ପଲତା, (୨) ଶ୍ରୀକୃଷ୍ଣଭକ୍ତିଲତା ଫଲମ୍, (୩) ନିତ୍ୟଗୁପ୍ତମାଳା, (୪) ଉପାସନା ଶତକମ୍, (୫) ପ୍ରେମସୁଧାମ୍ବୁଧିଃ, (୬) ନିତ୍ୟାଷ୍ଟରସ ଦୀକ୍ଷା-ସହିତୋପାସନାବିଧିଃ, (୭) ଶ୍ରୀରାଧା ରସମଞ୍ଜରୀ ଓ (୮) ନୀଳାଦ୍ରି ଶତକମ୍ ।

(ଖ) ଓଡ଼ିଆ ଗ୍ରନ୍ଥ—(୧) ଷୋଳ ଚଉପଦୀ (୨) ଶୈବାଗମ ଭାଗବତ (୩) ସପ୍ତାଙ୍ଗ ବର୍ଣ୍ଣନା (୪) ଗୁଣ୍ଡିଚ୍ଚାବିଜେ (୫) ଗୋଲକ ସରୋଦ୍ଧାର, (୬) ଶ୍ରୀମଦ୍-ଭାଗବତ (୭) ତୁଳାଭିଣା (୮) ରାଧାକୃଷ୍ଣ ମହାମନ୍ତ୍ର ଚନ୍ଦ୍ରିକା (୯) ଅଦ୍‌ଭୁତ

ଚନ୍ଦ୍ରିକା (୧୦) ମାଲାଦ୍ରି ଚନ୍ଦ୍ରିକା, (୧୧) ପୂର୍ଣ୍ଣାମୃତ ଚନ୍ଦ୍ରିକା ଓ (୧୨) ରସକଲ୍ପ ଚନ୍ଦ୍ରିକା ।

(୨) ଜଗବନ୍ଧୁ ସିଂହଙ୍କ 'ପ୍ରାଚୀନ ଉତ୍କଳ' ଗ୍ରନ୍ଥରେ (୧) ଅର୍ଥକୋଇଲି (୨) ଫୁଲତୋଳା ଚଉତିଶା (୩) ଦୃଢ଼ାବୋଧ (୪) ଶ୍ରୀପ୍ରସଙ୍ଗ (୫) ତୁଳାଭିଣା (୬) ପାଷଣ୍ଡଦଳନ (୭) ଗଜନସ୍ତୋରଣ (୮) ଶ୍ରୀମଦ୍ ଭାଗବତ (୯) ଜଗନ୍ନାଥ କାଣିକା (୧୦) ଧ୍ରୁବସ୍ତୁତି ଓ (୧୧) ମନଃଶିକ୍ଷା, ଜଗନ୍ନାଥ ଦାସଙ୍କ ରଚନା ବୋଲି ଉଲ୍ଲେଖ କରାଯାଇଛି ।

(୩) ପଣ୍ଡିତ ସୂର୍ଯ୍ୟନାରାୟଣ ଦାସଙ୍କ ପ୍ରଣୀତ 'ଓଡ଼ିଆ ସାହିତ୍ୟର ଇତିହାସ' ଗ୍ରନ୍ଥରେ (୧) ଦହିଖେଳ (୨) ବୋଲେ ହୁଁ ଗୀତ (୩) ଗୁପ୍ତ ଭାଗବତ (୪) ଦାରୁବ୍ରହ୍ମଗୀତା (୫) ମୃଗୁଣୀସ୍ତୁତି (୬) ଇତିହାସ ପୁରାଣ ଓ (୭) ମହାଭାରତ ଗ୍ରନ୍ଥ ଜଗନ୍ନାଥ ଦାସଙ୍କ ରଚନା ବୋଲି ସୂଚିତ ହୋଇଛି ।

ପୂର୍ବୋକ୍ତ ତିନୋଟି ତାଲିକା ବ୍ୟତୀତ ରାୟବାହାଦୁର ଚନ୍ଦ୍ରମଣି ଆଚାର୍ଯ୍ୟ ତାଙ୍କ 'ଭକ୍ତକବି ଜଗନ୍ନାଥ ଦାସ' ପୁସ୍ତକରେ ରାମାୟଣ ଓ ମହାଭାରତ ଏବଂ 'ଶ୍ରୀକୃଷ୍ଣ ଭକ୍ତିଲତା ଫଳ'ର ସମ୍ପାଦକ ପଣ୍ଡିତ କୁଳମଣି ମିଶ୍ର 'ଜଗନ୍ନାଥ ଚରିତା-ମ୍ଭୋଧିତରଣୀ' ଶୀର୍ଷକ ପୁସ୍ତକ ଜଗନ୍ନାଥ ଦାସ ରଚନା କରିଥିଲେ ବୋଲି ମତ ପ୍ରକାଶ କରିଛନ୍ତି । କେବଳ ଏତିକି ନୁହେଁ, 'ନିତ୍ୟଗୁପ୍ତ ଚୂଡ଼ାମଣି' ଓ 'ମାଲାଦ୍ରି ବିଳାସ' ନାମରେ ଦୁଇଖଣ୍ଡ ସଂସ୍କୃତ ଗ୍ରନ୍ଥ ଏବଂ ଗୁପ୍ତଗୀତା, ନାମଚନ୍ଦ୍ରିକା, ଭଗବଦ୍‌ଗୀତା, ପରିଚୟ ବୋଧିନୀ, ଅଲପୁଆ ଭାଗବତ, ରାସକ୍ରୀଡ଼ା, ନିତ୍ୟରହସ, ଶ୍ରୀକୃଷ୍ଣ ଜନ୍ମାଷ୍ଟମୀ, ପଦ୍ମକଳ୍ପଟୀକା ପ୍ରଭୃତି ଓଡ଼ିଆ ଗ୍ରନ୍ଥ ଜଗନ୍ନାଥ ଦାସ ରଚନା କରିଥିବାର ସୂଚନା ମିଳେ ।

ମହାପୁରୁଷ ଜଗନ୍ନାଥ ଦାସ ଓଡ଼ିଆ ଭାଗବତ ବ୍ୟତୀତ କେତେକ ସଂସ୍କୃତ ଓ ଓଡ଼ିଆ ଗ୍ରନ୍ଥ ନିଜେ ବା ଶିଷ୍ୟଙ୍କ ମାଧ୍ୟମରେ ଲେଖିଥିବା କଥା ଅସ୍ୱୀକାର କରି ନ ହେଲେ ବି ତାଲିକାଭୁକ୍ତ ସମସ୍ତ ଗ୍ରନ୍ଥ ଯେ ତାଙ୍କର ରଚନା ତାହା ଏପର୍ଯ୍ୟନ୍ତ ନିର୍ଦ୍ଦିଷ୍ଟ ରୂପେ ପ୍ରମାଣିତ ହୋଇନାହିଁ । କେତେକ ଆଲୋଚକ ଜଗନ୍ନାଥ ଦାସଙ୍କ ରଚିତ ଷାଠିଏ ଖଣ୍ଡ ଗ୍ରନ୍ଥର ତାଲିକା ପ୍ରସ୍ତୁତ କରିଥିବାର ଦେଖାଯାଏ । ଉପଯୁକ୍ତ ତାଲିକା ଭୁକ୍ତ ଗ୍ରନ୍ଥଗୁଡ଼ିକ ମଧ୍ୟରୁ ଏକ ଗ୍ରନ୍ଥ ଏକାଧିକ ନାମରେ ଉଲ୍ଲେଖ ଥିବାର ସ୍ପଷ୍ଟ ପ୍ରମାଣ ମିଳେ । ମହାତ୍ମା ଜଗନ୍ନାଥ ଦାସଙ୍କ ପରେ ଜଗନ୍ନାଥ ଦାସ ନାମଧାରୀ ବହୁ କବି କୋବିଦ ଜନପ୍ରିୟ ଭାଗବତ ବୃତ୍ତରେ ବହୁ ଗ୍ରନ୍ଥ ରଚନା କରିଯାଇଥିବାର ଦେଖାଯାଏ । ତେଣୁ ଜଗନ୍ନାଥ ଦାସଙ୍କ ରଚନାବଳୀର ସାମଗ୍ରିକ ଅନୁଶୀଳନ ବିନା କେଉଁ ଗ୍ରନ୍ଥ ମହାପୁରୁଷ ଜଗନ୍ନାଥ ଦାସଙ୍କ ରଚନା ତାହା ନିର୍ଦ୍ଧାରଣ କରିବା

ସହଜ ବ୍ୟାପାର ନୁହେଁ । ତଥାପି ବନ୍ଧୁ ବିଶିଷ୍ଟ ଆଲୋଚକଙ୍କ ଦ୍ୱାରା ଗୃହୀତ ତାଙ୍କ ରଚନାବଳୀ ମଧ୍ୟରୁ ଅଳ୍ପ କେତୋଟି ଗ୍ରନ୍ଥ ବିଷୟରେ ନିମ୍ନମତେ ସୂଚନା ଦିଆଯାଇ ପାରେ—

୧ । ମହାଭାରତ—

ଭାଗବତ ବାଣୀ ଅର୍ଥାତ୍ ନବାକ୍ଷରୀ ବୃତ୍ତରେ ରଚିତ ଅଠର ପର୍ବ ବିଶିଷ୍ଟ ମହାଭାରତ ଗ୍ରନ୍ଥଟି ପର୍ବସଂଖ୍ୟାର ନାମକରଣ, ବିଷୟବସ୍ତୁ ସଂଯୋଜନ, ସୃଷ୍ଟି ପ୍ରକରଣ, ଚରିତ୍ର ଚିତ୍ରଣ ପ୍ରଭୃତି ଦୃଷ୍ଟିରୁ ବିଚାର କଲେ ଏହାକୁ ସାରଳା ମହାଭାରତର ଏକ ସଂକ୍ଷିପ୍ତସାର ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ନିମ୍ନରେ ସେଥିରୁ କେତୋଟି ପଙ୍‌କ୍ତି ଉଦାହରଣ ସ୍ୱରୂପ ଉଦ୍ଧାର କରାଯାଇ ପାରେ—

ସନ୍ତାପ୍ୟ ବିଦୁର ଯେ ଅନ୍ଧ । ମିଳିଲେ ଭୀଷ୍ମଙ୍କ ସନ୍ନିଧି ॥
ଭୀଷ୍ମଙ୍କୁ କହେ ଧୃତରାଷ୍ଟ୍ର । ମୋର ପୁତ୍ରଙ୍କୁ ଦେଲୁ କଷ୍ଟ ॥
ମୂଳ ହାଣିଲୁ ବୃକ୍ଷେ ତୋଳି । ଭରସା କଲୁ ବଡ଼ ବୋଲି ॥

× × ×

ଭୀଷ୍ମ ବୋଇଲେ କୁରୁନାଥେ । ଶଯ୍ୟା ଗୋଟିଏ ଦିଅ ମୋତେ ॥
ସୁପାତ ଶେଯ ରାଜା ଦେଲ । ଭୀଷ୍ମଙ୍କୁ ତହିଁ ଶୁଆଇଲ ॥
ଭୀଷ୍ମ ବୋଇଲେ ଏ ନୁହଇ । ଶର ଶଯ୍ୟାଏ ଦିଅ ରୁହି ॥
ଯେ ଜାଣେ ମନ ଭେଦ ବାଣ । ସେହି ଯୋଦ୍ଧାକୁ ଏଥେ ଆଣ ॥
ନୃପତି କହେ ପାର୍ଥ ଜାଣେ । ଅର୍ଜୁନ ନମିଲ ତକ୍ଷଣେ ॥
ଭୀଷ୍ମ ବୋଇଲେ ହେ କିରୀଟି । ନିର୍ମାଣ ଶରଶଯ୍ୟା ଗୋଟି ॥
ଅଠର ଦିନ ଏଥେ ଥିବି । ଭାରତ ନୟନେ ଦେଖିବି ॥

(ଭୀ:ଜ, ପୃ—୨୭)

× × ×

ଓଷ୍ଟ କାମୋଡ଼ି ଦ୍ରୋଣସୁତ । ରୁ ସୃଷ୍ଟି କରୁ ଆତଯାତ ॥
ତୋର ମାୟାରେ ଦୟାନିଧି । ଆଜ ମାରିବି ଶତ୍ରୁ ସାଧି ॥
କାଢିଣ ଗୋଟିଏ ତଶଲ । ଧନୁ ଫାଳକୁ ଗୁଣକଲ ॥
ଅଗ୍ର ଶର କର ପେଶିଲ । ପର୍ଶୁରାମ ମନ୍ତ୍ର ପଢ଼ିଲ ॥

× × ×

ଯାଜ ନଗ୍ରେ କଲେ ବିଜୟେ । ଦର୍ଶନେ ଚଳିଲେ ପ୍ରଜାଏ ॥
ବଣିକ ହରସାହୁ ନାମେ । ଦର୍ଶନ କଲେ ଦେବଧର୍ମେ ॥

କହଇ ଯୁଧିଷ୍ଠି ଅଗ୍ରତେ । ମୋ ଦେବ କନ୍ୟା ଦେବି ତୋତେ ॥
ସୁହାସିନୀ ଦୁହିତା ମୋର । ବିଭାରବେଳେ ମୁଣ୍ଡୁ ତାର ॥
ଗଣକ କହୁଛି ଆମ୍ଭଙ୍କୁ । ଯମ ଭୟେ ଦେବ ତୁମ୍ଭଙ୍କୁ ॥

(ମ:ଜ:, ପୃ—୭୨,୭୩)

ଜଗନ୍ନାଥ ଦାସଙ୍କ ନାମରେ ଭଣିତ ଏହି ମହାଭାରତ କଟକର ଖଟ୍‌ବିନ୍ ସାହିବାସୀ ଭିକାରିଚରଣ ଦାସଙ୍କ ଦ୍ୱାରା ପ୍ରକାଶିତ ହୋଇଥିବାର ଜଣାଯାଏ । କିନ୍ତୁ ଆଲୋଚକମାନେ ଭାଷା, ବିଷୟବସ୍ତୁ ପ୍ରଭୃତି ବିଚାର କରି ଏହା ମହାତ୍ମା ଜଗନ୍ନାଥ ଦାସଙ୍କ ରଚନା ନୁହେଁ ବୋଲି ମତବ୍ୟକ୍ତ କରିଛନ୍ତି । ପୁଣି ଅନେକ ଗବେଷକ ଜଗନ୍ନାଥ ଦାସଙ୍କ ରାମାୟଣ କଥା ଉଲ୍ଲେଖ କରିଥିଲେ ମଧ୍ୟ ତାହା ଏପର୍ଯ୍ୟନ୍ତ ଲୋକଲୋଚନକୁ ଆସି ନାହିଁ । ତେଣୁ ସେ ବିଷୟରେ ଆଲୋକପାତ କରିବାର ଅବକାଶ ଏଠାରେ ନାହିଁ ।

୨ । ଗୁପ୍ତ ଭାଗବତ—

ଶ୍ରୀମଦ୍‌ଭାଗବତ ପରି ଏହି ଗ୍ରନ୍ଥଟି ଶୁକ ଓ ପରୀକ୍ଷିତଙ୍କ ପ୍ରଶ୍ନୋତ୍ତର ମାଧ୍ୟମରେ ପ୍ରଣୀତ ହୋଇଛି । ଏହା ଚବିଶ ଅଧ୍ୟାୟ ଓ ୩୬୮ ପଦରେ ବିଭକ୍ତ । ଏଥିରେ ବ୍ରହ୍ମ ଜନ୍ମ, ସୃଷ୍ଟିତତ୍ତ୍ୱ, ଏକାଦଶୀ ମାହାତ୍ମ୍ୟ, ବ୍ୟାସ ଓ ଶୁକଦେବଙ୍କ ଜନ୍ମବୃତ୍ତାନ୍ତ ପ୍ରଭୃତି ବିଷୟ ବର୍ଣ୍ଣନା କରାଯାଇଥିବାର ଦେଖାଯାଏ । ଗୁପ୍ତ ଭାଗବତର ଅନ୍ୟ ନାମ 'ବ୍ୱେରିଚବିଶ' । ଭାଗବତର ବିଭିନ୍ନ ସ୍କନ୍ଧ ଅନ୍ତର୍ଗତ ବିଷୟବସ୍ତୁ ଏଥିରେ ସନ୍ନିବେଶିତ ହୋଇଥିବାରୁ ଅଥବା ଜଗନ୍ନାଥ ଦାସ ନାମଧାରୀ ପରବର୍ତ୍ତୀ କବିଙ୍କ ଦ୍ୱାରା ଏହା ରଚିତ ହୋଇଥିବାରୁ ଗ୍ରନ୍ଥଟିର ନାମକରଣ ସମ୍ଭବତଃ ଏପରି କରା-ଯାଇଥିବାର ମନେହୁଏ । ନିମ୍ନରେ ଏହାର କେତୋଟି ପଂକ୍ତି ଉଦାହରଣ ସ୍ୱରୂପ ଉଲ୍ଲେଖ କରାଯାଇପାରେ—

ବନ୍ଦଇ ପାର୍ବତୀ ତନୟ । ଏକ ଦନ୍ତ ଯେ ମହାକାୟ ॥
ଭକତ ପ୍ରିୟ ଗଜମୁଖ । ହରନ୍ତି ଦୀନଜନ ଦୁଃଖ ॥
ଗଣ୍ଡମଣ୍ଡଳୁ ମଧୁ କ୍ଷରେ । ତା' ଲୋଭେ ପଡନ୍ତି ଭ୍ରମରେ ॥
ପାଶ ଅଙ୍କୁଶ ବେନିକର । ଅତି ସୁନ୍ଦର ଲମ୍ବୋଦର ॥
ମୁଁ ହୀନ ଜଗନ୍ନାଥ । ଶରଣ ତୋ' ପାଦ ସାରଥ ॥
ତୋର କୃପାରେ ଗଣପତି । ଲେଖିଲି ଭାଗବତ ପୋଥି ॥
ତହିଁର ସାର ଏ ଚବିଶ । ସୁଜନ ହୁତେ ଗଣ ଈଶ ॥
ଲେଖିବି ବିସ୍ତରି ଛନ୍ଦେ । ସନ୍ତୋଷ ହେବେ ସାଧୁ ସନ୍ଥେ ॥

(ପ୍ରଥମ ଅଧ୍ୟାୟ—ପୃ, ୧)

× × ×

ଶୁକ ଚରଣେ କର ଦେଇ । ଆନନ୍ଦେ ରାଜା ପଚାରଇ ॥
ହେ ମହାମୁନି ସାବଧାନ । କହ ପରମ ତତ୍ତ୍ୱ ଜ୍ଞାନ ॥
ଗୁପ୍ତ ରହସ୍ୟ ଯେ ଅଟନ୍ତି । କହିବା ମୋତେ ମହାମତି ॥
ଚବିଶ ତିଥି ଏକାଦଶୀ । କହ ହେ ଏ ଜ୍ଞାନ ବିଶେଷି ॥
କଲେ କେଉଁ ଧର୍ମ ହୁଅଇ । ନ କଲେ କି ପାପ ଲଭଇ ॥
ଏଥି ରହସ୍ୟ ମୋତେ କହ । ମନରୁ ଫିଟିବ ସନ୍ଦେହ ॥

(ଦ୍ୱିତୀୟ ଅଧ୍ୟାୟ; ପୃ-୬)

× × ×

ଜ୍ଞାନୀ ବୋଲଇ ମନ ଶୁଣ । ଏ ଗୀତ ପ୍ରେମ ରସାୟନ ॥
ସପତ ଦିନ ଦ୍ୱିପ୍ରହରେ । ପୂର୍ଣ୍ଣ ବଢ଼େ ଗଙ୍ଗାତୀରେ ॥
ପରୀକ୍ଷ ବଇକୁଣ୍ଠ ବାସୀ । ଯେ ଯା ଆସ୍ଥାନେ ଗଲେ ଋଷି ॥
ବୋଲଇ ଜଗନ୍ନାଥ ଦାସ । ସାଧୁ କରିବେ ପୀତବାସ ॥
ସୁଜନେ ଏଥେ ରସ ମାତି । ଶ୍ରୀଗୁରୁ ସେବି ପଶ ଏଥି ॥
ସୁଜନେ ମୋ ଦୋଷ ନଧର । ସାଧୁ କରିବେ ଚକ୍ରଧର ॥

(ଚତୁର୍ବିଂଶ ଅଧ୍ୟାୟ, ପୃ-୯୫)

ଗୁପ୍ତ ଭାଗବତକୁ ଭାଗବତର ଚତୁର୍ଦ୍ଦଶ ସ୍କନ୍ଧ ନାମରେ ନାମିତ କରାଯାଇଛି । ଗୁପ୍ତରେ ଥିବା ଏହି ଗ୍ରନ୍ଥକୁ ପରେ ପ୍ରକାଶ କରାଯାଇ ଥିବାରୁ ଏବଂ ଏଥିରେ ରାଧାଙ୍କ ପ୍ରସଙ୍ଗ (୧୦-୧୧ ଅଧ୍ୟାୟ) ବିସ୍ତୃତ ବର୍ଣ୍ଣିତ ହୋଇଥିବାରୁ ଏହାକୁ କଦାପି ଜଗନ୍ନାଥ ଦାସଙ୍କ ରଚନା ରୂପେ ଗ୍ରହଣ କରାଯାଇ ପାରିବ ନାହିଁ ବୋଲି ଆଲୋଚକମାନେ ସ୍ପଷ୍ଟ ଭାବେ ଘୋଷଣା କରିଛନ୍ତି ।

୩ । ତୁଳାଭିଣା—

ଦେବୀ ପାର୍ବତୀ ଓ ଈଶ୍ୱରଙ୍କ ପ୍ରଶ୍ନୋତ୍ତର କ୍ରମେ ଦ୍ୱାଦଶ ଅଧ୍ୟାୟ ବିଶିଷ୍ଟ ଏହି ଗ୍ରନ୍ଥରେ ସୃଷ୍ଟିତତ୍ତ୍ୱ, ବ୍ରହ୍ମଜ୍ଞାନ, ଶରୀରତତ୍ତ୍ୱ ଓ ଭାଗବତ ପ୍ରସଙ୍ଗରେ ବ୍ୟାଖ୍ୟା କରାଯାଇଛି । ବର୍ଣ୍ଣନୀୟ ବିଷୟଗୁଡ଼ିକୁ ପ୍ରଥମେ ପଦ୍ୟରେ ଓ ପରେ ପରେ ଗଦ୍ୟରେ ତାହାର ଅର୍ଥକୁ ବୁଝାଇ ଦିଆଯାଇଛି । ଉଦାହରଣ ସ୍ୱରୂପ ନିମ୍ନମତେ କେତୋଟି ପଙ୍‌କ୍ତି ଉଦ୍ଧାର କରାଯାଇ ପାରେ—

ପୁଣି ପାର୍ବତୀ ପଚାରଇ । ଈଶ୍ୱର ପାଦେ ଚିତ୍ତ ଦେଇ ।
ଏ ବଡ଼ ରହସ୍ୟ ମୋ ମନ । କହ ହେ ପ୍ରଭୁ ତ୍ରିଲୋଚନ ॥

ସକଳ ମନ୍ତ୍ର ତୀର୍ଥ ଜ୍ଞାନ । ହୋଇଲା ଶୂନ୍ୟ ଏ ପ୍ରମାଣ ॥

× × ×

ଯେତେ କହିଲି ଗୋ ପାର୍ବତୀ । ସମସ୍ତେ ଶୂନ୍ୟରେ ଅଛନ୍ତି ॥
ପବନ ଆସୁଛି ଯାଉଛି । ପବନ ସର୍ବ କରୁଅଛି ॥
ପବନ ଶୂନ୍ୟ ପରକାଶ । କହଇ ଜଗନ୍ନାଥ ଦାସ ॥

(OSM—Cy.No.1099, ପୃ—୨୫)

× × ×

ଶୁଣିଲୁ ମୋର ପ୍ରିୟତମା । ତୋତେ କହିଲୁ କୁଳାଙ୍ଗଣା ॥
ଏ ବ୍ରହ୍ମ ବାକ୍ୟ ମନେ ଧର । ସୁଖେ ତରିବୁ ଗୋ ସୁନ୍ଦରୀ ॥
ବଖ୍ୟାତ ନ କରିବୁ ତୁହି । ଆମ୍ଭ ଚରଣ ଥାଅ ଛୁଇଁ ॥
ଯଦି ଲୋକେ ପ୍ରକାଶିବୁ । ଅବଶ୍ୟ ସ୍ୱାମୀଦ୍ରୋହୀ ହେବୁ ॥
ଶୁଣି ପାର୍ବତୀ ହେଲେ ତୋଷ । କହିଲେ ଜଗନ୍ନାଥ ଦାସ ॥
ଖେଳ ସଜାଡ଼ି ତୋଷ ହେଲେ । ଦାସଙ୍କୁ ଶିକ୍ଷାଗୁରୁ କଲେ ॥

(OSM—Cy.No.1099, ପୃ—୪୨)

ଉଦ୍ଧୃତ ପଦ୍ୟର ଅର୍ଥକୁ ଗଦ୍ୟରେ ଉଲ୍ଲେଖ କରାଯାଇଛି । ଗଦ୍ୟର ଭାଷାର ଯାହା ହେଉନା କାହିଁକି ତାହାର ପ୍ରତିପାଦ୍ୟ ବିଷୟ ଓ ରଚନା ଶୈଳୀ ବୌଦ୍ଧ ପ୍ରଜ୍ଞାପାରମିତା ସୂତ୍ରର ଅନୁକୃତି ପରି ମନେ ହୁଏ । ପ୍ରସିଦ୍ଧ ଗ୍ରନ୍ଥ, 'ରୁଦ୍ରସୁଧାନିଧି'ର ଗଦ୍ୟ ସହିତ ଏହାର ସମ୍ପର୍କ ମଧ୍ୟ ସ୍ଥାପନ କରାଯାଇ ପାରେ ।

୪ । ଦାରୁ ବ୍ରହ୍ମଗୀତା—

ଶ୍ରୀପୁରୁଷୋତ୍ତମ କ୍ଷେତ୍ରର ଇତିହାସ ଓ ଦାରୁବ୍ରହ୍ମ ଜଗନ୍ନାଥଙ୍କ ମାହାତ୍ମ୍ୟକୁ ନେଇ ଏହି ଗ୍ରନ୍ଥ ନବାକ୍ଷରୀ ବୃତ୍ତରେ ଓ ତିନୋଟି ଅଧ୍ୟାୟରେ ରଚିତ ହୋଇଛି । ଗଜପତି ପୁରୁଷୋତ୍ତମ ଦେବଙ୍କ (୧୪୬୭-୧୪୯୭—ଖ୍ରୀଷ୍ଟାବ୍ଦ) ନାମରେ ଭଣିତ 'ମୁକ୍ତି ଚିନ୍ତାମଣି' ଶୀର୍ଷକ ସଂସ୍କୃତ ଗ୍ରନ୍ଥର ଅନୁକରଣରେ ଏହା ରଚନା କରାଯାଇ ଥିବାର ମନେ ହୁଏ । ଏହାର କେତୋଟି ପଦ ଉଦାହରଣ ସ୍ୱରୂପ ନିମ୍ନରେ ଉଲ୍ଲେଖ କରାଯାଇପାରେ—

ନାମ ତା ପୁରୁଷୋତ୍ତମ । ସର୍ବ କ୍ଷେତ୍ରରୁ ସେ ଉତ୍ତମ ॥
ଦକ୍ଷିଣ ସମୁଦ୍ରର ତୀର । ନାମ ତାହାର ସ୍ୱର୍ଗଦ୍ୱାର ॥
ନୀଳ ସୁନ୍ଦର ନାମେ ବନ । ଅଛଇ ଶୁଣ ହେ ସ୍ୱଜନ ॥

ତହିଁରେ ଅଛଇ ସବୁଛନ୍ଦେ । ସୁନ୍ଦର ଗିର ଯଥା ଅର୍ଥେ ॥
ବଲ୍ଲୀ ତା ଗୁପତେ ଭୂଆଇ । ଜନେ ମୂକତ ଦେବା ପାଇଁ ॥
(ପୃ—୮)

୫ । ଅର୍ଥ କୋଇଲି—

କବି ମାର୍କଣ୍ଡ ଦାସଙ୍କ ପ୍ରଣୀତ 'କେଶବ କୋଇଲି' ଓଡ଼ିଶାର ଏକ ଲୋକପ୍ରିୟ କବିତା । ବାତ୍ସଲ୍ୟ ରସାତ୍ମକ ଏହି କବିତାର ଆଧ୍ୟାତ୍ମିକ ବ୍ୟାଖ୍ୟା ହେଉଛି ଅର୍ଥ କୋଇଲି । ଅର୍ଜୁନ ଓ ଶ୍ରୀକୃଷ୍ଣଙ୍କ ଉକ୍ତିପ୍ରତ୍ୟୁକ୍ତି କ୍ରମେ ଜୀବନ, ମୃତ୍ୟୁ, ଦେହ, ଆତ୍ମାଦିର ପାରସ୍ପରିକ ସମ୍ପର୍କ ସମ୍ବନ୍ଧୀୟ ତତ୍ତ୍ୱ ପ୍ରକାଶନ ଅର୍ଥ କୋଇଲିର ମୁଖ୍ୟ ପ୍ରତିପାଦ୍ୟ ବିଷୟ । ଚଉଦଅକ୍ଷରୀ ବୃତ୍ତରେ ରଚିତ ଏହାର କେତୋଟି ପଙ୍‌କ୍ତି ଉଦାହରଣ ସ୍ୱରୂପ ଉଦ୍ଧାର କରାଯାଇପାରେ—

ଅର୍ଜୁନ ବୋଇଲେ ତୁମେ ଶୁଣ ମହାବାହୁ ।
ପୁଚ୍ଛିବି କଥାଏ ପ୍ରଭୋ ମୋତେ ଆଜ୍ଞା ହେଉ ॥
କେଶବ କୋଇଲି ନାଥ କାହାକୁ ଯେ କହି ।
ଏହା ମୋତେ ଶ୍ରୀହରି ପ୍ରସନ୍ନେ ଦେବା କହି ॥

× × ×

ପାର୍ଥର ବଚନେ ଯେ ବୋଲନ୍ତି ଭଗବାନ ।
ଉତ୍ତମ କଥାଏ ପାର୍ଥ ପଚାରିଲୁ ପୁଣ ॥
କୋଇଲି ବୋଲିଣ ପାର୍ଥ ଜୀବକୁଟି କହି ।
ସେହି ଜୀବ ମୁହିଁ ଜାଣ ସବନ ଅଛଇ ॥
ଆପେ ଆସିଥିଲା ଜୀବ ଆପେ ଚଳିଗଲା ।
ସେହି ପୁଅ ଗୋଟି ଆଉ ବାହୁଡ଼ି ନଇଲା ॥
ଏହି ପୁଅ ଗୋଟି ଯହୁଁ ବାହୁଡ଼ି ନଇଲା ।
ଗୋପର ସ୍ୱରୂପ ପିଣ୍ଡ ପଡ଼ିଣ ରହିଲା ॥ (ପୃ—୯)

× × ×

ଅର୍ଜୁନ ପଚାରିଲେ ଶ୍ରୀହରି ଅର୍ଥ କଲେ ।
ଜଗନ୍ନାଥ ଦାସ ଏହା ପୁରାଣେ କହିଲେ ॥
କେଶବ କୋଇଲି ଅର୍ଥ ବ୍ରହ୍ମଜ୍ଞାନ ସାର ।
ଲବଣୀ ସାଗରୁ ଏ ଯେ ହୋଇଛି ବାହାର ॥
ସାଧୁଜନମାନେ ମୋର ନ ଧରିବ ଦୋଷ ।
ଶ୍ରୀମୁଖରେ ଆଜ୍ଞା ଯାହା ଦେଲେ ପୀତବାସ ॥ (ପୃ—୧୦)

୬ । ବୃତ୍ତବୋଧ—

ଶ୍ରୀରାଧାକୃଷ୍ଣ ଚରିତାତ୍ମକ ଏହି କ୍ଷୁଦ୍ର ପୁସ୍ତକଟି ଚଉଦ ଅକ୍ଷରୀ ବୃତ୍ତରେ ରଚିତ । ଏଥିରେ ଜଗନ୍ନାଥ ଦାସ ବୈଷ୍ଣବ ଦୀକ୍ଷା ଗ୍ରହଣ ପ୍ରସଙ୍ଗ ସହିତ ନିଜ ବିଷୟରେ ସୂଚନା ଦେଇଛନ୍ତି—

ବିପ୍ରକୁଳେ ଜନ୍ମ ହୋଇ କିଛି ନ ଜାଣଇ ।
ଅତିବଡ଼ ବୋଲିଣ ଚୈତନ୍ୟ ଚନ୍ଦ୍ର କହି ॥
ଜଗନ୍ନାଥ ଦାସ ବୋଲି ନାମ ମୋର ହେଲା ।
ସଦ୍‌ଗୁରୁ କୃପାରେଣ ସନ୍ଦେଶ ଫିଟିଲା ॥

(ମ:ଜ:, ପୃ—୬୭)

୭ । ଗଜସ୍ତୁତି—

କରୁଣ ରସାତ୍ମକ ଏହି କ୍ଷୁଦ୍ର ପୁସ୍ତକଟି ଜନସାଧାରଣଙ୍କ ହୃଦୟରେ କରୁଣା ଓ ଭଗବଦ୍ ଭକ୍ତି ଭାବର ସଞ୍ଚାର ପାଇଁ ରଚିତ ହୋଇଛି । ଏହା ଗଜ ନିସ୍ତାରଣ, ଗଜ ଉଦ୍ଧାରଣ, ଗଜୋଦ୍ଧାରସ୍ତୁତି ଆଦି ବିଭିନ୍ନ ନାମରେ ଅଭିହିତ । ଏଥିରେ ବିଶ୍ୱାସଘାତକ ଓ କୃତଘ୍ନ କୁମ୍ଭୀରର ଆକ୍ରମଣରେ ବିପଦାପନ୍ନ ଗଜ ନିଜର ପ୍ରାଣରକ୍ଷା ପାଇଁ ବ୍ୟାକୁଳ ହୋଇ ଭଗବାନଙ୍କୁ ପ୍ରାର୍ଥନା କରିବା ଏବଂ ଲକ୍ଷ୍ମୀଙ୍କ ସହିତ ପଶା ଖେଳରେ ନିମଗ୍ନ ନାରାୟଣ ସୁଦର୍ଶନ ଚକ୍ର ପଠାଇ ନକ୍ରର ଶିର ଛେଦନ ଓ ଗଜକୁ ଉଦ୍ଧାର କରିବା ପ୍ରସଙ୍ଗ ବର୍ଣ୍ଣିତ ହୋଇଛି । ଶ୍ରୀଭାଗବତର ଅଷ୍ଟମସ୍କନ୍ଧ (୪-୨-୩) ଅନ୍ତର୍ଗତ ଆଲେଚ୍ୟ ସ୍ତୁତିରେ ଗଜର ଆକୁଳ ନିବେଦନ ଉପରି ବର୍ଣ୍ଣନା କରାଯାଇଛି ତା'ର ଉଦାହରଣ ସ୍ୱରୂପ କେତୋଟି ପଙ୍‌କ୍ତି ନିମ୍ନମତେ ଉଦ୍ଧୃତ ହେଲା—

ମୁନି ବ୍ରହ୍ମ ରୁଦ୍ରାଦି । ଆତଙ୍କ କାଳେ ଭବଗ୍ରାହୀ ॥
ଅବଶ୍ୟ ରଖନ୍ତି ଗୋସାଇଁ । ଏଥୁଁ ଆତଙ୍କ ଆଉ ନାହିଁ ॥

× × ×

ଏମନ୍ତ ମନେ ବିଚାରିଲା । ଜଗନ୍ନାଥଙ୍କୁ ଚିନ୍ତା କଲା ॥
ରଖ ହେ ଦେବକୀ ନନ୍ଦନ । ରଖ ହେ ଶ୍ରୀମଧୁସୂଦନ ॥
ରଖ ହେ ଦେବ ଦଇତାରି । କୁମ୍ଭୀର ପାଟିରୁ ନିସ୍ତାରି ॥
ତୁମ୍ଭେ ତ ନ ରଖିବ ଯେବେ । ନିଶ୍ଚୟ ଗଜ ମଲା ତେବେ ॥

× × ×

ଦୃଷ୍ଟିରେ ତୋତେ ଦେଖି ନାହିଁ । ଶୁଣୁ ମୋ କର୍ଣ୍ଣେ କହ ନାହିଁ ॥
ମୁନିଏ କହୁଛନ୍ତି ମୋତେ । ଆତଙ୍କ କାଳେ ଜଗନ୍ନାଥେ ॥
ଆତଙ୍କ ନାଶନ ତୋ ବାନା । ବାରେ ହୁଅ ତୁ ବନ୍ଧୁସେହ୍ନା ॥
ଶରଣ ରକ୍ଷଣ ମୁରାରି । ବାରେକ ନେବାକ ଉଦ୍ଧାରି ॥
ଗୋବିନ୍ଦ ଗୋବିନ୍ଦ ଗୋସାଇଁ । ତୋ ବିନୁ ଅନ୍ୟ ଆଶ୍ରା ନାହିଁ ॥

୮ । ମୃଗୁଣୀସ୍ତୁତି—

ଏହି କ୍ଷୁଦ୍ରାକାର ପୁସ୍ତିକାରେ ବିପନ୍ନା ଗର୍ଭବତୀ ହରିଣୀର ଆକୁଳ ପ୍ରାର୍ଥନା ଶୁଣି ଭଗବାନ ତାକୁ ଉଦ୍ଧାର କରିଥିବା ପ୍ରସଙ୍ଗ ବର୍ଣ୍ଣନା କରାଯାଇଛି । ଲୋକପ୍ରିୟ ଗଜସ୍ତୁତି ପରି ମୃଗୁଣୀ ସ୍ତୁତି ମଧ୍ୟ ଜନସାଧାରଣଙ୍କ ହୃଦୟରେ କରୁଣା ଓ ଭକ୍ତି—ଭାବ ସଞ୍ଚାର କରିବାରେ ଯେପରି ସାଫଲ୍ୟ ମଣ୍ଡିତ ହୋଇଛି ତା'ର ଉଦାହରଣ ବିରଳ । ଭଗବାନଙ୍କ ଠାରେ ସର୍ବତୋଭାବେ ଆତ୍ମସମର୍ପଣ କରିବା ପାଇଁ ଧର୍ମପ୍ରାଣ ବ୍ୟକ୍ତିମାନଙ୍କୁ ପ୍ରରୋଚିତ କରିବା ଏହାର ମୂଳ ଲକ୍ଷ୍ୟ । ଏଥିରେ ପ୍ରଥମେ ସଂସ୍କୃତ ଶ୍ଳୋକ ଓ ପରେ ତାର ଅନୁବାଦ ଦିଆଯାଇଛି—

ଅଗ୍ରେ ବ୍ୟାଧଃ କରଧୃତଶରଃ ପୃଷ୍ଠତୋ ଜାଲମାଳା
ପାର୍ଶ୍ୱେ ବହ୍ନିର୍ଦହତି ବିପିନଂ ସନ୍ନିଧୌ ଶ୍ୱାନମେଳା ।
ଏଣୀ ଗର୍ଭାଦଳସଗମନା ବାଳକାଃ କ୍ରୋଡ଼ଲଗ୍ନା
ଚିନ୍ତାଯୁକ୍ତା ବଦତି ମୃଗୀ କିଂ କରୋମି କ୍ୱ ଯାମି ॥୧॥

ଦେଖ ଘଟଣା ଦଇବ ଯୋଗର । ବ୍ୟାଧ ଶରଧରି ଜଗେ ଆଗର ॥
ପୃଷ୍ଠଭାଗେ ବନ ଦହେ ଅନଳ । ପାଖେ ମିଳି ଅଛଇ ଶ୍ୱାନମେଳ ॥
ଏଣୀ ଗର୍ଭବତୀ, ତେଣୁ ବିସ୍ତାରେ ଅଳସରେ ଗତି ।

ସଙ୍ଗେ ଅଛନ୍ତି ମୃଗଶିଶୁ ପଙ୍‌କ୍ତି । ଯହିଁ ସ୍ନେହ ବଢଇ ପ୍ରାଣୁ ଅତି ॥
କିସ କରିବି କେଉଁ ଦିଗେ ଯିବି । କେଉଁ ଉପାୟେ ଅପାୟୁଁ ତରିବି ॥

ଏଣୀଚିନ୍ତାତ୍ୟଭିଗତଭୟା ଚେତସା ଶ୍ରୀନିବାସଂ
ଶ୍ରୁତ୍ୱା ପୂର୍ବଂ ଜଳଚରଗ୍ରହାଦ୍‌ଗ୍ରସ୍ୟମାଣଂ ଗଜେନ୍ଦ୍ରମ୍ ।
ସ୍ତୋତ୍ରଂ କର୍ତ୍ତୁଂ ଜପବିଧିକୃତଂ ଭାବନାଂ ନାସ୍ତି ଶକ୍ତିଃ
ପାଦାମ୍ଭୋଜେ ଶରଣପତିତାଂ ରକ୍ଷ ବା ନୈବ ରକ୍ଷ ॥୨॥

ଭୟ କାତର ମନରେ ମୃଗୁଣୀ । ଚିନ୍ତାକଲା ଗୋବିନ୍ଦ ଗୁଣ ଗୁଣି ॥
ଆହେ ପ୍ରଭୁ ଜଗତଜନବନ୍ଧୁ । ଦୀନ ଉଦ୍ଧାରଣ କରୁଣାସିନ୍ଧୁ ॥
ତୁମ୍ଭେ ଦୁଃଖ ସିନ୍ଧୁ, କରୁଣା, କଲେ କରିପାର ବିନ୍ଦୁ ।

ସୁଦେଁ ନକ୍ର ଧଇଲା ଗଜେନ୍ଦ୍ରକୁ । ଆର୍ତ୍ତିସ୍ୱରେ ସେ ଡାକଇ ତୁମ୍ଭଙ୍କୁ ।।
ଡେର ଶ୍ରବଣ ତାହାର ଶୁଣିଲ । ଚକ୍ର ପେଷିଣ ନକ୍ର ବନ୍ଧ ହେଲ ।।
ଉଦ୍ଧାର ଗଜକୁ, ଦେଇ ଦୁଇ ଜନେ ଦ୍ୱାଶପଜକୁ ।
ମୁଁ ସ୍ତୁତି ଜପ ହୋମ ଭାବନା । କଣବାରେ ଅଟେ ଶକ୍ତିବର୍ଜ୍ଜନା ।।
ତେଣୁ ତୁମ୍ଭ ପାଦପଦ୍ମେ ଶରଣ । ଯାଉଅଛଇ ଆହେ ନାରାୟଣ ।।
ରଖ ବା ନ ରଖ, ଆଉ ଆଶ୍ରୟ ନାହିଁ କଷ୍ଟମୁଖ ।।

ଆଦଷ୍ଟେନାମମର ଭୂକ୍ଷ୍ମତା ଗର୍ଜ୍ଜିତେ ମେଘମାଲେ
ଘୋରେ ନୀରେ ବହ୍ୱତି ମରୁତାଣ୍ଡ୍ରିତା ଜାଲମାଲା
ସର୍ପାଘାତୈର୍ନିହ୍ନତଶବରଃ ଶ୍ୱାନସ୍ତୋବଜ୍ର ପୀଡ଼ା
ମନ୍ଦଂ ମନ୍ଦଂ ଚଲତି ହରିଣୀ ସାଧୁ ସାଧୁ ବିଧାତା ।।୩।।

ଏମନ୍ତ ଏଣୀ ସ୍ତୁତି କର୍ତ୍ତେ ଶୁଣି । ଆଜ୍ଞା ଦେଲେକ ବାସବେ ଚକ୍ରପାଣି ।।
ତୁମ୍ଭେ ମେଘ ପେଷି ମୃଗ ରଖିବ । ବ୍ୟାଧ ପ୍ରଭୃତିଙ୍କି ତହିଁ ନାଶିବ ।।
ଇନ୍ଦ୍ର ଏହା ଶୁଣି, ମେଘେ ଆଦେଶିଲା ଯାଇ ତକ୍ଷଣି ।
ଆଜ୍ଞା ପାଇ ସେ କଲା ଘୋରଧ୍ୱନ । କମ୍ପେ ଚରାଚର ସଙ୍ଗେ ମେଦନୀ ।।
ଜଳ ବର୍ଷିଲା ମୁଷଳ ଧାରରେ । ଅଗ୍ନି ଲଭିଗଲା ଅବଲମ୍ବରେ ।।
ବାତେ ଜାଲମାଳା ଛିଡ଼ିଲା, ସର୍ପାଘାତେ ବ୍ୟାଧ ମଲା ।
ଶ୍ୱାନ ଉପରେ ବଜ୍ରପାତ ହେଲା । ତେଣୁ ମୃଗୀ ହେଉଁ ଭୟ ଛାଡ଼ିଲା ।।
ଧୀରେ ଧୀରେ କରଇ ଗୃହଗତି । ସଙ୍ଗେ ନିଜ ଶିଶୁମାନେ ଅଛନ୍ତି ।।
ସାଧୁର ବିଧାତା, ତୋର ଅଟଇ ବିଚିତ୍ର କ୍ଷମତା ।
ଏବେ ଭବସାଗର ମଗ୍ନ ଜନେ । ଚିନ୍ତାକର ପ୍ରଭୁଙ୍କୁ ନିଜ ମନେ ।।
ଯେହୁ ଅଟନ୍ତି ଜଗତ ଠାକୁର । ତିନି କାଳରେ ଅଜର ଅମର ।।
ତାଙ୍କ ପାଦ ସ୍ମର, କହେ ଜଗନ୍ନାଥ ଭୂପୂର ସାର ।।

(ପୃ—୭,୭)

୯ । ଶ୍ରୀରାଧା ରସମଞ୍ଜରୀ—

ଉତ୍କଳୀୟ ବୈଷ୍ଣବ ପରମ୍ପରା ଅନୁଯାୟୀ ଏଥିରେ ରାଧାକୃଷ୍ଣଙ୍କ ଯୁଗଳଙ୍କ ରୂପ ଓ ତତ୍ତ୍ୱର ବିଶ୍ଳେଷଣ ପ୍ରଥମେ ସଂସ୍କୃତ ଶ୍ଳୋକ ଓ ପରେ ତାର ଓଡ଼ିଆ ଅନୁବାଦ ଦ୍ୱାରା କରାଯାଇଛି । ପଦଗୁଡ଼ିକ ଚଉଦ ଅକ୍ଷରରେ ରଚିତ—

ସହସ୍ରାର ଚକ୍ର ନୀଳ ଗଗନର ପ୍ରାନ୍ତେ ।
ଘୋଟିଅଛି ନୀଳ ଜଳ ସମୁଦ୍ରର ପ୍ରାନ୍ତେ ।।

ତାହା ମଧ୍ୟେ ଅଙ୍କଚନ୍ଦ୍ର ଦୀପଶିଖା ପରି ।
ଜ୍ୟୋତି ମିଳନେ ଯୁଗଳ ତତ୍ତ୍ୱହିଁ ଆବୋରି ॥
ନିତ୍ୟରାସ ବୋଲି ତାହା ସ୍ୱଣୀ ଗୋ ମଣିବ ।
ରାଧାକୃଷ୍ଣ ଏକତତ୍ତ୍ୱ ବୋଲିଟି ଜାଣିବ ॥
ରାଧାତତ୍ତ୍ୱରେ ଯେ ନିତ୍ୟ କରୁଥାଇ ଧ୍ୟାନ ।
ଶୁଦ୍ଧାଭକ୍ତି ତାହାରଠି ଅଟଇ ପ୍ରମାଣ ॥
(ମ:ଜ:, ପୃ—୭୯)

୧୦ । ପାଷଣ୍ଡ ଦଳନ—

ବୈଷ୍ଣବ ଧର୍ମ ଓ ଆସ୍ଥାର ପ୍ରସଙ୍ଗ ଏଥିରେ ଆଲୋଚିତ ହୋଇଛି । ବିଭିନ୍ନ ପୁରାଣ ଓ ଆଗମରୁ ସଂଗୃହୀତ ୭୪ଟି ଶ୍ଳୋକ ପ୍ରସଙ୍ଗ ଅନୁସାରେ ଉଦ୍ଧୃତ ହୋଇଛି ଏବଂ ପରେ ତାର ପଦ୍ୟାନୁବାଦ ଦିଆଯାଇଛି । ନିମ୍ନରେ ଏହାର ଉଦାହରଣ ଉଲ୍ଲେଖ କରାଯାଇପାରେ—

ଚଣ୍ଡାଳୋଽପି ମୁନିଶ୍ରେଷ୍ଠୋ ବିଷ୍ଣୁଭକ୍ତି ପରାୟଣଃ ।
ବିଷ୍ଣୁଭକ୍ତି ବିହୀନସ୍ତୁ ଦ୍ୱିଜୋଽପି ଚ ନରାଧମଃ ॥୧॥

ଚଣ୍ଡାଳ ହୋଇ ସେ ଯେବେ ବିଷ୍ଣୁଭକ୍ତି ପରାୟଣ ।
ହୋଇ ସଦାକରେ ମୁନିବ୍ରତ ଆଚରଣ ॥
ସର୍ବ ବର୍ଣ୍ଣେ ପୂଜ୍ୟ ଯେହୁ ହୋଇ ଦ୍ୱିଜବର ।
ବିଷ୍ଣୁଭକ୍ତିହୀନେ ଚଣ୍ଡାଳରୁ ନୀଚତର ॥
(ପୃ-୧)

× × ×

ସହସ୍ରଶାଖାଧ୍ୟାୟୀ ଚ ସର୍ବଶାସ୍ତ୍ରେଷୁ ଦୀକ୍ଷିତଃ ।
ଅବୈଷ୍ଣବୋ ଗୁରୁର୍ନ ସ୍ୟାଦ୍ ବୈଷ୍ଣବଃ ଶ୍ୱପଚୋ ଗୁରୁଃ ॥୨୯॥

ସହସ୍ର ଶାଖା ବେଦର କରି ଅଧ୍ୟୟନ ।
ଜାଣିଥିବ ସର୍ବଶାସ୍ତ୍ର ତନ୍ତ୍ରର ବିଧାନ ।
ଅବୈଷ୍ଣବ ସେ ହୋଇଲେ ଗୁରୁ ନୋହେ ।
ଚଣ୍ଡାଳ ବୈଷ୍ଣବ ହୋଇଥିଲେ ଗୁରୁହୋଏ ॥ପୃ—୮॥

+ + +

ସାଧୂନାଂ ସମଚିତ୍ତାନାଂ ମୁକୁନ୍ଦଚରଣୈର୍ବିନା ।
ଉପେକ୍ଷା କିଂ ଧନସ୍ତୋମୈରସଦ୍ଭିରପଦାଶ୍ରୟୈଃ ॥୭୪॥

ସାଧୁଜନ ସମସ୍ତମାନଙ୍କର ଜାଣ ।
ମୁକୁନ୍ଦ ଚରଣ ବିନା ରହିଛି କାରଣ ।
ଭକ୍ତମାନଙ୍କର ଧନାଦରେ ନୋହେ ତୋଷ ।
ଅସନ୍ତ ଅଭକ୍ତମାନଙ୍କର ତହିଁ ଆଶ ॥
ସାମାନ୍ୟରେ ପାଷଣ୍ଡ ଦଳନ ହେଲା ଶେଷ ।
ଆହେ କୃଷ୍ଣଭକ୍ତମାନେ ନ ଧର ମୋ'ଦୋଷ ॥ପୃ—୧୮॥

ଏହାର ଆରମ୍ଭରେ କୌଣସି ମଙ୍ଗଳାଚରଣ ନାହିଁ କି ଶେଷରେ କୌଣସି ପୁଷ୍ପିକା ନାହିଁ । ଏହା ଜଗନ୍ନାଥ ଦାସଙ୍କର ରଚନା ବୋଲି ମଧ୍ୟ କୁଆପି ଉଲ୍ଲେଖ ନାହିଁ । ପାଷଣ୍ଡଦଳନ ଏକ ସଂଗ୍ରହାତ୍ମକ ପୁସ୍ତିକା । ସଂସ୍କୃତ ଜାଣିଥିବା ଯେକୌଣସି ବ୍ୟକ୍ତି ଏପରି ପୁସ୍ତିକା ଲେଖିପାରିବ । ତେଣୁ ଏହାକୁ ଜଗନ୍ନାଥ ଦାସଙ୍କ ରଚନା ରୂପେ ସ୍ୱୀକାର କରିବାରେ କୌଣସି ଯୁକ୍ତି ଥିଲାପରି ମନେ ହୁଏ ନାହିଁ ।

୧୧ । ମନଃଶିକ୍ଷା—

ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳା ସହିତ ଜୀବାତ୍ମା-ପରମାତ୍ମା ବିଚାର, ବୈଷ୍ଣବମାନଙ୍କର ଆଚରଣ ବିଧି ଓ ବ୍ୟବହାର ପ୍ରସଙ୍ଗ ଏଥିରେ ବର୍ଣ୍ଣନା କରାଯାଇଛି । ପରମ ଆନନ୍ଦପ୍ରାପ୍ତିର ମୂଳ ଆଧାରଭୂତ ଚଞ୍ଚଳ ମନକୁ ଯୋଗ ମାଧ୍ୟମରେ କିପରି ଅସ୍ପନ୍ଦ ଓ ସ୍ଥିର କରାଯାଇ ପାରିବ ତାହାହିଁ ଏଥିରେ ଆଲୋଚିତ ହୋଇଛି । ଶ୍ରୀମଦ୍ ଭଗବଦ୍‌ଗୀତା ଷଷ୍ଠ ଅଧ୍ୟାୟ ବର୍ଣ୍ଣିତ ଧ୍ୟାନଯୋଗର ବିଷୟ ଦ୍ୱାରା ଏହା ପ୍ରଭାବିତ ବୋଲି ମନେ ହୁଏ ।

୧୨ । ଜଗନ୍ନାଥ କାରିକା—

ଏହି କ୍ଷୁଦ୍ର ପୁସ୍ତିକାର ତିନୋଟି ଅଧ୍ୟାୟ ମଧ୍ୟରୁ ପ୍ରଥମରେ ଶଙ୍ଖ କ୍ଷେତ୍ରର ମାହାତ୍ମ୍ୟ, ଦ୍ୱିତୀୟରେ ଶ୍ରୀଜଗନ୍ନାଥଙ୍କ ଦ୍ୱାଦଶଯାତ୍ରା ଓ ତୃତୀୟରେ ଦାରୁବ୍ରହ୍ମ ମାହାତ୍ମ୍ୟ ବର୍ଣ୍ଣନା କରାଯାଇଛି ।

୧୩ । ଧ୍ରୁବଚରିତ—

ଭାଗବତର ଚତୁର୍ଥ ସ୍କନ୍ଧ ଅଷ୍ଟମ ଓ ନବମ ଅଧ୍ୟାୟ ବର୍ଣ୍ଣିତ ଏହି 'ଧ୍ରୁବଚରିତ' କଳଶା ରାଗ ର ଚଉଦ ଅକ୍ଷରୀ ବୃତ୍ତରେ ରଚିତ । ଗବେଷକମାନଙ୍କ ବିଚାର ଅନୁସାରେ ଭାଗବତ ରଚନା ପୂର୍ବରୁ ଜଗନ୍ନାଥ ଦାସ ଏହାକୁ ରଚନା କରିଥିବାର ଅନୁମିତ ହୁଏ । କାରଣ ଭାଗବତର ଆରମ୍ଭରେ ଶ୍ରୀନୃସିଂହଙ୍କୁ ସ୍ତୁତି କରାଯାଇଥିବାବେଳେ ଏହାର ମଙ୍ଗଳାଚରଣରେ ଗଣପତିଙ୍କୁ ବନ୍ଦନା କରାଯାଇଥିବାର ଦେଖାଯାଏ । ଓଡ଼ିଶାରେ ସର୍ବାଧିକ ଲୋକପ୍ରିୟ ହୋଇଥିବା ଗାଥା

ଭକ୍ତା ମଧ୍ୟରେ ଧ୍ରୁବଚରିତର ନାମ ସର୍ବାଦୌ ଉଲ୍ଲେଖନୀୟ । ଏହାର ସ୍ୱତନ୍ତ୍ର ମଙ୍ଗଳାଚରଣଟି ନିମ୍ନମତେ ଉଦ୍ଧାର କରାଯାଇପାରେ—

ନମାମି ଅମ୍ବିକା ସୁତ ଚରଣ ପଙ୍କଜ । ସର୍ବଦେବଙ୍କର ମଧ୍ୟେ ନାମ ଦେବରାଜ ॥
ଯାର ନାମ ଲମ୍ବୋଦର ସର୍ବବିଘ୍ନହର । କରୀନ୍ଦ୍ର କୁଣ୍ଡଳ ହୃଦେ ହାର ମନୋହର ॥
ତୁଙ୍ଗ ବକ୍ଷସ୍ଥଳ ଦୀର୍ଘ ଶୋଭେ ଭୁଜଗଣ । ଅଭୟ ଅଭୟବର ପାଶାଙ୍କୁଶ ଧାରୀ ॥
ଯାହାର ପ୍ରସାଦବଳେ ଜଡ଼ବୁଦ୍ଧି ତୁଟେ । ନିର୍ମଳ ବଚନ ଯେ ସ୍ଫୁରଇ କଣ୍ଠତଟେ ॥
ମୋର ପ୍ରତି ପ୍ରସନ୍ନ ତୁ ହୁଅ ଲମ୍ବୋଦର । ଭାଗବତ ଭାଷା ମୁହିଁ କରିବି ପ୍ରଚାର ॥
ଭକ୍ତିଯୋଗ ମଧ୍ୟେ ଯେ ଉତ୍ତମ ଭାଗବତ । କହିବି ଚତୁର୍ଥସ୍କନ୍ଧ ଧ୍ରୁବର ଚରିତ ।
ସପତ୍ନ ବଚନେ ପୁଣି ଘୋର ତପ କଲା । ମାତାର ସମ୍ମତି ବାକ୍ୟେ ହରିଙ୍କି ଭଜିଲା ॥

(ଭାଗ—୪ର୍ଥସ୍କନ୍ଧ—୮ମ ଅ, ପୃ,—୪୦)

୧୪ । ରାସକ୍ରୀଡ଼ା—

ଭାଗବତର ଦଶମସ୍କନ୍ଧ ଅନ୍ତର୍ଗତ ପାଞ୍ଚୋଟି (୩୦—୩୪) ଅଧ୍ୟାୟରେ ବର୍ଣ୍ଣିତ ଶରତ୍‌କାଳୀନ ରାସଲୀଳା ପ୍ରସଙ୍ଗ ଏହି ପୁସ୍ତକରେ ସ୍ଥାନିତ ହୋଇଛି । ଏଥିରେ ଯଥାକ୍ରମେ ଗୋପୀମାନଙ୍କ ମଣ୍ଡଳୀରୁ ଶ୍ରୀକୃଷ୍ଣ ଜଗନ୍ନାଥଙ୍କ ଅନ୍ତର୍ଦ୍ଧାନ, ଗୋପୀ-ବିଳାପ (୩୧-୩୨ ଅଧ୍ୟାୟ), ଶ୍ରୀକୃଷ୍ଣ ବିଜୟ ଓ ଗୋପୀମାନଙ୍କର କାମନା ପୂର୍ତ୍ତି ହେବାର କାହାଣୀ ବର୍ଣ୍ଣନା କରାଯାଇଛି । ରାସକ୍ରୀଡ଼ାର କେତୋଟି ପଙ୍କ୍ତି ନିମ୍ନମତେ ଉଦ୍ଧାର କରାଯାଇ ପାରେ—

ଶୁଣ ପରୀକ୍ଷ ନରନାଥ । କୃଷ୍ଣ ଚରିତ ଭାଗବତ ।
ଗୋବିନ୍ଦ ବିଚାରନ୍ତି ମନେ । ଆଜ ରମିବା ବୃନ୍ଦାବନେ ॥ପୃ—୧॥

× × ×

ଗୋପୀଙ୍କ ମନ ଜାଣିବାରେ । ମାୟା ବିହିଲେ ନିଶାନ୍ତରେ ॥
ଗୋପୀଏ ବୃନ୍ଦାବନ ନାମେ । ଥିଲେ ଯେ କୃଷ୍ଣ ସନ୍ନିଧାନେ
॥ପୃ—୧୧॥

× × ×

ମୋ ଗୁରୁ ପାଇବରି କାହିଁ । ଯାହାର ଆଦି ଅନ୍ତ ନାହିଁ ॥
ସୁଜନ ଜନଙ୍କର ହିତ । କହଇ ଦାସ ଜଗନ୍ନାଥ ॥ପୃ୧୨॥

× × ×

ହରି ଚରିତ ଭାଗବତ । ଅମୃତ ରସମୟ ଗୀତ ॥
ଏଣେ କରିବା ମନ ତୋଷ । କହଇ ଜଗନ୍ନାଥ ଦାସ ॥ପୃ—୧୮॥

× × ×

ତୋହର ଦାସ ଜଗନ୍ନାଥ । ସେ ପାଦେ ରଖ ଗୋପୀନାଥ ॥
ବୁଡ଼ିଲି ଘୋର ଭବଜଳେ । ଉଦ୍ଧାର ଧରି ରଖ କୂଳେ
॥ପୃ—୬୬॥

× × ×

କହଇ ଦାସ ଜଗନ୍ନାଥ । ମୁଁ କୃଷ୍ଣ ସେବକର ଭୃତ୍ୟ ।
॥ପୃ—୬୫॥

× × ×

ମୁଁ ଗ୍ରର ଖାନ ମୂଢ଼ ପଣେ । ସେବଇ ତୁମ୍ଭର ଚରଣେ ।
ମୋହର ନ ଘେନବ ଦୋଷ । ଗୀତେ କହିଲି କୃଷ୍ଣରସ ।
ପୁରାଣ କଲି ଗୀତରସ । ଯାହାଯେ କଲେ ଗୀତବାସ ॥
କେ ତାହା କରିବଟି ଆନ । ସବୁର ସ୍ୱାମୀ ଭଗବାନ ॥
॥ପୃ—୩୦॥

୧୫ । ଷୋଳଚଉପଦୀ—

ଶ୍ରୀନୀଳାଚଳରେ ବିରାଜିତ ପୁରୁଷୋତ୍ତମ-ଶ୍ରୀଜଗନ୍ନାଥଙ୍କ ମୂର୍ତ୍ତିରେ କିପରି ଷୋଳ ସହସ୍ର ଗୋପାଙ୍ଗନା, ଷୋଡ଼ଶ ସଖୀ, ଅଷ୍ଟନାୟିକାଙ୍କ ସହିତ ଶ୍ରୀରାଧାକୃଷ୍ଣ ନିତ୍ୟ ରାସରେ ନିମଗ୍ନ ଅଛନ୍ତି ବୋଲି ଏଥିରେ ପ୍ରତିପାଦନ କରାଯାଇଛି । ଓଁ ହ୍ରୁଂ କ୍ଳୀଂ ଗୋପୀଜନ ବଲ୍ଲଭାୟ ସ୍ୱାହା କ୍ଳୀଂ ହ୍ରୁଂ ଶ୍ରୀଂ—ଏହି ଷୋଡ଼ଶ ବୀଜାକ୍ଷରକୁ ନେଇ ଷୋଳଟି ଚଉପଦୀ ରଚିତ ହୋଇଛି । ପ୍ରତ୍ୟେକ ଚଉପଦୀର ଆରମ୍ଭରେ ସଂସ୍କୃତ ଶ୍ଲୋକ ରହିଛି । ଷୋଳଟି ଚଉପଦୀ ମଧ୍ୟରୁ କୌଶିକ ରାଗରେ ଗୋଟିଏ (୬), ଗୁଜ୍ଜରୀ ରାଗରେ ସାତୋଟି (୧,୩-୫) ଶ୍ରେଣୀ ବୃତ୍ତରେ ଆଠୋଟି (୨,୯-୧୫) ଓ ବସନ୍ତ ରାଗରେ ତିନୋଟି (୭,୮,୧୬) ଗୀତ ରଚନା କରାଯାଇଛି । ପ୍ରତ୍ୟେକ ଚଉପଦୀରେ ଚାରୋଟି ପଦ ଓ ପ୍ରତ୍ୟେକ ପଦରେ ଚାରୋଟି ପଂକ୍ତି ରହିଛି । ଶ୍ଲୋକ ବ୍ୟତୀତ ଏଠାରେ କେତୋଟି ଚଉପଦୀ ଉଦାହରଣ ସ୍ୱରୂପ ଉଦ୍ଧାର କରାଯାଇପାରେ । ନିମ୍ନୋକ୍ତ ଗୀତଟି ଗୁଜ୍ଜରୀ ରାଗରେ ରଚିତ—

ଜଣି ଅବଶେଷେ ଦେଖିଲି ଶୋଭା ନୀଳାଦ୍ରି ପଥ ।
ରାଧାକୃଷ୍ଣ ଏକା ହୋଇଣ ସୁଖେ ଲୀଳା କରନ୍ତି ॥
କି ଉପମା ଦେବି ମହିମା ତହିଁ ବଚନ ନାହିଁ ।
ସିଂହାସନ ପ୍ରାନ୍ତେ ବସଇ ଯୋଗମାୟା ସେଠାଇଁ ॥

× × ×

ରାଧା ମୁଖ ପଙ୍କଜ ସୁଧାପାନେ କୃଷ୍ଣ ମୁଖଲୁଚିଲ ।
ନାସା ଶ୍ରବଣ କପୋଳାଦି କେହି ବାଣ ନୋହିଲ ॥
ଜଗନ୍ନାଥଙ୍କର ଲୁଚିଛୁ ଭୁଜ କୋଳାଗ୍ରତ ଲମ୍ପଟେ ।
ଜଗନ୍ନାଥ ଦାସ ଭେଟିଲେ ସନ୍ଥଜନଙ୍କ ବାଟେ ॥୩॥

॥ପୃ-୮॥

ନିମ୍ନଲିଖିତ ଗୀତଟି ବସନ୍ତ ରାଗରେ ରଚିତ ହୋଇଥିବାର ଦେଖାଯାଏ । ଏହା ସହିତ ଶ୍ରୀଚୈତନ୍ୟଙ୍କ ମୁଖରେ ପ୍ରକାଶିତ ରାଧାକୃଷ୍ଣ ତତ୍ତ୍ୱର ସମ୍ପର୍କ ଲକ୍ଷ୍ୟ କରାଯାଇ ପାରେ—

ଅବିଦ୍ୟାରୁ କୋଟି କୋଟି ବ୍ରହ୍ମାଣ୍ଡ ହୋଇ ।
ବ୍ରହ୍ମ ଯେ ଅଛନ୍ତି ତାଙ୍କ ଅନ୍ତର ହୋଇ ॥
ଶ୍ରୀକୃଷ୍ଣ ଶ୍ରୀରାଧାଙ୍କର ରହସ୍ୟ ଯହିଁ ।
ଅଧିବନ୍ଦ୍ୟେ ସେବା ବାସନାଙ୍କର ଦେହିଁ ॥

× × ×

ଶ୍ରୀକୃଷ୍ଣ ଶ୍ରୀରାଧାଙ୍କ ଯେ ରମନ୍ତି ଯହିଁ ।
ରାମ ନାମ ବୋଲୁ ଆମ୍ଭେ କୃଷ୍ଣଙ୍କ ତହିଁ ॥
ଏକ ମୁଖେ ତିନି ନାମ କର ବଖାଣ ।
ଜଗନ୍ନାଥ ଦାସ ଭଣେ ଆରତଜାଣ ॥

॥ପୃ-୧୫॥

ନିମ୍ନଲିଖିତ ଗୀତଟି ଚୌଖୀ ବୃତ୍ତରେ ରଚିତ—

ଶ୍ରୀନିତ୍ୟ ଯେ ନୀଳଗିରି    କୋଟି ବ୍ରହ୍ମାଣ୍ଡ ଆବୋରି
ସର୍ବୋପରି ଶିରୋମଣି ବିଳାସ ସ୍ଥାନ ।
ସ୍ଥିର ଯୋଗ ପୀଠ ଜାଣି    ଚଉଷଠି ଫଣୀ ମଣି
କୃଷ୍ଣଭାବ ରସୁକରେ ସୁଧା ଆପ୍ୟାନ ।
ରାଧା କୃଷ୍ଣ କରେ ବିଳାସ,
ପଲକେହେଁ ବିଛିନ୍ନ ନୋହେ ସେ କ୍ରୀଡ଼ା ରସ ।

× × ×

ଯୁଗଳ ଏ ବେନି ଅଙ୍ଗ    ପୁରୁଷ ପ୍ରକୃତି ସଙ୍ଗ
ରସାନନ୍ଦୀ ଯୋଗାନନ୍ଦେ ଅଭେଦ ପ୍ରୀତି ।

ଶ୍ରୀଜଗନ୍ନାଥ ଚରିତାମୃତ ଗ୍ରନ୍ଥରୁ ଏହା ଅତିବଡ଼ ଜଗନ୍ନାଥ ଦାସଙ୍କ ରଚନା ବୋଲି ସୂଚନା ମିଳେ । କାରଣ ମହାପ୍ରଭୁ ଶ୍ରୀଚୈତନ୍ୟ ରାଧାକୃଷ୍ଣ ଭକ୍ତିତତ୍ତ୍ୱ ସମ୍ବନ୍ଧରେ ଯାହା କହିଥିଲେ ତାହାର ଆଧାରରେ ଜଗନ୍ନାଥ ଦାସ 'ଷୋଳ ଚଉପଦୀ' ରଚନା କଲେ ବୋଲି କବି ଦିବାକର ଦାସ ନିମ୍ନମତେ ସୂଚନା ଦେଇଛନ୍ତି—

ଶ୍ରୀକୃଷ୍ଣ ଏହି ଜଗନ୍ନାଥ । ଈଶ୍ୱର ପରମ ପଦାର୍ଥ ॥
ସତ ଚିତ ଆନନ୍ଦ ଭାବ । ଅନାଦି ସର୍ବ ଆଦି ଦେବ ॥
ସର୍ବକାରଣର କାରଣ । କ୍ରୀଡ଼ା ଯାହାର ଏ ଭୁବନ ॥
ଭୁକ୍ତି ମୁକ୍ତି ଭକ୍ତି ଦାୟକ । କୋଟି ବ୍ରହ୍ମାଣ୍ଡ ପ୍ରବର୍ତ୍ତକ ॥

× × ×

କପଟ ଦାରୁ ରୂପେ ସେହି । ନୀଳକନ୍ଦର ମଧ୍ୟେ ରହି ॥
ମହାତେଜା ସ୍ୱେ ସୁପ୍ରକାଶ । ବୈଷ୍ଣବେ ଶୁଣ ତା' ରହସ୍ୟ ॥

× × ×

ଧର୍ମାର୍ଥ କାମ ମୋକ୍ଷ ଧର । ଦ୍ୱାରକା ଆଦି ଧାମ ଚ୍ୱର ॥
ଯେ ବାସୁଦେବ ସଙ୍କର୍ଷଣ । ପ୍ରଦ୍ୟୁମ୍ନ ଅନିରୁଦ୍ଧ ପୁଣ ॥
ଋକ ଯଜୁ ସାମ ଅଥର୍ବଣ । କର୍ମ ଜ୍ଞାନ ମୋକ୍ଷ ସାଧନ ॥
ଏ ଜଗନ୍ନାଥ ଭଦ୍ରାବଳ । ସୁଦରଶନ ରୂପେ ଠୁଳ ॥
ଏ ଭାବେ ଚତୁର୍ଦ୍ଧା ମୂରତି । ଜଗତେ ଯେ ଯେମନ୍ତ ଚିନ୍ତି ॥

× × ×

ଅକ୍ଷର ରୂପ ଜଗନ୍ନାଥ । କ୍ଷର ଅକ୍ଷର ଏ ଜଗତ ।
ଅକ୍ଷର କ୍ଷର ରୂପ ଏହି । ପୁରୁଷୋତ୍ତମ ଛନ୍ତି ରହି ॥

× × ×

ଏ ଶୁଦ୍ଧ ପ୍ରେମ ଭକ୍ତି ସ୍ଥାନ । ଏହା ଯେ ନ ଜାଣନ୍ତି ଆନ ॥
ଶ୍ରୀରାଧା କୃଷ୍ଣ ଜଗନ୍ନାଥ । ମୁଖମଣ୍ଡଳେ ସୁଶୋଭିତ ॥
ଏହି ମୂର୍ତ୍ତିରେ ଅଙ୍ଗ ଦୁଇ । ମଗନ ଛନ୍ତି ସୁଖ ପାଇ ॥

× × ×

ପ୍ରେମ ଭକ୍ତି ଯେ ଭାଇ । ସେ ପ୍ରେମଭାବ ଏଥିପାଇଁ ॥
ରାଗ ମାର୍ଗରେ ଯେ ଭଜିଲେ । ସେ ରାଗ ମିଳେ ଏ ଅଙ୍ଗରେ ॥
ମାଧୁର୍ଯ୍ୟ ଭାବେ ଏଥେ ଭଜ । ଅନ୍ୟାନ୍ୟ ଭାବ ଦୂରେ ତେଜ ॥

ଶ୍ରୀମହାପ୍ରଭୁ ଶ୍ରୀଚୈତନ୍ୟ । ଏ ଭାବେ ଶ୍ରୀମୁଖ ବଚନ ॥
ବୈଷ୍ଣବମାନେ ଯେତେ ଥିଲେ । ଶୁଣି ସନ୍ତୋଷ ସବେ ହେଲେ ॥
ଥିଲେ ଅତ ବଡ଼ ଗୋସାଇଁ । ପ୍ରଭୁ ଆଜ୍ଞା ଶୁଣିଲେ ତହିଁ ॥
ସେ କଥା ମନରେ ରଖିଲେ । ଷୋଳ ଚଉପଦୀ ଲେଖିଲେ ॥
ଶ୍ରୀରାଧା କୃଷ୍ଣ ପ୍ରେମ ଯେହୁ । ଗନ୍ଥେ ସରହ କଲେ ନେଇ ॥

(ଜ:ଜ, ପୃ—୬୯,୮୧,୮୪,—୮୬)

କିନ୍ତୁ ଆଲୋଚକମାନେ ଭାଗବତପ୍ରଣେତା ଓ ଷୋଳ ଚଉପଦୀ ରଚୟିତାଙ୍କୁ ଏକ ବ୍ୟକ୍ତି ରୂପେ ଗ୍ରହଣ କରି ନାହାନ୍ତି । କାରଣ ଚଉପଦୀକାରଙ୍କୁ କବି ଦବାକରଙ୍କ ବ୍ୟତୀତ ଅନ୍ୟ କେହି ଅତିବଡ଼ ଜଗନ୍ନାଥ ଦାସ ରୂପେ ଚିହ୍ନିତ କରିନାହାନ୍ତି ।

ଜଗନ୍ନାଥ ଦାସଙ୍କ ରଚନାବଳୀ ଅନ୍ତର୍ଗତ 'ଅଳସୁଆ ଭାଗବତ' ଶୀର୍ଷକ ଏକ କ୍ଷୁଦ୍ର ପୁସ୍ତିକା ଲୋକଲୋଚନକୁ ଆସିଛି । ଭାଗବତ ବାଣୀରେ ରଚିତ ଓ ଶବ୍ଦେ ପଦ ବଶିଷ୍ଟ ଏହି ପୁସ୍ତିକାରେ ଭାଗବତର ସାର ସଂଗ୍ରହ କରାଯାଇଥିବାର ଦେଖାଯାଏ । ସେଥିରୁ ନିମ୍ନମତେ କେତୋଟି ପଙ୍କ୍ତି ଉଦାହରଣ ସ୍ୱରୂପ ଉଲ୍ଲେଖ କରାଯାଇ ପାରେ—

ଶ୍ରୀଭାଗବତ ପଦ ଗୂଢ଼ । କି ଅବା ବୁଝିବ ଏ ମୂଢ଼ ॥
ଶ୍ରୀଭାଗବତ ତତ୍ତ୍ୱବାଣୀ । ଶବ୍ଦେ ପଦରେ ପରମାଣି ॥
ଅଳସ ଜନଙ୍କ ପ୍ରମାଣେ । କଲି ମୁଁ ଗୀତଠାବେ ଜାଣ ॥
ପଢ଼ିଲେ ଭକତ ଉଦୟ । ହୋଇବ ଏହାଟି ନିଶ୍ଚୟ ॥

(ମ:ଜ, ପୃ—୬୪)

'ପରଚସ୍ତ ବୋଧିନୀ' ଶୀର୍ଷକ ଆଉ ଏକ କ୍ଷୁଦ୍ର ପୁସ୍ତିକା ଜଗନ୍ନାଥ ଦାସଙ୍କ ନାମରେ ଭଣିତ ହୋଇଥିବାର ଦେଖାଯାଏ । ଏଥିରେ ଭାଗବତକାର ଜଗନ୍ନାଥ ଦାସଙ୍କ ଶ୍ରୀଚୈତନ୍ୟ ସେବା, ସିଦ୍ଧାଙ୍ଗ ପ୍ରାପ୍ତି, ଅଷ୍ଟଭୁଜମୂର୍ତ୍ତି ଧାରଣ, ପୁରୁଷୋତ୍ତମ ମାହାତ୍ମ୍ୟ ପ୍ରଭୃତି ବିଷୟ ବର୍ଣ୍ଣନା କରାଯାଇଛି । ଶ୍ରୀଜଗନ୍ନାଥ ଚରିତାମୃତ ବର୍ଣ୍ଣିତ ବିଷୟବସ୍ତୁ ସହିତ ଏହାର ବହୁଧା ସାମଞ୍ଜସ୍ୟ ଥିବା ପରିଲକ୍ଷିତ ହୁଏ । ଉଦାହରଣ ସ୍ୱରୂପ ଏହାର କେତୋଟି ପଦ ନିମ୍ନମତେ ଉଦ୍ଧାର କରାଗଲା—

ସହାସ ମଣ୍ଡଳେ କିଶୋର । ଭାବରେ ହୋଇଲେ ବିଭୋର ॥
କିଶୋରୀ ନେହ ନେହ ଦେଇ । ହସିଲେ ବଦନ ପୂରାଇ ॥
ସେ ହାସୁଁ ଦୁହେଁ ଜନମିଲୁ । ଦଇବେ ଲୀଳାରେ ମିଳିଲୁ ॥

କୃଷ୍ଣର ରଥ ହାପୁଁ ଜାତ । ଆପଣେ ହୋଇଲେ ସମ୍ଭୂତ ॥
ମୁହିଁ ଯେ କଣୋଷ ହାସରୁ । ଜାତ ହୋଇଲି ସୁକର୍ମରୁ ॥

(ମ:ଜ:, ପୃ—୬୪)

ଉପର୍ଯ୍ୟୁକ୍ତ 'ଅଲଘୁଆ ଭାଗବତ' ପରି ଏକ୍ଷ 'ପଣଚସ୍ୟବୋଧନୀ' ପୁସ୍ତିକା ମଧ୍ୟ ଜଗନ୍ନାଥ ଦାସ ନାମଧାରୀ ବହୁ ପରବର୍ତ୍ତୀ କାଳର କୌଣସି କବିଙ୍କ ରଚନା ରୂପେ ଗ୍ରହଣ କରାଯାଇ ପାରେ—

'ନାମଚନ୍ଦ୍ରିକା' ଶୀର୍ଷକ ନବାକ୍ଷରୀ ବୃତ୍ତରେ ରଚିତ ଏକାଦଶ ଅଧ୍ୟାୟ ବିଶିଷ୍ଟ କ୍ଷୁଦ୍ର ଗ୍ରନ୍ଥଟିଏ ମଧ୍ୟ ଜଗନ୍ନାଥ ଦାସଙ୍କ ରଚନା ରୂପେ ଗୃହୀତ ହୋଇଛି । ଭକ୍ତଶିରୋମଣି ଉଦ୍ଧବ ଓ ଶ୍ରୀକୃଷ୍ଣ—ଜଗନ୍ନାଥଙ୍କ ପ୍ରଶ୍ନୋତ୍ତର କ୍ରମେ ଏଥିରେ ମୁଖ୍ୟତଃ ନାମକୀର୍ତ୍ତନର ମାହାତ୍ମ୍ୟ ବର୍ଣ୍ଣିତ ହୋଇଛି । ତଦ୍‌ବ୍ୟତୀତ ନାମ, ଚତୁର୍ଦ୍ଧାମୂର୍ତ୍ତି, ଷଟଚକ୍ର ସାଧନା, ଅବାଡ଼ ସାଧନା, ବିରାଟ ସାଧନା, ଅନାହତ ଯୋଗାଦି ସମ୍ବନ୍ଧରେ ଆଲୋଚନା ସହିତ ପିଣ୍ଡବ୍ରହ୍ମାଣ୍ଡ, ଜୀବପରମତତ୍ତ୍ୱ, ଗୁରୁଶିଷ୍ୟ ଭାବ, ଦୀକ୍ଷାପ୍ରସଙ୍ଗ, ସହଜ ସାଧନା, ଏକାକ୍ଷର ବ୍ରହ୍ମତତ୍ତ୍ୱ ପ୍ରଭୃତି ଏଥିରେ ବିଶଦ ରୂପେ ବର୍ଣ୍ଣନା କରାଯାଇଛି । ଉଦାହରଣ ସ୍ୱରୂପ କେତୋଟି ପଦ ନିମ୍ନମତେ ଉଲ୍ଲେଖ କରାଯାଇ ପାରେ—

ନମଇ ଶ୍ରୀଗୁରୁ ପୟର । ପୟର ଅଟେ ଗଙ୍ଗା ନୀର ॥
ସେ ନୀର ସ୍ମରଣର ମାତେ । ଦୁରିତ ନ ରହଇ ଗାତେ ॥

× × ×

ନାମ ପରମ ରସ ସାର । ଭାବ ତରଲେ ସାଧୁ ନର ॥
ନାମଟି ସାର ତତ୍ତ୍ୱଜ୍ଞାନ । ନାମଟି ସ୍ୱୟଂ ପରଂବ୍ରହ୍ମ ॥
ନାମକୁ ଯେହୁ ଆଶ୍ରା କରେ । ଭବ ସାଗରୁ ପ୍ରାଣୀତରେ ॥

× × ×

ଏ ଗୁପ୍ତ ନାମ ତତ୍ତ୍ୱ ସାର । ଶୁଣିଲେ ସଂସାରୁ ଉଦ୍ଧାର ॥
ଗୁରୁ ଶିଷ୍ୟରେ ବଖାଣିବୁ । ଅନ୍ୟେ କହିଲେ ଦ୍ରୋହୀ ହେବୁ ॥
କହିଲେ ଜଗନ୍ନାଥ ଦାସ । ଏ ନାମ ତତ୍ତ୍ୱ ପ୍ରେମ ରସ ॥

(ପୃ—୧ ଓ ୨୨)

'ଗୁପତଗୀତା' ନାମରେ ପାଞ୍ଚ ଅଧ୍ୟାୟ ବିଶିଷ୍ଟ କ୍ଷୁଦ୍ର ପୁସ୍ତିକାଟି ନବାକ୍ଷରୀ ବୃତ୍ତରେ ରଚିତ ଓ ଜଗନ୍ନାଥ ଦାସଙ୍କ ନାମରେ ଭଣିତ ହୋଇଥିବାର ଦେଖା-

ଯାଏ । ଏଥିରେ ଶ୍ରୀକୃଷ୍ଣ ଓ ଉଦ୍ଧବ ସମ୍ବାଦକ୍ରମେ ଉଦ୍ଧବଙ୍କର ବଦ୍ରିକା ଯାତ୍ରା ପୂର୍ବରୁ ଶ୍ରୀକୃଷ୍ଣଙ୍କର ଉପଦେଶ, ଷଟ୍‌ଚକ୍ରରେ ଅକ୍ଷରଗୁଡ଼ିକର ସ୍ଥିତ, ଅନାମ ବ୍ରହ୍ମ ପ୍ରସଙ୍ଗ ଓ ଶ୍ରୀକୃଷ୍ଣଙ୍କର ସ୍ୱଧାମଗମନ ବିଷୟ ବର୍ଣ୍ଣିତ ହୋଇଛି । ଏହା ସହିତ ତତ୍ତ୍ୱବ୍ରହ୍ମ ଗୀତାର ସାମଞ୍ଜସ୍ୟ ଥିବାର ପରିଲକ୍ଷିତ ହୁଏ । ଉଦାହରଣ ସ୍ୱରୂପ କେତୋଟି ପଙ୍‌କ୍ତି ଉଦ୍ଧାର କରାଗଲା—

ଉଦ୍ଧବ ଶିରେ ଯୋଡ଼ିକର । ନମଇ ପ୍ରଭୁ ଦାମୋଦର ॥
ଅଶେଷ ଲୋକ ସୁଖଧର । ଦେବ ମାନବେ ଅଗୋଚର ॥
ଅମୂଲ୍ୟ ବଂଶୀ କରେ ଶୋଭା । ତଡ଼ିତ ପ୍ରାୟେ ଦଶେ ପ୍ରଭା ॥
କର ସଦୟେ ପୀତବାସ । ଖଣ୍ଡିତ ହେଉ ମୋ କଲ୍ମଷ ॥
କହଇ ଜଗନ୍ନାଥ ଦାସ । ଗୁପତଗୀତା ମହାରସ ॥

× × ×

ଗୋବିନ୍ଦ ନିଦ୍ରାରେ ଶୟନ । ସୁସେଷ୍ଟି ସ୍ୱର୍ଗ ପ୍ରବେଶଣ ॥
ହେମନ୍ତ ଗୋବିନ୍ଦର ଗଢ଼ । ସୁଜନେ ହେଲେ ଦଅମଢ଼ ॥
କହଇ ଜଗନ୍ନାଥ ଦାସ । ଗୁପତ ଗୀତା ଜ୍ଞାନ ରସ ॥

(ପୃ— ୨୩, ୩୪)

ଜଗନ୍ନାଥ ଦାସଙ୍କ ପ୍ରଣୀତ 'ଉଷାହରଣ' ନାମକ ଏକ କ୍ଷୁଦ୍ର କାବ୍ୟ ସ୍ୱର୍ଗତଃ ଡକ୍ଟର ବଂଶୀଧର ମହାନ୍ତିଙ୍କ ପାଖରେ ଥିବାର ଜଣାଯାଏ । ଏହି କାବ୍ୟଟି ଆଠୋଟି ଛାନ୍ଦ ଓ ଚଉଦ ଅକ୍ଷର ବୃତ୍ତରେ ରଚିତ ବୋଲି ସୂଚନା ମିଳେ । ଜଗନ୍ନାଥ ଦାସଙ୍କ ରଚନା ରୂପେ ପ୍ରଚଳିତ 'କ୍ଷେତ୍ରବର ଚଉତିଶା' ନାମକ ଏକ କ୍ଷୁଦ୍ର କାବ୍ୟରେ ପୁରୁଷୋତ୍ତମ କ୍ଷେତ୍ରବର ମାହାତ୍ମ୍ୟ ବର୍ଣ୍ଣନା କରାଯାଇଛି । ଚଉଦ ଅକ୍ଷର ବୃତ୍ତରେ ରଚିତ ଏହାର ଉପସଂହାର ପଦ କେତୋଟି ନିମ୍ନମତେ ଉଲ୍ଲେଖ କରାଯାଇପାରେ—

ପିତା ମୋର ଭଗବାନ ଦାସ ମହାଶୟ ।
ପଦ୍ମାବତୀ ମାତା ମୋର ସଦ୍‌ଗୁଣ ସଞ୍ଚୟ ॥
କପିଳେଶ୍ୱର ପୁର ଯେ ଶାସନ ଗଣସ୍ଥ ।
ବିପ୍ରକୁଳେ ଜନ୍ମ ମୁହିଁ ଏକ ଜନ୍ମନଷ୍ଟ ॥
ଜଗନ୍ନାଥ ବିନୁ ଅନ୍ୟ ନ ଜାଣଇ ମୁହିଁ ।
କ୍ଷେତ୍ରବରକୁ ଗୋକୁଳ ବୋଲି ବିଚାରଇ ॥

ପଞ୍ଚତୀର୍ଥ ପଞ୍ଚଧାର ରାଧା ଶ୍ୟାମକୁଣ୍ଡ ।
ନୀଳ ଶଇଳ ଅଟଇ ଗୋବର୍ଦ୍ଧନ ଖଣ୍ଡ ॥
ରାସକ୍ରୀଡା ସ୍ଥଳ ରତ୍ନବେଦୀ ଯେ ଅଟଇ ।
ସେହୁ ବେଦୀପରେ ମଥା ନିତ୍ୟ ମୋ ରହଇ ॥
ମୋର ଶିଷ୍ୟଗଣ ଉତ୍କଳ ଦେଶେ ଯେତେ ସାର ।
ପ୍ରଚ୍ଛର କରିବ ଶ୍ରୀକ୍ଷେତ୍ରବରର ବସ୍ତୁର ॥

(ମ:ଜ:, ପୃ-୬୮)

'ପଦ୍ମକଳ୍ପଟୀକା' ଶୀର୍ଷକ ଏକ କ୍ଷୁଦ୍ର ଗ୍ରନ୍ଥ ମଧ୍ୟ ଜଗନ୍ନାଥ ଦାସଙ୍କ ନାମରେ ଭଣିତ ହୋଇଛି । ଭାଗବତ ବୃତ୍ତରେ ରଚିତ ଏହି ଗ୍ରନ୍ଥରେ ଭକ୍ତ ଉଦ୍ଧବ ଓ ଶ୍ରୀକୃଷ୍ଣଙ୍କ ପ୍ରଶ୍ନୋତ୍ତର ଛଳେ ଭାଗବତଗୁଣ, ଭକ୍ତିତତ୍ତ୍ୱ ଓ ସତ୍ସଙ୍ଗ ପ୍ରସଙ୍ଗ ବର୍ଣ୍ଣିତ ହୋଇଛି । ଗ୍ରନ୍ଥର ଆରମ୍ଭ ଓ ଶେଷରେ ନିମ୍ନମତେ ଉଲ୍ଲେଖ ଥିବାର ଦେଖାଯାଏ ।

| | | |
|---|---|---|
| ଜୟ ତୁ ଜୟ ଜଗନ୍ନାଥ | । | ଅଶେଷ ପ୍ରାଣୀ ତାତ ମାତ ॥ |
| ନମଇଁ ତୁମ୍ଭର ଚରଣ | । | ତୁମ୍ଭେ ଅଶେଷ ପ୍ରାଣୀ ପ୍ରାଣ ॥ |
| ମୋତେ ସୁଦୟା ବାରେ କର | । | ମୁଁ ପାପୀ ଅଧମ ପାମର ॥ |
| ଶ୍ରୀକୃଷ୍ଣ ଉଦ୍ଧବ ଅଗ୍ରତେ | । | ଯାହା କହିଲେ ଲୋକହିତେ ॥ |
| ସେ ସତସଙ୍ଗର ବିଧାନ | । | କହିବ ବଳୁଛି ମୋ ମନ ॥ |
| ଶୁଣ ସୁଜନେ କର୍ଣ୍ଣ ଡେର | । | ଯେଣେ ତରିବ ଭବବାର ॥ |

(ପୃ-୧)

× × × ×

| | | |
|---|---|---|
| କହଇ ବିପ୍ର ଜଗନ୍ନାଥ | । | ମୁଁ ପାପୀ ଅଟଇ ଅନାଥ । |
| ଉପାଧି ଗର୍ବେ ମତ୍ତ ହୋଇ | । | ଲେଖିଲି ପଦ୍ମକଳ୍ପ ଏହି ॥ |
| ମୋହର ଏଥି ନାହିଁ ଦୋଷ | । | ହୃଦେ ମୋ କମଳାବିଳାସ ॥ |
| ପଦ୍ମକଳ୍ପର ଟୀକାରସ | । | ମାର୍କଣ୍ଡ ମୁନି ଉପଦେଶ ॥ |
| ତହିଁରୁ ସାରସତ ବାଣୀ | । | ମୁଁ ଏବେ ଗ୍ରନ୍ଥ କଲି ଆଣି ॥ |
| ସୁଜନେ କ୍ଷମା କର ଦୋଷ | । | ଭଣଇ ଜଗନ୍ନାଥ ଦାସ ॥ |

(ପୃ-୧୪)

ଭକ୍ତକବି ଜଗନ୍ନାଥ ଦାସଙ୍କ ନାମରେ ଭଣିତ ଓ ନବାକ୍ଷରୀ ବୃତ୍ତରେ ରଚିତ 'ଶ୍ରୀମଦ୍ ଭଗବଦ୍ ଗୀତା' ଗ୍ରନ୍ଥଟି ପ୍ରକାଶିତ ହୋଇଛି । ସରଳ ସୁବୋଧ୍ୟ ଭାଷାରେ ଲିଖିତ ଏହି ଗ୍ରନ୍ଥର ଅଧ୍ୟାୟ ଶେଷରେ ଜଗନ୍ନାଥ ଦାସ ନିଜକୁ ଦ୍ୱିଜ,

ବ୍ରାହ୍ମଣ, ଶୂଦ୍ର, ପାମର ଅଧମ ରୂପେ ଅଭିହିତ କରିଥିବାର ଦେଖାଯାଏ । ଏହାର ବିଭିନ୍ନ ଅଧ୍ୟାୟରୁ କେତୋଟି ପଦ ଉଦାହରଣସ୍ୱରୂପ ଉଦ୍ଧାର କରାଯାଇପାରେ—

ମୁଁ ଯେ ପାମର ହୀନ ଜନ । ଦୀନ ଜନଙ୍କେ ଭାଗ୍ୟବାନ ॥
ତୁମେ ଯେ ଦୀନଜନ ପ୍ରିୟ । କରୁଣା ବରୁଣ ଆଳୟ ॥
ତେଣୁ ତୁମ୍ଭର ଶ୍ରୀପୟର । କମଳେ ମୋର ନମସ୍କାର ॥
ପ୍ରାକୃତବନ୍ଧେ ଭଗବତ । ଗୀତାକୁ କରିବି ମୁଁ ଗୀତ ॥
ଏହି ଅନୁଜ୍ଞା ହେଉ ମୋତେ । ବସି ମୋହର ହୃଦଗତେ ॥
କହିବ ପଦ ସନ୍ଧିଭେଦ । ପବିତ୍ର ହେବ ମୋର ହୃଦ ॥

(ପୃ-୨)

× × ×

ଶ୍ରୀଭଗବତ ଗୀତାମୃତ । ପ୍ରାକୃତ ପ୍ରବନ୍ଧରେ ଗୀତ ॥
ଭବାବ୍ଧି ତରଣେ ତରଣି । ଶ୍ରୀକୃଷ୍ଣ ଅର୍ଜ୍ଜୁନ ଭଳିଣି ॥
ସେ କୃଷ୍ଣାର୍ଜ୍ଜୁନ ପଦଧ୍ୟାୟି । ବ୍ରାହ୍ମଣ ଜଗନ୍ନାଥ କହି ॥

(ପୃ-୧୫)

× × ×

ମନରେ ନ ଘେନ ମୋ ଦୋଷ । ଦ୍ୱିତୀୟ ଅଧ୍ୟାୟ ଏ ରସ ॥
ଶ୍ରୀହରି ଚରଣ ପଙ୍କଜ । ଧ୍ୟାଇଣ ଜଗନ୍ନାଥ ଦ୍ୱିଜ ॥
ପ୍ରାକୃତ ବନ୍ଧେ ଗୀତ କଥ । ଅଛୁ ଏ ଭବାର୍ଣ୍ଣବ ବାଣ ॥
ତରିବା ପାଇଁ ତାର ମନ । ପାମର ବୁଦ୍ଧି ଅଳ୍ପ ହୀନ ।

(ପୃ-୨୫)

× × ×

ଏ ଚତୁର୍ଦ୍ଦଶ ଅଧ୍ୟାବାଣୀ । ପାର୍ଥଙ୍କୁ ପ୍ରଭୁ ଚକ୍ରପାଣି ॥
କହିଲେ ଏହିପରି ମାର୍ଗେ । ବୋଲନ୍ତି ସଞ୍ଜୟ ରଜାଆଗେ ॥
କହିଲେ ଆହେ ହେ ସୁଜନେ । ଶୁଣି ଭାବନା କର ମନେ ॥
ଏ ଗୀତା ସର୍ବଶାସ୍ତ୍ର ସାର । ଦୁସ୍ତର ସଂସାରରୁ ପାର ॥
ବୋଲି ଶୁଣିଲି ସେ ଆଶାରେ । ଲେଖିଲି ପ୍ରାକୃତ ଭାଷାରେ ॥
ବୋଲଇ ବିପ୍ର ଜଗନ୍ନାଥ । ମୋ ପ୍ରଭୁ ଜଗତର ନାଥ ॥

(ପୃ-୮୨)

ଶ୍ରୀଭଗବଦ୍‌ଗୀତା ଟିକା । ସଂପୂର୍ଣ୍ଣ ଅଷ୍ଟାଦଶ ଅଧ୍ୟା ॥
ସୁଜନେ ଶୁଣ ମୋଦ ଭରି । ଦୋଷ ନ ଧରିବେ ମୋହରି ॥

ଏ ଗୀତା ବାକ୍ୟ ବିଭକ୍ତାର୍ଥ । କରଣେ ନାହିଁ ନାସାମର୍ଥ ॥
ଭାବାର୍ଥ ମଧ୍ୟ ସେହିପରି । ଜାଣଇ ନାହିଁ ମୁଁ କପରି ॥
କେବଳ ଗୁରୁଦେବଙ୍କର । ଦୟାରୁ ହୃଦୟରେ ମୋର ॥
ରହି ଯା କହିଲେ ଗୋବିନ୍ଦ । ଷର ମାତ୍ରାର୍ଥ ପଦ ଛନ୍ଦ ॥
ତାହା ମୁଁ ଲେଖିଛୁ ଲେଖନେ । ଆହେ ସାଧବ ଜନମାନେ ॥

× × ×

ମୁଁ ଯେ ପାମର ଦୀନଜନ । କଦାପି ମୋ ଦୋଷ ନ ଘେନ ॥
ଏ ଭବ ସାଗର ପ୍ରବନ୍ଧୁ । ଉଦ୍ଧର ରଖ କୃପାସିନ୍ଧୁ ॥
ହେ ପ୍ରଭୁ ଜଗତ ନିବାସ । ବୋଲଇ ଜଗନ୍ନାଥ ଦାସ ॥

(ପୃ-୧୦୦)

'ଗୁଣ୍ଡିଚ୍ଚ ବିଜେ' ଶୀର୍ଷକ ୪୫ ପଦ ବିଶିଷ୍ଟ କବିତାଟି ଜଗନ୍ନାଥ ଦାସଙ୍କ ରଚନା ରୂପେ ଗୃହୀତ ହୋଇଛି । ଏଥିରେ ଜଗନ୍ନାଥ ତ୍ରିମୂର୍ତ୍ତିଙ୍କୁ ଯଥାକ୍ରମେ ହରି, ହର ଓ ବ୍ରହ୍ମା ରୂପେ ସ୍ତୁତ କରାଯାଇଛି । ଦେବୀ ସୁଭଦ୍ରାଙ୍କୁ ସାଙ୍ଗରେ ନେଇ ଗୁଣ୍ଡିଚ୍ଚ ଯାତ୍ରା କରିବାରୁ ଶ୍ରୀଜଗନ୍ନାଥ ଓ ଲକ୍ଷ୍ମୀଙ୍କ ମଧ୍ୟରେ ଯେଉଁ ଦାମ୍ପତ୍ୟ କଳହ ସୃଷ୍ଟି ହୋଇଛି ତାହାହିଁ ଏଥିରେ ବର୍ଣ୍ଣନା କରାଯାଇଛି । ଉଦାହରଣ ସ୍ୱରୂପ ନିମ୍ନରେ ଏହାର କେତୋଟି ପଦ ଉଦ୍ଧୃତ ହେଲା ।

ହରିହର ବ୍ରହ୍ମା ସଂଯୋଗେ ଅବତାର ନୀଳଗିରିରେ ପ୍ରକାଶ ।
ନାନା କଉତୁକେ ଲୀଳା କରିବାକୁ ବଉଦ୍ଧ ରୂପେ ପ୍ରକାଶ ॥
କରେ ଶଙ୍ଖଚକ୍ର ଗଦା ଧରି, ନୀଳକନ୍ଦରରେ ବିଜେ କରି
ମର୍ତ୍ତ୍ୟ ଜୀବକୁ ଉଦ୍ଧାର କରି ହେ ॥ ୧ ॥

× × ×

ସିଂହ ଦୁଆରେ ବିଜୟେ ଚଳମୂର୍ତ୍ତି ଯିବାକୁ ନ ପାନ୍ତି ବାଟ ।
ଦାସୀମାନଙ୍କୁ ବୋଲନ୍ତି କମଳିନୀ ପାରିଣ ଦିଅ କବାଟ ॥
ତାଙ୍କୁ ଯିବାଏ ନଦେବ ପୁଣ, ଆମ୍ଭ କାର୍ଯ୍ୟ ନାହିଁ ତାଙ୍କରେଣ ।
ଆନ ନବରେ ରହନ୍ତୁ ପୁଣ ॥ ୩୮ ॥

× × ×

ଯେତେ ନିତ୍ୟ ସେତେ ଶ୍ରୀପୁରୁଷୋତ୍ତମ ପ୍ରେମପଦ ଯେ ପ୍ରକାଶ ।
ଭଗତ ପଦରେ ଲୀଳା କରିଛନ୍ତି, ଭଣେ ଜଗନ୍ନାଥ ଦାସ ଯେ ତହିଁ ॥

ବ୍ରହ୍ମା ଶଙ୍କର ଅନ୍ତ ନ ପାନ୍ତି, ଲକ୍ଷ୍ମୀ ନାରାୟଣେ ଭେଟ ହୋଇ ।
କୋଟି କଳ୍ପ ଗଲେ ଶେଷ ନୋହି ।। ୫୪ ।।

(ଜ:ଗ୍ର:, ପୃ—୨୭-୩୫)

ଉପଯୁକ୍ତ 'ଗୁଣ୍ଡିଚ୍ଚା ବିଜେ' କବିତା ପୂର୍ବରୁ ଶ୍ରୀକୃଷ୍ଣ ଜଗନ୍ନାଥଙ୍କୁ ଏକ ମତ୍ତ ହସ୍ତୀ ରୂପେ କଳ୍ପନା କରି ଜଗନ୍ନାଥ ଦାସ 'ଝୁଲରେ ହାତୀ' ଶୀର୍ଷକ ଏକ କବିତା ରଚନା କରିଥିବାର ଦେଖାଯାଏ । ଘୋଷା ପଦକୁ ଛାଡ଼ି ଏହା ନିମ୍ନମତେ ଚାରୋଟି ପଦରେ ରଚିତ ହୋଇଛି ।

ହାତୀ ଝୁଲଇରେ ଆସିବାର ବେଳ ।
ହାତୀ ଦେଖୁ ବନ୍ଧୁଅଛୁ ମସ୍ତେ ମତ୍ତ ଝାଳ ।। (ଘୋଷା)
ଶ୍ରୀଅଙ୍ଗ କନ୍ଦରେ ହାତୀ ବନ୍ଧା ହୋଇଥିଲା ।
ସ୍ନାହାନ କରିନ୍ତି ହାତୀ ଶାଳରୁ ଫିଟିଲା ।।୧।।
ଚନ୍ଦନ ପଲଙ୍କେ ହାତୀ ହୋଇଅଛି ଝୁଲ ।
ସୁଲବା ଛଟକେ ହାତୀ ପଡ଼ୁଅଛି ଡଳ ।।୨।।
କି ସୁନ୍ଦର ହୋଇ ହାତୀ ହୋଇ ମସ୍ତେ ମସ୍ତୀ ।
ଚଉଦ ଭୁବନେ ହାତୀ ଅଟଇ କରତା ।।୩।।
ଏମନ୍ତ ସୁନ୍ଦର ହାତୀ ଦେଖିବାକୁ ନାହିଁ ।
ଜଗନ୍ନାଥ ଦାସ ବୋଲେ ହାତୀ ନାମ କହ୍ଲାଇ ।।୪।।

(ଜ:ଗ୍ର:, ପୃ—'୫)

ଅଥବଡ଼ ଜଗନ୍ନାଥ ଦାସଙ୍କ ନାମରେ ପ୍ରଚଳିତ ଏହି କବିତାଗୁଡ଼ିକୁ ଭାଗବତକାରଙ୍କ ରଚନା ରୂପେ ସ୍ୱୀକାର କରିବା ପାଇଁ ଯଥେଷ୍ଟ ପ୍ରମାଣ ନାହିଁ ।

ମହାପୁରୁଷ ଜଗନ୍ନାଥ ଦାସଙ୍କ ରଚିତ ପଟଳ, ବ୍ରହ୍ମପଟଳ, ଉଦ୍ଧବବୋଧନ, ମନ୍ତ୍ରପ୍ରଣାଳୀ, ପ୍ରମୋଦ ଚନ୍ଦ୍ରାମଣି ପ୍ରଭୃତି ନାମରେ ପ୍ରାୟ ୭୦ ଟି ଓଡ଼ିଆ ପୁସ୍ତକର ନାମ ତାଲିକା ଆଲୋଚକମାନଙ୍କ ଦ୍ୱାରା ପ୍ରସ୍ତୁତ ହୋଇଥିବାର ଦେଖାଯାଏ । କିନ୍ତୁ ନାମଭଣିତା ଦୃଷ୍ଟିରୁ ସବୁ ଗ୍ରନ୍ଥକୁ ଜଗନ୍ନାଥ ଦାସଙ୍କ ରଚନା ବୋଲି ଗ୍ରହଣ କରିବା ଉଚିତ ମନେହୁଏ ନାହିଁ ।

ଆଲୋଚକମାନଙ୍କ ଦ୍ୱାରା ସୂଚୀବଦ୍ଧ ହୋଇଥିବା ଜଗନ୍ନାଥ ଦାସଙ୍କ ରଚନାବଳୀ ମଧ୍ୟରୁ ଅଳ୍ପ କେତୋଟି ଗ୍ରନ୍ଥ ବିଷୟରେ ସୂଚନା ଦିଆଯାଇଛି । ତଦ୍‌ବ୍ୟତୀତ ତାଙ୍କ ନାମରେ ଭଣିତ ବହୁ ଗ୍ରନ୍ଥ ଏପର୍ଯ୍ୟନ୍ତ ଲୋକଲୋଚନକୁ ଆସି ନାହିଁ । ତେଣୁ ଏ ବିଷୟରେ ଅଧିକ ଗବେଷଣା ଆବଶ୍ୟକ ବୋଲି ମନେ ହୁଏ ।

ଜଗନ୍ନାଥ ଦାସଙ୍କ ହସ୍ତଲିଖିତ ରଚନାବଳୀ ମଧ୍ୟରୁ ଉପଲବ୍ଧ ଗ୍ରନ୍ଥ ସମ୍ବନ୍ଧରେ ନିମ୍ନମତେ ସଂକ୍ଷିପ୍ତ ସୂଚନା ପ୍ରଦାନ କରାଯାଉଅଛି ।

୧ । ଉପାସନାଶତକମ୍—

ଶିଖରିଣୀ ବୃତ୍ତରେ ରଚିତ ୧୦୨ ଶ୍ଳୋକ ବିଶିଷ୍ଟ ଏହି ଶତକରେ ଶ୍ରୀରାଧାକୃଷ୍ଣଙ୍କ ସ୍ୱରୂପ, ନିତ୍ୟସ୍ଥଳାବତାର, ଚତୁର୍ବ୍ୟୂହାବରଣ, ନିତ୍ୟଲୀଳା, ମନ୍ତ୍ରମୟ ମୂର୍ତ୍ତି, ଗୋଲୋକ ଦେବତା, ରାଧାକୃଷ୍ଣଙ୍କ ପଦଚିହ୍ନ, ଶ୍ରୀକୃଷ୍ଣଙ୍କ ଦ୍ୱାତ୍ରିଂଶ ଅବତାର କୀର୍ତ୍ତନ, ଭୁବନସୃଷ୍ଟିକ୍ରମ, ଶ୍ରୀକୃଷ୍ଣ-ଜଗନ୍ନାଥଙ୍କ ଚତୁର୍ଦ୍ଧା ମୂର୍ତ୍ତି, ନିତ୍ୟ-ବୃନ୍ଦାବନ—ପୁରୁଷୋତ୍ତମ କ୍ଷେତ୍ର, ଭକ୍ତର ଆତ୍ମନିବେଦନାଦି ପ୍ରସଙ୍ଗ ବର୍ଣ୍ଣନା କରାଯାଇଛି । ଗ୍ରନ୍ଥ ପୁଷ୍ପିକାରେ ଥିବା 'ଇତି ଶ୍ରୀବୈଷ୍ଣବସାରୋଦ୍ଧେ ଗୌତମୋକ୍ତ ଶ୍ରୀରାଧାକୃଷ୍ଣ ପରମତତ୍ତ୍ୱମୁପାସନାଶତକଂ ସମାପ୍ତମ୍' ଉଲ୍ଲେଖ ବ୍ୟତୀତ ଏହା ଜଗନ୍ନାଥ ଦାସଙ୍କ ରଚନା ବୋଲି କୁତ୍ରାପି ସୂଚନା ଦିଆଯାଇ ନାହିଁ । ଏହାର ଆରମ୍ଭ ଓ ଶେଷ ଶ୍ଳୋକ ଦୁଇଟି ନିମ୍ନରେ ଉଦ୍ଧାର କରାଗଲା—

ଯଥୈବ ବ୍ରହ୍ମାଣ୍ଡେ ସୁରମନୁଜଦେହେ ଝ୍ୱପି ତଥା
ଜଗନ୍ନାଥୋ ଭଦ୍ରା ବସତି ବଲଭଦ୍ରଶ୍ଚ ନିୟତମ୍ ।
ତଥା ଜ୍ୟୋତିଶ୍ଚକ୍ରେ ବହୁପବନନାଡ଼ୀ ନିୟମିତେ
ତ୍ରିରାସ୍ୟାନ୍ତେ ଧାମ ପ୍ରଭବତି ପୁନଃ କାଳକଳଯା ॥ ୧ ॥

× × ×

ଯଦା ବକ୍ଷୋର୍ଦ୍ଧକ୍ତଃ ପଠତି ପୁରପାଦାବ୍ଜମଧୁପଃ
ସଦା ସତ୍ତ୍ୱପ୍ରେମାଢ୍ୟ ସତତମିହ ଶ୍ୱେପାସନଶତମ୍ ।
ତଦା ରାଧାନାଥ ପ୍ରଣୟମୟମାନନ୍ଦଜନକଂ
ସବୈ ଗଚ୍ଛେନ୍ନିତ୍ୟଂ ପରମଭୁବନଂ ପ୍ରାକୃତପରମ୍ ॥ ୧୦୨ ॥

୨ । ନିତ୍ୟଗୁପ୍ତଚୂଡ଼ାମଣି—

ଶ୍ରୀରାଧାକୃଷ୍ଣଙ୍କ ପ୍ରେମଭକ୍ତି ସମ୍ବନ୍ଧୀୟ ଏହା ଏକ ଉପାଦେୟ ଗ୍ରନ୍ଥ । ଦ୍ୱାତ୍ରିଂଶ ଆସ୍ୱାଦ୍ୟ (ଅଧ୍ୟାୟ)ରେ ବିଭକ୍ତ ଏହି ଗ୍ରନ୍ଥରେ ଗୋପୀନାଥ, ଶ୍ରୀକୃଷ୍ଣ-ଜଗନ୍ନାଥଙ୍କ ଶୁଦ୍ଧାଭକ୍ତି, ପ୍ରେମଭକ୍ତି ଓ ନବଧା ଭକ୍ତିତତ୍ତ୍ୱ ଗୁରୁଶିଷ୍ୟଙ୍କ ପ୍ରଶ୍ନୋତ୍ତରକ୍ରମେ, ପର୍ଯ୍ୟା-ଲୋଚନା କରାଯାଇଛି । ପ୍ରାୟ ୮୦୦ ଶ୍ଳୋକ ବିଶିଷ୍ଟ ଏହି ଗ୍ରନ୍ଥରେ ପ୍ରତିପାଦିତ ସିଦ୍ଧାନ୍ତର ପରିପୁଷ୍ଟି ପାଇଁ ବିଭିନ୍ନ ଶାସ୍ତ୍ର, ପୁରାଣ, ତନ୍ତ୍ର, ଆଗମ, କାବ୍ୟ, ଅଳଙ୍କାର ଶାସ୍ତ୍ରାଦିର ପ୍ରମାଣମାନ ଉଦ୍ଧାର କରାଯାଇଛି । ଏହି ଗ୍ରନ୍ଥର ଆରମ୍ଭ ତଥା ପ୍ରତ୍ୟେକ

ଆସ୍ଵାଦ୍ୟ ଶେଷରେ ଥିବା ପୁଷ୍ପିକାରେ 'ଶ୍ରୀ ଅଢବୃହଜ୍ଜଗନ୍ନାଥ ଦାସ ଗୋସ୍ଵାମିନା ବିରଚିତଂ' ବୋଲି ଉଲ୍ଲେଖ ଥିବାରୁ ଏହା ଜଗନ୍ନାଥ ଦାସଙ୍କ ରଚନା ବୋଲି ଅନୁମାନ କରାଯାଏ ।

ଆଲୋଚ୍ୟ ଗ୍ରନ୍ଥରେ ଆଦିପୁରାଣ, ଶ୍ରୀମଦ୍‌ଭାଗବତ, ଗୋପୀ ପ୍ରେମାମୃତ, ଗୋପାଳପଲ୍ଲବ, ଲୀଳାକୌତୁକ ଶାସ୍ତ୍ର, ଗୌତମୀତନ୍ତ୍ର, ଶ୍ରୀରାଧାରସ ମଞ୍ଜରୀ, ଭକ୍ତିରସାମୃତସିନ୍ଧୁ, ବାମନ-ବ୍ରହ୍ମାଣ-ଶିବପୁରାଣ, ଗୀତଗୋବିନ୍ଦ, ମାର୍କଣ୍ଡେୟ-ପୁରାଣ, ନାଟଶାସ୍ତ୍ର, ବ୍ରହ୍ମସଂହିତା, ବଳଭଦ୍ର ସଂହିତା, ଉଜ୍ଜ୍ୱଳଚନ୍ଦ୍ରିକା, ପ୍ରେମରସାର୍ଣ୍ଣବ, ନାରଦପଞ୍ଚରାତ୍ର, ଗୋପୀବିଳାସ, ଶୈବାଗମ, ରାଧାତାପିନୀ, ଭକ୍ତିରସାର୍ଣ୍ଣବ ପ୍ରଭୃତି ଗ୍ରନ୍ଥର ବାକ୍ୟାବଳୀ ପ୍ରମାଣ ରୂପେ ଉଦ୍ଧୃତ ହୋଇଥିବାର ଦେଖାଯାଏ ।

ଶିଷ୍ୟମାନଙ୍କୁ ଉପଦେଶ ଛଳରେ ଜଗନ୍ନାଥଦାସ କୃଷ୍ଣୈକଚିନ୍ତ ଓ କୃଷ୍ଣନାମ କୀର୍ତ୍ତନ ପରାୟଣ ବ୍ୟକ୍ତି ପ୍ରେମଭକ୍ତିର ଅଧିକାରୀ ହୁଏ ବୋଲି ନିମ୍ନମତେ କହିଛନ୍ତି—

ମନ ଏବ ମନୁଷ୍ୟାଣାଂ କାରଣଂ ବନ୍ଧମୋକ୍ଷୟୋଃ ।
ବନ୍ଧସ୍ୟ ବିଷୟା ସଙ୍ଗୋ ମୁକ୍ତେଃ କୃଷ୍ଣାର୍ପିତଂ ମନଃ ॥

ତସ୍ମାତ୍କୃଷ୍ଣେ ମନୋ ଦେୟଂ ସତ୍ୟଂସତ୍ୟଂ ତଦେବ ହି ।
ତଦା ସୋଽପି ଭୃଷ୍ଟଚକ୍ରୋ ପ୍ରେମଭକ୍ତିଂ ଚ ଦାସ୍ୟତି ॥

ଧ୍ୟାନମଙ୍ଗଳ ରୂପାଣି ଚନ୍ଦ୍ରନାମ୍ନାନି ସର୍ବଦା ।
କୀର୍ତ୍ତିନାମ୍ନାନି ନାମାନି ସାୟଂ ପ୍ରାତରହର୍ନିଶମ୍ ॥ ୧-୩୭-୩୯ ॥

(ନିଃଚୂଃ ପୃ-୫)

ଶ୍ରୀଜଗନ୍ନାଥ ଚରିତାମୃତ ଗ୍ରନ୍ଥର ବର୍ଣ୍ଣନା ପରି ଏଥିରେ ଶ୍ରୀଚୈତନ୍ୟଙ୍କୁ ରସମୂର୍ତ୍ତି ଶ୍ରୀକୃଷ୍ଣ ରୂପେ ପ୍ରତିପାଦନ କରାଯାଇଛି । ସେହି ମୂର୍ତ୍ତି ସ୍ତମ୍ଭନ, ମୋହନ, ମଦନ, ମାଦନ, ଉଚ୍ଚାଟନ, ଶୋଷଣ ଓ ବଶୀକରଣରେ ପ୍ରତୀକରୂପେ ଗୃହୀତ (ପୃ-୨୫-୨୭) । ପ୍ରସଙ୍ଗକ୍ରମେ ତୁଳସୀମାଳାର ବୈଶିଷ୍ଟ୍ୟ, ଭକ୍ତର ଲକ୍ଷଣ, କୃଷ୍ଣଭକ୍ତି ରସ, ଶ୍ରୀରାଧାକୃଷ୍ଣଙ୍କ ବୀଜମନ୍ତ୍ର, ବିଭିନ୍ନ ସଂଖ୍ୟକ ଅକ୍ଷର ବିଶିଷ୍ଟ ବୀଜମନ୍ତ୍ର ଗୋପୀବଲ୍ଲଭ ରାଧାନାଥ ଓ ଶ୍ରୀହରିପ୍ରିୟା ରାଧାଙ୍କ ମୂର୍ତ୍ତିର ଲକ୍ଷଣ, ଶ୍ରଦ୍ଧାଭକ୍ତିର ଲକ୍ଷଣ, ପଞ୍ଚଭାବନାବିଧି, ଚତୁର୍ବିଧ ବୈଷ୍ଣବ ସମ୍ପ୍ରଦାୟର ଭକ୍ତିଧାରାର ବିଷୟ ଏଥିରେ ଆଲୋଚିତ ହୋଇଛି । ଏଥିରେ ଗୁରୁପରମ୍ପରା ସମ୍ବନ୍ଧରେ ନିମ୍ନୋଲ୍ଲେଖ ଥିବାର ଦେଖାଯାଏ—

ଚୈତନ୍ୟସ୍ୟ ତୁ ଶିଷ୍ୟୋଽସ୍ତଂ ହୃଦୟାନନ୍ଦ ପଣ୍ଡିତଃ ।
ଶ୍ୟାମାନନ୍ଦୋ ଗୌରୀଦାସୋ ପଣ୍ଡିତଃ ତସ୍ୟଶିଷ୍ୟକାଃ ॥
କିନ୍ତୁ ଚ ଭକ୍ତଶ୍ରେଷ୍ଠସ୍ତୁ ହୃଦୟାନନ୍ଦ ପଣ୍ଡିତଃ ।
ବଳପୂର୍ବୋ ରାମଦାସସ୍ତନ୍ତୁ ଶିଷ୍ୟଃ କଥିତୋ ବୁଧୈଃ ॥
ମହାନପି ଜଗନ୍ନାଥଦାସସ୍ତତ୍ପୃଶଶ୍ଚରକଃ ।
ମମ ଷୋଡ଼ଶଶିଷ୍ୟାଶ୍ଚ ଶ୍ରେଷ୍ଠାଃ ଭକ୍ତଗଣେଷୁ ଚ ॥ ୨୯-୨୦-୨୨ ॥

ଆଲୋଚ୍ୟ ଗ୍ରନ୍ଥର ଏକାଂଶାଧ୍ୟରେ ଜଗନ୍ନାଥଦାସ ଶ୍ରୀଚୈତନ୍ୟଙ୍କ ଆଦେଶରେ ସ୍ତ୍ରୀରୂପ ରୂପ ଧାରଣ କରି ଗୌରୀଦେବୀଙ୍କୁ ଦୀକ୍ଷା ପ୍ରଦାନ କରିଥିବା ବିଷୟ ବର୍ଣ୍ଣିତ ହୋଇଛି । ତଦ୍‌ବ୍ୟତୀତ ଶୌରୀଙ୍କ ବିବରଣୀ, ବୈଷ୍ଣବ ବନ୍ଦନା, ଜଗନ୍ନାଥଦାସଙ୍କର ମର୍ତ୍ତ୍ୟରେ ଜନ୍ମଗ୍ରହଣ ପ୍ରସଙ୍ଗ, ପୁରୁଷୋତ୍ତମ ମାହାତ୍ମ୍ୟ, ବିଭିନ୍ନ ଦେବଦେବୀସ୍ତୁତି, ବ୍ରଜମଣ୍ଡଳ, ଗୋଲକ ପଦ୍ଧତି ପ୍ରଭୃତି ପର୍ଯ୍ୟାଲୋଚନା କରାଯାଇଛି ।

ସମ୍ଭବତଃ ନିତ୍ୟଗୁପ୍ତଚୂଡ଼ାମଣି ଗ୍ରନ୍ଥଟି ନିତ୍ୟଗୁପ୍ତମଣି ଓ ନିତ୍ୟଗୁପ୍ତମାଳା ନାମରେ ଅଭିହିତ । ପ୍ରକାଶିତ ଗ୍ରନ୍ଥଟି ଅଶୁଦ୍ଧିପୂର୍ଣ୍ଣ । ଜଗନ୍ନାଥଦାସଙ୍କ ପରି ସଂସ୍କୃତଜ୍ଞ ବିଦ୍ୱାନ ପଣ୍ଡିତଙ୍କ ଦ୍ୱାରା ଏପରି ଗ୍ରନ୍ଥ ରଚିତ ହୋଇଛି ବୋଲି ଆଦୌ ବିଶ୍ୱାସ କରି ହେବ ନାହିଁ । ତଦ୍‌ବ୍ୟତୀତ ଜଗନ୍ନାଥଦାସଙ୍କ ଜନ୍ମବିବରଣୀ, ସ୍ତ୍ରୀରୂପ ଧାରଣ ଓ ଗୁରୁ ପରମ୍ପରାକୁ ଏ ପ୍ରକାର ଗ୍ରନ୍ଥରେ ସ୍ଥାନ ଦେବାର ଯଥାର୍ଥତା କିଛି ଥିଲା ପରି ମନେହୁଏ ନାହିଁ । କିନ୍ତୁ ଗ୍ରନ୍ଥଟି ସମ୍ପାଦିତ ହୋଇ ନଥିବାରୁ ଏପ୍ରସଙ୍ଗରେ ଅଧିକ କିଛି କହିବା ଉଚିତ ନୁହେଁ ।

୩ । ଶ୍ରୀକୃଷ୍ଣ ଭକ୍ତିଲତା ଫଳ—

ଧର୍ମଶାସ୍ତ୍ରର ତତ୍ତ୍ୱପ୍ରକରଣ ଉପରେ ଆଧାରିତ ଏହି ଗ୍ରନ୍ଥ ଛଅଟି ଆସ୍ୱାଦରେ ବିଭକ୍ତ । ବିଭିନ୍ନ ଶାସ୍ତ୍ର, ପୁରାଣ, ତନ୍ତ୍ର, ସଂହିତାଦିର ବାକ୍ୟାବଳୀ ଉଦ୍ଧାର ପୂର୍ବକ ଏଥିରେ ଯଥାକ୍ରମେ ଗୁରୁଶିଷ୍ୟ ଲକ୍ଷଣ ଓ ତତ୍ତ୍ୱାତତ୍ତ୍ୱ ବିଚାର, ନବଧାଭକ୍ତି ଓ ନିର୍ଗୁଣଭକ୍ତି, ଭାବ-ରସ-ପ୍ରେମଭକ୍ତି, ସାନୁଭୂତଭକ୍ତି, ଭଗବତ୍‌ସିଦ୍ଧାନ୍ତ ଓ ଶ୍ରୀକୃଷ୍ଣ-ଲୀଳାର ନିତ୍ୟତ୍ୱ ପ୍ରସଙ୍ଗ ଆଲୋଚିତ ହୋଇଛି । ଗ୍ରନ୍ଥ ଆରମ୍ଭରେ ନିମ୍ନୋଦ୍ଧୃତ ମଙ୍ଗଳାଚରଣ ରହିଛି—

ଜୟତି ଜନନିବାସୋ ଦେବକୀ ଜନ୍ମବାଦୋ
ଯଦୁବର ପରିଷତ୍‌ସ୍ୱୈର୍ଦୋର୍ଭିରସ୍ୟନ୍ନଧର୍ମମ୍ ।
ସ୍ଥିରଚରବୃଜିନଘ୍ନଃ ସୁସ୍ମିତଶ୍ରୀମୁଖେନ
ବ୍ରଜପୁରବନିତାନାଂ ବର୍ଦ୍ଧୟନ୍ କାମଦେବମ୍ ॥ (ଭାଗ-୧୦-୯୦-୪୮)

ଭକ୍ତିସିଦ୍ଧାନ୍ତ ପ୍ରସଙ୍ଗରେ ଯେଉଁ ଶାସ୍ତ୍ରଗୁଡ଼ିକର ବାକ୍ୟାବଳୀ ପ୍ରମାଣ ରୂପେ ଉଦ୍ଧୃତ ହୋଇଛୁ ତନ୍ମଧ୍ୟରେ ଗୌତମୀତନ୍ତ୍ର, ବ୍ରହ୍ମସଂହିତା, ଶ୍ରୀମଦଭାଗବତ, ବିଷ୍ଣୁପୁରାଣ, ଭକ୍ତିରସାମୃତସିନ୍ଧୁ, ଭଗବଦ୍‌ଗୀତା, ନାରଦ ପଞ୍ଚରାତ୍ର, ବୃହଦାରଣ୍ୟ-କୋପନିଷଦ, ଜ୍ଞାନାର୍ଣ୍ଣବ, ମନ୍ତ୍ରମୁକ୍ତାବଳୀ, ମହାଭାରତ, ପ୍ରବୋଧ ଚନ୍ଦ୍ରୋଦୟ-ନାଟକ, ପଦ୍ମପୁରାଣ, ହରିଭକ୍ତିକଳ୍ପଲତା, ପୁରୁଷୋତ୍ତମ ମାହାତ୍ମ୍ୟ, ହରିଭକ୍ତି-ସୁଧୋଦୟ, ବ୍ରହ୍ମାଯାମଳ, କାତ୍ୟାୟନସଂହିତା, ବିଷ୍ଣୁଯାମଳ, ସ୍କନ୍ଦପୁରାଣ, ବୈଷ୍ଣବ-ତନ୍ତ୍ର, ବ୍ରହ୍ମପୁରାଣ, ଆଦିପୁରାଣ, ସମ୍ମୋହନତନ୍ତ୍ର, ଶ୍ରୀଧରସ୍ୱାମୀବାକ୍ୟ, ଆଗମଦୀପିକା, ରୁଦ୍ରଯାମଳ, ନୃସିଂହପୁରାଣ, ଗୀତଗୋବିନ୍ଦ, ସାହିତ୍ୟଦର୍ପଣ, ବାତ୍ସ୍ୟାୟନସଂହିତା, ବିଲ୍ୱମଙ୍ଗଳବାକ୍ୟ, ବଶିଷ୍ଠରାମାୟଣ, ଲଘୁଭାଗବତ, ବରାହପୁରାଣ, ଗୋପାଳତାପିନୀ, ବେଦସ୍ତୁତି, ବେଦାନ୍ତପ୍ରକରଣ, ସାଖ୍ୟକାରିକା, ଋକପରିଶିଷ୍ଟ, ଭକ୍ତିରହସ୍ୟ, ବୃହଦ ବାମନ ପୁରାଣ ପ୍ରଭୃତିର ନାମ ଉଲ୍ଲେଖନୀୟ । ପ୍ରତିପାଦ୍ୟ ବିଷୟବସ୍ତୁ ଦୃଷ୍ଟିରୁ ଭକ୍ତି ସମ୍ବନ୍ଧରେ ଏହା ଏକ ଉପାଦେୟ ଗ୍ରନ୍ଥ । କିନ୍ତୁ ଏଥିରେ ଜଗନ୍ନାଥ ଦାସଙ୍କ ନାମ ଗ୍ରନ୍ଥର ରଚୟିତା ବା ସଙ୍କଳକ ରୂପେ କେଉଁଠି ହେଲେ ଉଲ୍ଲେଖ ନାହିଁ । ପ୍ରକାଶିତ ଗ୍ରନ୍ଥଟି ମଧ୍ୟ ବିଧିବଦ୍ଧଭାବେ ସମ୍ପାଦିତ ହୋଇନାହିଁ । ସମ୍ଭବତଃ ଏହି ଗ୍ରନ୍ଥ ଶ୍ରୀକୃଷ୍ଣ ଭକ୍ତିକଳ୍ପଲତାଫଳ ନାମରେ ପୃଥକଭାବେ ତାଲିକାଭୁକ୍ତ ହୋଇଛି ।

୪ । ନୀଳାଦ୍ରିବିଳାସ—

ଏହି କ୍ଷୁଦ୍ର ଗ୍ରନ୍ଥଟି ଷୋଡ଼ଶ ବିଳାସରେ ବିଭକ୍ତ । ଏଥିରେ ଥିବା ପ୍ରାୟ ୧୮୦ଟି ଶ୍ଳୋକ ମଧ୍ୟରେ ଶ୍ରୀକୃଷ୍ଣ-ଜଗନ୍ନାଥଙ୍କ ମୂର୍ତ୍ତି ତତ୍ତ୍ୱର ବିଶ୍ଳେଷଣ କରାଯାଇଛି । ଏହାର ପ୍ରତ୍ୟେକ ବିଳାସର ପୁଷ୍ପିକାରେ 'ଶ୍ରୀମଦ୍ଜଗନ୍ନାଥ ଦାସ ବିରଚିତେ' ବୋଲି ଉଲ୍ଲେଖ ଅଛି । ଅଦ୍ୟାବଧି ଅପ୍ରକାଶିତ ଏହି ଗ୍ରନ୍ଥର ଆରମ୍ଭ ଓ ଶେଷ ନିମ୍ନମତେ ଉଦ୍ଧାର କରାଯାଇପାରେ—

ନମୋଽସ୍ତୁ ତେ ଦୀନଜନାର୍ତ୍ତିଧ୍ୱଂସିନ୍
ଲକ୍ଷ୍ମୀପତେ ନୀଳନଗେନ୍ଦ୍ରବାସିନ୍ ।
କ୍ଷୀରାବ୍ଧିବାସିନ୍ ଦୟିତାବିଳାସିନ୍
ପଲ୍ଲବଦର୍ଶିନ୍ ହରଧାତୃଶାସିନ୍ ॥ ୧-୧ ॥

× × × ×

କାନ୍ତଂ ତପ୍ତଲନାୟକଂ ବରତନୁଂ ଗୌରାଙ୍ଗ ଶ୍ୟାମପ୍ରଭଂ
ପ୍ରେମାଭକ୍ତିପଦଂ ମନୋଜ୍ଞବିଭବଂ ହ୍ୟହଂ ଭଜେଽହଂମୁଦା ।
ପ୍ରାପ୍ତୌ ତ୍ରାହ୍ମୀକ୍ଷଣଂ ବିଲୋକ୍ୟ ସ୍ଫୁରିତଂ ରାତ୍ରୌ ଚ ଯତ୍କାମଦଂ
ଧୃତ୍ୱା ତଚ୍ଚରଣାମ୍ବୁଜେ ଦରହରେ ଚେତଃ ସଦା ମାମକମ୍ ॥ ୧୬-୧ ॥

'ନୀଳାଦ୍ରି ଚନ୍ଦ୍ରିକା' ନାମରେ ପୁସ୍ତିକାଟି ୧୧୯ଟି ଶ୍ଳୋକରେ ରଚିତ ହୋଇଛି । ଏହି କ୍ଷୁଦ୍ର ପୁସ୍ତିକାରେ ଗୁରୁଶିଷ୍ୟଙ୍କ ପ୍ରଶ୍ନୋତ୍ତର କ୍ରମେ ଶ୍ରୀଜଗନ୍ନାଥଙ୍କ ମୂର୍ତ୍ତିରେ ଶ୍ରୀରାଧାକୃଷ୍ଣଙ୍କ ଯୁଗଳ ରୂପର ଅବସ୍ଥିତ, ଯନ୍ତ୍ର ଓ ମନ୍ତ୍ରରୂପ ଶ୍ରୀଜଗନ୍ନାଥ-ତତ୍ତ୍ୱ, ଷୋଡ଼ଶାକ୍ଷର ମନ୍ତ୍ର ପ୍ରସଙ୍ଗ ଆଲୋଚିତ ହୋଇଛି । କିନ୍ତୁ ଜଗନ୍ନାଥ ଦାସଙ୍କ ରଚନା ବୋଲି ଏଥିରେ କୁତ୍ରାପି ଉଲ୍ଲେଖ ନାହିଁ ।

ଶ୍ରୀଜଗନ୍ନାଥ ମୂର୍ତ୍ତିତତ୍ତ୍ୱ ସମ୍ବନ୍ଧୀୟ ଆଲୋଚନା ଦିବାକର ଦାସଙ୍କ 'ଶ୍ରୀଜଗନ୍ନାଥ ଚରିତାମୃତ', ଜୀବଗୋସ୍ୱାମୀଙ୍କ ନାମରେ ପ୍ରଚଳିତ 'ସୁଧାରସ' ତଥା ଜଗନ୍ନାଥ ଦାସଙ୍କ ନାମରେ ଭଣିତ ସମସ୍ତ ସଂସ୍କୃତ ଗ୍ରନ୍ଥରେ ପ୍ରାୟ ଏକପ୍ରକାର ହୋଇଥିବାର ଦେଖାଯାଏ । ଶ୍ଳୋକ ରଚନା ଓ ଭାଷାରେ ସାମାନ୍ୟ ପାର୍ଥକ୍ୟ ଥିଲେ ମଧ୍ୟ ବିଷୟବସ୍ତୁରେ ତଥା ପ୍ରକାଶନ ଭଙ୍ଗୀରେ ଆଦୌ ପାର୍ଥକ୍ୟ ନ ଥିବାର ଅନୁଭୂତ ହୁଏ । ଜଗନ୍ନାଥ ଦାସଙ୍କ ନାମରେ ଭଣିତ ଅନ୍ୟାନ୍ୟ ସଂସ୍କୃତ ଗ୍ରନ୍ଥ ଏପର୍ଯ୍ୟନ୍ତ ପ୍ରକାଶ ପାଇନଥିବାରୁ ସେବିଷୟରେ କୌଣସି ସୂଚନା ଏଠାରେ ଦିଆଯାଇପାରିଲା ନାହିଁ ।

ଓଡ଼ିଆ ଭାଷା ଓ ସାହିତ୍ୟର ଇତିହାସରେ ମହାପୁରୁଷ ଜଗନ୍ନାଥ ଦାସଙ୍କ ଭାଗବତ ଏକ ଅମର ସୃଷ୍ଟି ଓ ଅକ୍ଷୟ କୀର୍ତ୍ତି ରୂପେ ଗୃହୀତ, ଏଥିରେ ଦ୍ୱିମତ ହେବାର କିଛି ନାହିଁ । କିନ୍ତୁ ତାଙ୍କ ନାମରେ ପ୍ରଚଳିତ ସମସ୍ତ ଓଡ଼ିଆ ଓ ସଂସ୍କୃତ ଗ୍ରନ୍ଥକୁ ଜଗନ୍ନାଥ ଦାସଙ୍କ ରଚନା ରୂପେ ସ୍ୱୀକୃତ ଦେବା ସମ୍ଭବ ନୁହେଁ ଆଲୋଚକମାନେ ଯେଉଁ ଗ୍ରନ୍ଥଗୁଡ଼ିକୁ ତାଙ୍କର ରଚନା ବୋଲି ଗ୍ରହଣ କରିଛନ୍ତି, ସେଗୁଡ଼ିକ ମଧ୍ୟ ସନ୍ଦେହ ମୁକ୍ତ ନୁହେଁ । ତେଣୁ ଭାଗବତର ବିଷୟବସ୍ତୁ ଉପରେ ଆଧାରିତ ଓ ଜଗନ୍ନାଥ ଦାସଙ୍କ ନାମରେ ଭଣିତ ଗ୍ରନ୍ଥଗୁଡ଼ିକୁ ତାଙ୍କର ରଚନା ରୂପେ ଗ୍ରହଣ କରିବାରେ ଆପତ୍ତି ନାହିଁ । କାରଣ, ରାସକ୍ରୀଡ଼ା, ଧ୍ରୁବଚରିତ, ଶ୍ରୀକୃଷ୍ଣଜନ୍ମ ଅଥବା ହରିଜନ୍ମ, ଗଜସ୍ତୁତି ପ୍ରଭୃତି ରଚନାଗୁଡ଼ିକ ଭାଗବତର ବିଭିନ୍ନ ସ୍କନ୍ଧ ଅନ୍ତର୍ଗତ ବିଷୟବସ୍ତୁର ସ୍ୱତନ୍ତ୍ର ପ୍ରକାଶନ ରୂପେ ପ୍ରଚ୍ଚରିତ ହୋଇଥିବାର ଦେଖାଯାଏ । ଓଡ଼ିଆ ଜାତିର ଧର୍ମଗ୍ରନ୍ଥ ରୂପେ ପୂଜିତ ସେହି ମହାନ୍ ଭାଗବତ ଗ୍ରନ୍ଥ ଉପରେ ସାଧାରଣ ଭାବେ ଆଲୋକପାତ କରାଯାଇପାରେ ।



# ଭାଗବତର ପ୍ରଭାବ ଓ ପ୍ରତିଷ୍ଠା

## ୧ । ଭାଗବତ ମହାପୁରାଣ—

'ପୁରା ଭବଃ ଅଥବା 'ପୁରାଭବଃ ବେଦଃ' ବ୍ୟୁତ୍ପତ୍ତିରୁ ପୁରାଣ ପଦ ନିଷ୍ପନ୍ନ ହୋଇଛି । ନିରୁକ୍ତ ଅନୁସାରେ 'ପୁରା ନବଂ' ଅର୍ଥାତ୍ ଯାହା ପୂର୍ବେ ନୂଆ ଥିଲା ତାହା ପୁରାଣ । ପୂର୍ବର ଘଟଣାବଳୀ ପ୍ରତି ଯେ ଦୃଷ୍ଟି ଆକର୍ଷଣ କରେ, ଯାହା ପୂର୍ବେ ନୂଆ ଥିଲା, ଯାହା ପୂର୍ବେ ଘଟିଥିଲା ଅଥବା ଯାହା ସୃଷ୍ଟ୍ୟାଦି ପ୍ରତିପାଦକ ଗ୍ରନ୍ଥ ତାହା ପୁରାଣ ନାମରେ ଅଭିହିତ । ବ୍ୟାସାଦିମୁନି ପ୍ରଣୀତ ବେଦାର୍ଥ ବର୍ଣ୍ଣିତ ପୁରାଣ ପଞ୍ଚଲକ୍ଷଣ ଯୁକ୍ତ ଶାସ୍ତ୍ର ନାମରେ ଅଭିହିତ—

ସର୍ଗଶ୍ଚ ପ୍ରତିସର୍ଗଶ୍ଚ ବଂଶୋମନ୍ୱନ୍ତରାଣି ଚ ।<br>
ବଂଶାନୁଚରିତଂ ଚେତି ପୁରାଣଂ ପଞ୍ଚଲକ୍ଷଣମ୍ ॥

ଅର୍ଥାତ୍ ସର୍ଗ (ସୃଷ୍ଟି) ପ୍ରତିସର୍ଗ (ପ୍ରଳୟ) ବଂଶ (ବଂଶବିସ୍ତାର) ମନ୍ୱନ୍ତର (ଯୁଗାଂଶ ବିସ୍ତାର) ଓ ବଂଶାନୁଚରିତ (ବଂଶର ଇତିହାସ)କୁ ନେଇ ପୁରାଣର ବିଷୟବସ୍ତୁ ପରିକଳ୍ପିତ ହୋଇଛି । ପୁରାଣରେ ଏହା ଅତୀତ ଅନ୍ୟାନ୍ୟ ବସ୍ତୁ ବିଷୟ ପରବର୍ତ୍ତୀ କାଳରେ ସଂଯୋଜିତ ହେବାରୁ ଲକ୍ଷଣ ସଂଖ୍ୟା ପାଞ୍ଚରୁ ଦଶକୁ ବୃଦ୍ଧି ପାଇଲା । ମହାପୁରାଣଗୁଡ଼ିକ ଦଶଲକ୍ଷଣବିଶିଷ୍ଟ ହୋଇଥିବାର ସୂଚନା ନିମ୍ନୋକ୍ତିରୁ ମିଳେ—

ସର୍ଗୋଽସ୍ୟାଥ ବିସର୍ଗଶ୍ଚ ବୃତ୍ତୀ ରକ୍ଷାନ୍ତରାଣି ଚ ।<br>
ବଂଶୋ ବଂଶାନୁଚରିତଂ ସଂସ୍ଥା ହେତୁର ପାଶ୍ରୟଃ ॥

॥ ଭାଗ—୧୨-୭-୧୦ ॥

ଅର୍ଥାତ୍ ସର୍ଗ, ବିସର୍ଗ, ବୃତ୍ତି, ରକ୍ଷା, ଅନ୍ତର, ବଂଶ, ବଂଶାନୁଚରିତ, ସଂସ୍ଥା, ହେତୁ ଓ ଅପାଶ୍ରୟକୁ ନେଇ ମହାପୁରାଣର ଦଶଲକ୍ଷଣ କଳ୍ପିତ ହୋଇଛି । ପୁରାଣର କେବଳ ପଞ୍ଚ ବା ଦଶ ନୁହେଁ ତତୋଽଧିକ ଲକ୍ଷଣ ଥିବାର ଜଣାଯାଏ । ଉକ୍ତ ଲକ୍ଷଣ-ଲକ୍ଷିତ ପୁରାଣଗୁଡ଼ିକ ପ୍ରଥମେ ବ୍ରହ୍ମ, ପଦ୍ମ, ବିଷ୍ଣୁ, ଶିବ, ଭାଗବତ, ନାରଦ, ମାର୍କଣ୍ଡେୟ, ଅଗ୍ନି, ଭବିଷ୍ୟ ବ୍ରହ୍ମବୈବର୍ତ୍ତ, ଲିଙ୍ଗ, ବରାହ, ସ୍କନ୍ଦ, ବାମନ, କୂର୍ମ, ମତ୍ସ୍ୟ, ଗରୁଡ, ବ୍ରହ୍ମାଣ୍ଡାଦି ଅଷ୍ଟାଦଶ ମହାପୁରାଣ ନାମରେ ଅଭିହିତ । ପ୍ରତିପାଦ୍ୟ ବିଷୟ ଆଧାରରେ ପୁରାଣଗୁଡ଼ିକୁ ତାମସ (ମ, କୂ, ଲି, ଶି, ସ୍କ, ଅ,)

ସାତ୍ତ୍ୱିକ (ବ, ମ, ଭା, ଗ, ପ, ବ,) ଓ ରାଜସ (ବ୍ର, ବ୍ରବୈ, ମା, ଭ, ବ, ବ୍ର,) ଭେଦରେ ବିଭକ୍ତ କରାଗଲା । ଏହି ପରମ୍ପରାକୁ ନେଇ କାଳକ୍ରମେ ଅଷ୍ଟାଦଶ ଉପପୁରାଣ ଓ ବହୁସ୍ଥଳ ପୁରାଣ ତଥା ମାହାତ୍ମ୍ୟ ଗ୍ରନ୍ଥ ସୃଷ୍ଟି ହେଲା । ତନ୍ମଧ୍ୟରେ ଶ୍ରୀମଦ୍‌ଭାଗବତ ଅଷ୍ଟାଦଶ ପୁରାଣ ସୂଚୀର ପଞ୍ଚମ ସ୍ଥାନସ୍ଥ ମହାପୁରାଣ ରୂପେ ଅଭିହିତ ।

"ଭଗବତୋ ଭଗବତ୍ୟା ବା ଇଦଂ ଭାଗବତମ୍"—ଅର୍ଥାତ୍ ଭଗବାନ୍ ବା ଭଗବତୀଙ୍କ ଚରିତ ହିଁ ଭାଗବତ ନାମରେ ଅଭିହିତ । ତେଣୁ ଦେବୀପୁରାଣ ବ୍ୟତୀତ ଦେବୀ ଭାଗବତ ଓ ଶ୍ରୀମଦ୍ ଭାଗବତ ଉଭୟ ଭାଗବତ ରୂପେ ଗୃହୀତ । ଅଷ୍ଟାଦଶ ମହାପୁରାଣ ମଧ୍ୟରେ ଭାଗବତ ଅନ୍ୟତମ । କିନ୍ତୁ ଶ୍ରୀମଦ ଭାଗବତ ଓ ଦେବୀ ଭାଗବତ ମଧ୍ୟରୁ କେଉଁଟି ମହାପୁରାଣ ଓ କେଉଁଟି ଉପପୁରାଣର ଅନ୍ତର୍ଗତ ସେ ବିଷୟରେ ପୁରାଣମାନଙ୍କରେ ବହୁପ୍ରକାର ମତଭେଦ ଥିବାର ଦେଖାଯାଏ । ମତ୍ସ୍ୟ ଶୈବାଦିତାମସ ପୁରାଣମାନଙ୍କର ବିବୃତ୍ତି ଅନୁସାରେ ଦେବୀ ଭାଗବତ ମହାପୁରାଣ ଓ ଅନ୍ୟଟି ଉପପୁରାଣ ଏବଂ ନାରଦୀୟ ପ୍ରଭୃତି ସାତ୍ତ୍ୱିକ ପୁରାଣ-ମାନଙ୍କର ଉଲ୍ଲେଖ ଅନୁସାରେ ଶ୍ରୀମଦ୍‌ଭାଗବତ ମହାପୁରାଣ ଓ ଅପରଟି ଉପ-ପୁରାଣରେ ଅନ୍ତର୍ଗତ । କିନ୍ତୁ ପଦ୍ମପୁରାଣରେ ପାତାଳ ଖଣ୍ଡରେ ନିମ୍ନପ୍ରକାର ଉଲ୍ଲେଖ ଅଛି—

ଅଷ୍ଟାଦଶଂ ଭାଗବତଂ ସାରମାକୃଷ୍ୟ ସର୍ବତଃ ।
କୃତବାନ୍ ଭଗବାନ୍ ବ୍ୟାସଃ ଶୁକଂ ଚାଧ୍ୟାପୟତ୍ସୁତମ ॥

(ପଦ୍ମ—ପାତାଳଖଣ୍ଡ-ଅଧ୍ୟାୟ-୭୯)

ଭଗବାନ ବ୍ୟାସ ସମସ୍ତ ପୁରାଣଗ୍ରନ୍ଥର ସାର ଆହରଣ ପୂର୍ବକ ଅଷ୍ଟାଦଶ ସଂଖ୍ୟକ ପୁରାଣ ରୂପେ ଭାଗବତ ରଚନା କରିଥିଲେ ଏବଂ ତାହାକୁ ନିଜର ସୁତ ଓ ଶିଷ୍ୟ ଶୁକମୁନିଙ୍କୁ ପଢ଼ାଇଥିଲେ । ଭାଗବତର କଥା ମାହାତ୍ମ୍ୟରେ ନିମ୍ନୋକ୍ତ ଉଲ୍ଲେଖ ଥିବାର ଦେଖାଯାଏ —

ବେଦାନ୍ତାନି ଚ ବେଦାଶ୍ଚ ମନ୍ତ୍ରାସ୍ତନ୍ତ୍ରାଣି ସଂହିତା ।
ଦଶସପ୍ତ ପୁରାଣାନି ଷଟ୍ ଶାସ୍ତ୍ରାଣି ସମାୟୟୁଃ ॥

ଅର୍ଥାତ୍ ବେଦ, ବେଦାନ୍ତ, ମନ୍ତ୍ର, ତନ୍ତ୍ର, ସଂହିତା, ସପ୍ତଦଶ ସଂଖ୍ୟକ ପୁରାଣ ଓ ଷଟ୍‌ଶାସ୍ତ୍ର, ଭାଗବତ କଥାମୃତ-ମହତ୍ତ୍ୱ ପ୍ରତିପାଦନ ନିମିତ୍ତ ସମାଗତ ହୋଇଥିଲେ । ତେଣୁ ଏଥିରୁ ସ୍ପଷ୍ଟ ଯେ ସପ୍ତଦଶ ପୁରାଣ ପରେ ଅଷ୍ଟାଦଶ ପୁରାଣ ରୂପେ ଭାଗବତ ପ୍ରଣୀତ ହୋଇଥିଲା । କିନ୍ତୁ ସେହି ଭାଗବତର ଦ୍ୱାଦଶ ସ୍କନ୍ଧର

ତ୍ରୟୋଦଶ ଅଧ୍ୟାୟରେ ପ୍ରଦତ୍ତ ପୁରାଣକ୍ରମ ଅନୁଯାରେ 'ଭାଗବତ ପୁରାଣ' ପଞ୍ଚମ ପୁରାଣ ରୂପେ ବର୍ଣ୍ଣିତ ହୋଇଅଛି । ଏଣୁ ଅଷ୍ଟାଦଶତମ ପୁରାଣ ରଚନା ପୂର୍ବରୁ ଭାଗବତ ଯେ ରଚିତ ହୋଇ ସାରିଥିଲା, ଏଥିରେ ସନ୍ଦେହ ନାହିଁ ।

ଶ୍ରୀମଦଭାଗବତ ଦ୍ୱାଦଶସ୍କନ୍ଧ ଓ ଚତୁର୍ଦ୍ଦଶ ପଞ୍ଚଦଶ ଅଧ୍ୟାୟରେ ବିଭକ୍ତ ଏବଂ ଏହାର ପ୍ରତିପାଦ୍ୟ ବିଷୟ ହେଉଛି ଦର୍ଶନ ଦେବୀଭାଗବତ ଚତୁର୍ଦ୍ଦଶ ଅଠର ଅଧ୍ୟାୟରେ ବିଭକ୍ତ ଏବଂ ଏହାର ପ୍ରତିପାଦ୍ୟ ବିଷୟ ହେଉଛି ତନ୍ତ୍ର ।

ହୟଗ୍ରୀବ ବ୍ରହ୍ମବିଦ୍ୟା ଯତ୍ର ବୃତ୍ରବଧସ୍ତଥା ।
ଗାୟତ୍ର୍ୟା ଚ ସମାରମ୍ଭସ୍ତଦ୍‌ବୈ ଭାଗବତଂ ବିଦୁଃ ॥

ଉପଯୁକ୍ତ ଶ୍ଳୋକ ଅନୁଯାୟୀ ହୟଗ୍ରୀବ ମନ୍ତ୍ର, ବ୍ରହ୍ମବିଦ୍ୟା ଓ ବୃତ୍ରାସୁର ବଧ ବିଷୟକୁ ଅବଲମ୍ବନ କରି ଗାୟତ୍ରୀ ମନ୍ତ୍ରାକ୍ଷରକୁ ନେଇ ଯେଉଁ ଗ୍ରନ୍ଥର ଶୁଭାରମ୍ଭ ହୋଇଥିବ ତାହା ଭାଗବତ ମହାପୁରାଣ ରୂପେ ଅଭିହିତ ହେବ । ଉକ୍ତ ବିଷୟର ଉଭୟ ଭାଗବତ ପ୍ରତି ପ୍ରଯୁଜ୍ୟ, କୃଷ୍ଣ ଦ୍ୱୈପାୟନ ବ୍ୟାସଦେବ ବେଦର ଶାଖା ବିଭାଗ, ପୁରାଣ, ବେଦାନ୍ତ, ଭାରତ ପ୍ରଣୟନ କରି ମଧ୍ୟ ମନ ତାଙ୍କର ସନ୍ତୁଷ୍ଟ ହୋଇ ନ ଥିବା ନିମ୍ନୋକ୍ତିରୁ ଜଣାଯାଏ—

ବେଦଶାଖାଃ ପୁରାଣାନି କୃତ୍ୱା ସତ୍ୟବତୀ ସୁତଃ ।
କୃତ୍ୱା ସନ୍ତୋଷ ସମ୍ପ୍ରାପ୍ତୋଽଭବନ୍ ରାଜନ୍ମନସ୍ୟପି ॥

ତେଣୁ ମହର୍ଷି ନାରଦଙ୍କର ପରାମର୍ଶ ଅନୁସାରେ ବ୍ୟାସଦେବ, ବ୍ୟାସଦେବଙ୍କ ମହିମା ବର୍ଣ୍ଣନ ନିମିତ୍ତ ଭାଗବତ ରଚନା କରିଥିଲେ । କେତେକ ଆଲୋଚକଙ୍କ ମତରେ ମହାପୁରାଣ ରୂପେ ପରିଚିତ ଭାଗବତ ମୁଖ୍ୟତଃ ଏକ ଥିଲା, ମାତ୍ର ବୌଦ୍ଧଯୁଗ ପରେ ଶାକ୍ତ ଓ ବୈଷ୍ଣବମାନଙ୍କର ପ୍ରେମଭକ୍ତି ଭାବନାର ଆପାତଃ ପାର୍ଥକ୍ୟକୁ ଅବଲମ୍ବନ କରି ଏହା ଦେବୀ ଭାଗବତ ଓ ଶ୍ରୀମଦ୍‌ଭାଗବତ ବା ବିଷ୍ଣୁ ଭାଗବତ ରୂପେ ଦ୍ୱିଧା ବିଭକ୍ତ ହେଲା । କାଳକ୍ରମେ ସମମତାବଲମ୍ବୀଙ୍କ ଦ୍ୱାରା ଉଭୟରୁ ଗୋଟିଏ ମହାପୁରାଣ ଓ ଅନ୍ୟଟି ଉପପୁରାଣ ରୂପେ ପରିଚିତ ହୋଇଥିବା ସମ୍ଭାବନା ଅଧିକ ଯୁକ୍ତିଯୁକ୍ତ ମନେ ହୁଏ । ଶ୍ରୀମଦ୍ ଭାଗବତର ପ୍ରତିପାଦ୍ୟ ବିଷୟ ସଂକ୍ଷେପରେ ନିମ୍ନମତେ ବର୍ଣ୍ଣିତ ହୋଇଛି—

ଆଦୌ ଦେବକୀ ଦେବୀ ଗର୍ଭଜନନଂ ଗୋପୀଗୃହେ ବର୍ଦ୍ଧନଂ
ମାୟା ପୂତନ ଜୀବିତାପହରଣଂ ଗୋବର୍ଦ୍ଧନୋଦ୍ଧାରଣମ୍ ।
କଂସଚ୍ଛେଦନ କୌରବାଦି ହନନଂ କୁନ୍ତୀସୁତା ପାଳନଂ
ଏତଦ୍ ଭାଗବତଂ ପୁରାଣମମଳଂ ଶ୍ରୀକୃଷ୍ଣଲୀଳାମୃତମ୍ ॥

(ଜ:ଚ: ପୃ—୧୧)

ଶ୍ରୀମଦ୍‌ଭାଗବତ ହେଉଛି ବୈଷ୍ଣବମାନଙ୍କର ପ୍ରିୟଗ୍ରନ୍ଥ । ପୁରାଣଗୁଡ଼ିକ ମଧ୍ୟରେ ଏହା ବହୁଜନାଦୃତ ତଥା ଜ୍ଞାନ ଓ ଭକ୍ତି ବିଷୟକ ସର୍ବୋତ୍ତମ ଗ୍ରନ୍ଥ । ଜଗତର କଲ୍ୟାଣ ପାଇଁ ଏହାକୁ ସମସ୍ତେ ପଢିବା ଓ ଶୁଣିବା ଉଚିତ । ଜ୍ଞାନ ଭକ୍ତିର ବୈଶିଷ୍ଟ୍ୟ ପ୍ରତିପାଦନ ଏହାର ପରମ ଓ ଚରମ ଲକ୍ଷ୍ୟ । ସେଥିପାଇଁ କୁହାଯାଇଛି—

ଶ୍ରୀମଦ୍ ଭାଗବତଂ ପୁରାଣମମଲଂ ଯଦ ବୈଷ୍ଣବାନାଂ ପ୍ରିୟଂ
ଯସ୍ମିନ୍ ପାରମହଂସ୍ୟମେକ ମମଲଂ ଜ୍ଞାନଂ ପରଂ ଗୀୟତେ ।
ତତ୍ର ଜ୍ଞାନବିରାଗ ଭକ୍ତି ସହିତଂ ନୈଷ୍କର୍ମ୍ୟ ମାବିଷ୍କୃତଂ
ତଚ୍ଛୃଣ୍ୱନ୍ ବିପଠନ୍ ବିଚାରଣ ପରେ ଭକ୍ତ୍ୟା ବିମୁଚ୍ୟେନ୍ନରଃ ॥
(ଭାଗ—୧୨-୧୩-୧୮)

ଶ୍ରୀମଦ୍ ଭାଗବତର 'ଭାବାର୍ଥଦୀପିକା' ଟୀକା ପ୍ରଣେତା ଶ୍ରୀଧରସ୍ୱାମୀ ନିଜର ଇଷ୍ଟଦେବତା ଶ୍ରୀ ନୃସିଂହଙ୍କୁ ବନ୍ଦନା କରିବା ପରେ ଏବଂ ଟୀକା ଆରମ୍ଭ କରିବା ପୂର୍ବରୁ ଭାଗବତକୁ ଏକ ମହାନ କଳ୍ପଦ୍ରୁମ ରୂପେ କଳ୍ପନା କରିବାକୁ ଯାଇ କହିଛନ୍ତି—

ଶ୍ରୀମଦ୍‌ଭାଗବତାଭିଧଃ ସୁରତରୁସ୍ତାରାଙ୍କୁରଃ ସଜ୍ଜନିଃ
ସ୍କନ୍ଧୈର୍ଦ୍ୱାଦଶଭିସ୍ତତଃ ପ୍ରବିଲସଦ୍‌ଭକ୍ତ୍ୟାଲବାଲୋଦୟଃ ।
ଦ୍ୱାତ୍ରିଂଶତ୍ତ୍ରିଶତଂ ଚ ଯସ୍ୟ ବିଲସଚ୍ଛାଖା ସହସ୍ରାଣ୍ୟଲଂ
ପର୍ଣ୍ଣାନ୍ୟଷ୍ଟଦଶେଷ୍ଟୋଦୋଽତ ସୁଲଭୋ ବର୍ବର୍ତ୍ତି ସର୍ବୋପରି ॥

ଶ୍ରୀମଦ୍‌ଭାଗବତ ନାମକ ଏକ ମହାନ କଳ୍ପଦ୍ରୁମ ସୃଷ୍ଟି ହୋଇଛି, ଯାହାର ବାରଟି ମୁଖ୍ୟକାଣ୍ଡ ଅଛି । ଭକ୍ତି ରୂପକ ଆଲବାଳରେ ଏହା ବଢିଛି ଏହି କଳ୍ପଦ୍ରୁମରେ ୩୩୨ଟି ଶାଖା ଓ ୧୮୦୦୦ ପତ୍ର ଅଛି । ଏଥିରେ ଥିବା ପତ୍ରକୁ ଶ୍ଲୋକ ଓ ଶାଖାକୁ ଅଧ୍ୟାୟର ପ୍ରତୀକ ରୂପେ ଗ୍ରହଣୀୟ । ଶ୍ରୀଧରସ୍ୱାମୀ ସ୍ୱୟଂ ଭାଗବତର ମୋଟ ୩୩୨ଟି ଅଧ୍ୟାୟ କଥା ଉଲ୍ଲେଖ କରିଥିଲେ ମଧ୍ୟ କେବେ କିପରି ଏହା ୩୩୫ ଅଧ୍ୟାୟ ବିଶିଷ୍ଟ ହେଲା ତାହା ଅଧିକ ଗବେଷଣାର ବିଷୟ ବୋଲି ମନେ ହୁଏ ।

ଶ୍ରୀମଦ୍‌ଭାଗବତ ଷଡ଼୍‌ଦର୍ଶନଜ୍ଞାନ ଓ କାବ୍ୟରସର ସମନ୍ୱୟାତ୍ମକ ଏକ ଅପୂର୍ବ ଗ୍ରନ୍ଥ । ପଣ୍ଡିତମାନଙ୍କ ପାଣ୍ଡିତ୍ୟର ପରୀକ୍ଷା ଭାଗବତଦ୍ୱାରା କରାଯାଇଥାଏ । ସେଥିପାଇଁ କହନ୍ତି—ବିଦ୍ୟାବତାଂ ଭାଗବତେ ପରୀକ୍ଷା । ଭାଗବତର ସହଜ ଉପଲବ୍ଧି ନିମିତ୍ତ ପଣ୍ଡିତମାନେ ବିଭିନ୍ନ ଟୀକାଗ୍ରନ୍ଥ ରଚନା କରିଛନ୍ତି । ଶ୍ରୀମଦ୍ଭ ଭାଗବତର ଉପଲବ୍ଧ ଟୀକାଗ୍ରନ୍ଥଗୁଡ଼ିକ ମଧ୍ୟରେ ବିଷ୍ଣୁସ୍ୱାମୀଙ୍କ (୧୨୮—ଖ୍ରୀ:ଅ) ଭାଗବତଭାଷ୍ୟ, ସୁଦର୍ଶନ ସୂରିଙ୍କ 'ଶୁକପକ୍ଷୀୟା', ବୀରରାଘବଙ୍କ 'ଭାଗବତଚନ୍ଦ୍ରିକା', ବିଜୟଧ୍ୱଜଙ୍କ 'ପଦରତ୍ନା-

ବଳୀ', ଶ୍ରୀମାଧ୍ୱାଚାର୍ଯ୍ୟଙ୍କ 'ତାତ୍ପର୍ଯ୍ୟ ନିର୍ଣ୍ଣୟ', ଶ୍ରୀବଲ୍ଲଭାଚାର୍ଯ୍ୟଙ୍କ (୧୪୭୩-ଖ୍ରୀ:ଅ) 'ସୁବୋଧିନୀ', ଶୁକଦେବାଚାର୍ଯ୍ୟଙ୍କ 'ସିଦ୍ଧାନ୍ତପ୍ରଦୀପ', ଶ୍ରୀ ସନାତନ ଗୋସ୍ୱାମୀଙ୍କ (୧୪୮୭ ଖ୍ରୀ:ଅ) 'ବୃହଦ୍‌ବୈଷ୍ଣବତୋଷିଣୀ', ରୂପଗୋସ୍ୱାମୀଙ୍କ (୧୪୮୯ ଖ୍ରୀ ଅ) 'ସଂକ୍ଷେପ ଭାଗବତ', ଶ୍ରୀଜୀବ ଗୋସ୍ୱାମୀଙ୍କ (୧୫୩୩-ଖ୍ରୀ:ଅ) 'କ୍ରମସନ୍ଦର୍ଭ' ବିଶ୍ୱନାଥ ଚକ୍ରବର୍ତ୍ତୀଙ୍କ (୧୬୨୮-ଖ୍ରୀ:ଅ) 'ସାରାର୍ଥଦର୍ଶିନୀ', ବଳଦେବଙ୍କ (୧୭୫୦-ଖ୍ରୀ:ଅ) 'ବୈଷ୍ଣବାନନ୍ଦିନୀ', ଶ୍ରୀରାଧାରମଣ ଗୋସ୍ୱାମୀଙ୍କ (୧୭୫୦-ଖ୍ରୀ:ଅ) 'ଦୀପିକାଦୀପନ' ଶ୍ରୀହରିଙ୍କ 'ଭକ୍ତିରସାୟନ', ଗଙ୍ଗାସହାୟ ବିଦ୍ୟାବାଚସ୍ପତିଙ୍କ 'ବଂଶୀଧର' ଓ 'ଚୂର୍ଣ୍ଣିକା' ପ୍ରଭୃତିର ନାମ ଉଲ୍ଲେଖନୀୟ । କିନ୍ତୁ ଶ୍ରୀମଦ୍‌ଭାଗବତର ଟୀକାଗୁଡ଼ିକ ମଧ୍ୟରେ ଓଡ଼ିଶାର ପ୍ରାତଃସ୍ମରଣୀୟ ଶ୍ରୀଧରସ୍ୱାମୀଙ୍କ (୧୩୦୦-ଖ୍ରୀ:ଅ) ପ୍ରଣୀତ 'ଭାବାର୍ଥଦୀପିକା' ଟୀକା ପୂର୍ଣ୍ଣାଙ୍ଗ ଟୀକା ଦୃଷ୍ଟିରୁ ପ୍ରାଚୀନତମ । ପରବର୍ତ୍ତୀ ସମସ୍ତ ଟୀକାକାର ଭାବାର୍ଥଦୀପିକା ଟୀକା ଓ ଟୀକାକାରଙ୍କୁ ବିନମ୍ର ଶ୍ରଦ୍ଧା ଓ ସମ୍ମାନ ଜଣାଇଥିବାର ଦେଖାଯାଏ । ଶ୍ରୀମଦ୍‌ଭାଗବତରେ ଟୀକାଗୁଡ଼ିକ ମଧ୍ୟରେ 'ଭାବାର୍ଥଦୀପିକା' ଏକ ପ୍ରାମାଣିକ ଟୀକା ରୂପେ ସ୍ୱୀକୃତ । ସେଥିପାଇଁ କୁହାଯାଇଛି—

ବ୍ୟାସୋ ବେତ୍ତି ଶୁକୋ ବେତ୍ତି ରାଜା ବେତ୍ତି ନ ବେତ୍ତି ବା ।
ଶ୍ରୀଧରଃ ସକଳଂ ବେତ୍ତି ଶ୍ରୀନୃସିଂହପ୍ରସାଦତଃ ॥

ଶ୍ରୀନୃସିଂହଙ୍କ ବରପ୍ରସାଦଲବ୍ଧ ଶ୍ରୀଧରସ୍ୱାମୀଙ୍କ ଭାଗବତଟୀକା ଶୁଣିବା ଓ ଆଲୋଚନା କରିବା ମହାପ୍ରଭୁ ଶ୍ରୀଚୈତନ୍ୟଙ୍କର ଦୈନନ୍ଦିନ କାର୍ଯ୍ୟ ଥିଲା । "ଚୈତନ୍ୟଚରିତାମୃତ'ର ବର୍ଣ୍ଣନା ଅନୁସାରେ ଥରେ ଆଚାର୍ଯ୍ୟ ବଲ୍ଲଭ ସ୍ୱପ୍ରଣୀତ ଭାଗବତଟୀକା ଚୈତନ୍ୟଙ୍କୁ ଦେଖାଇ କହିଲେ—'ପ୍ରଭୋ ! ମୋର ଏହି ଟୀକାରେ ଶ୍ରୀଧରକୃତ ଭ୍ରମ ପ୍ରମାଦ ଦୂର କରାଯାଇଛି । ଆପଣ ଏହାକୁ ସ୍ୱୀକୃତି ଦିଅନ୍ତୁ ।' ଶ୍ରୀଧରଙ୍କ ପ୍ରତି କଟୂ ମନ୍ତବ୍ୟରେ ମର୍ମାହତ ହୋଇ ଶ୍ରୀଚୈତନ୍ୟ କହିଲେ—ପରମ-ଭାଗବତ ଓ ଭାଗବତତତ୍ତ୍ୱର ପ୍ରତ୍ୟକ୍ଷକର୍ତ୍ତା ଶ୍ରୀଧରସ୍ୱାମୀଙ୍କ ଅନୁଗ୍ରହରୁ ଭାଗବତରେ ମୋର ପ୍ରବେଶ କରିବା ସମ୍ଭବ ହୋଇଛି—

ଶ୍ରୀଧର ସ୍ୱାମୀ ପ୍ରସାଦେତେ ଭାଗବତ ଜାନି ।
ଜଗଦ୍‌ଗୁରୁ ଶ୍ରୀଧରସ୍ୱାମୀ ଗୁରୁ କରି ମାନି ॥ ୭-୧୩୩ ॥

(ଚୈତନ୍ୟ ଚରିତାମୃତ-ଅନ୍ତ୍ୟଲୀଳା-୭ମ ପରିଚ୍ଛେଦ)

ତେଣୁ ଭାଗବତତତ୍ତ୍ୱର ଜିଜ୍ଞାସୁ ହୋଇ ଯେ ଶ୍ରୀଧରସ୍ୱାମୀଙ୍କ ଟୀକା ପ୍ରତି ଅବଜ୍ଞା କରେ ଓ ଅନ୍ୟର ଆଶ୍ରୟ ନିଏ, ସେ ଜଣେ ଅହଂକାରୀ ବୋଲି ବିବେଚିତ ହୁଏ । ଏହି ଉକ୍ତିରୁ ଜଗଦ୍‌ଗୁରୁ ଶ୍ରୀଧରସ୍ୱାମୀଙ୍କ ପ୍ରତି ଓ ତାଙ୍କ ପ୍ରଣୀତ 'ଭାବାର୍ଥ-ଦୀପିକା' ଟୀକା ପ୍ରତି ମହାପ୍ରଭୁ ଶ୍ରୀଚୈତନ୍ୟ କିପରି ଶ୍ରଦ୍ଧା ଓ ସମ୍ମାନ ପ୍ରଦର୍ଶନ

କରୁଥିଲେ ତାହାର ପ୍ରମାଣ ମିଳେ । ସେହି ଶ୍ରୀଧରସ୍ୱାମୀ ଓଡ଼ିଆ ଭାଗବତ ରଚନା କ୍ଷେତ୍ରରେ ଗୋସ୍ୱାମୀ ଜଗନ୍ନାଥଦାସଙ୍କ ପ୍ରେରଣାର ଯେ ମୂଳ ଥିଲେ, ସେଥିରେ ସନ୍ଦେହର ଅବକାଶ ନାହିଁ । ଭାଗବତ ଦ୍ୱାଦଶ ସ୍କନ୍ଧର ତ୍ରୟୋଦଶ ଅଧ୍ୟାୟରେ ଏ ପ୍ରସଙ୍ଗର ସୂଚନା ଦିଆଯାଇଥିବାର ଦେଖାଯାଏ—

ଶ୍ରୀଧର ନାମେ ଯେ ବିପ୍ରବର । କଳିଯୁଗରେ ଜନ୍ମ ତାର ॥
ଶ୍ରୀଭାଗବତ ଯେ ପୁରାଣ । ଅଷ୍ଟାଦଶ ସହସ୍ର ଶ୍ଳୋକେଣ ॥
ତା ଟୀକା ଚନ୍ଦ୍ରବଂଶ ସତ୍ୟ । କରଇ ଶ୍ରୀଧର ପ୍ରକାଶ ॥
ବିପ୍ରକୁଳେ ଜନମ ହୋଇ । ଜଗନ୍ନାଥ ନାମ ସେ ବହି ॥
ପ୍ରାକୃତବନ୍ଧେ ଭାଗବତ । କହିଲେ ସନ୍ଥଜନ ହିତ ॥

(ପୃ-୧୨୫)

୨) ଓଡ଼ିଆ ଭାଗବତ—

ଜଗନ୍ନାଥ ଦାସଙ୍କ ପ୍ରଣୀତ ଓଡ଼ିଆ ଭାଗବତ ମୂଳ ସଂସ୍କୃତ ଗ୍ରନ୍ଥର ଅକ୍ଷରିକ ଅନୁବାଦ ନୁହେଁ ବୋଲି ବହୁ ଆଲୋଚକ ମତବ୍ୟକ୍ତ କରିଛନ୍ତି । ମୂଳଗ୍ରନ୍ଥର ମୌଳିକ ବିଷୟବସ୍ତୁକୁ ନେଇ ଓ ନିଜର ସ୍ୱାତନ୍ତ୍ର୍ୟ ବଜାୟ ରଖି ସେ ଓଡ଼ିଆ ଭାଗବତ ରଚନା କରିଥିବା ଜଣାଯାଏ । ମୂଳଗ୍ରନ୍ଥଠାରୁ ଓଡ଼ିଆ ଭାଗବତରେ ଯେଉଁ କେତେକ ପାର୍ଥକ୍ୟ ପରିଲକ୍ଷିତ ହୁଏ ତାହାକୁ ନିମ୍ନମତେ ଉଲ୍ଲେଖ କରାଯାଇପାରେ । ଟୀକାକାରମାନଙ୍କ ଅନୁସାରେ ଶ୍ରୀମଦ୍‌ଭାଗବତର ଅଧ୍ୟାୟ ସଂଖ୍ୟା ଭିନ୍ନ ଭିନ୍ନ ଥିବାର ଦେଖାଯାଏ । କିନ୍ତୁ ଶ୍ରୀଧରସ୍ୱାମୀଙ୍କ ଗୃହୀତ ପାଠ ଅନୁଯାୟୀ ଦ୍ୱାଦଶସ୍କନ୍ଧ ବିଶିଷ୍ଟ ସଂସ୍କୃତ ଭାଗବତ ୩୩୫ (ତିନିଶହ ପଞ୍ଚତିରିଶି) ଅଧ୍ୟାୟରେ ବିଭକ୍ତ ହୋଇଥିବାବେଳେ ଓଡ଼ିଆ ଭାଗବତ ତେରଟିସ୍କନ୍ଧ ଓ ତିନିଶହ ପଞ୍ଚାବନ ଅଧ୍ୟାୟରେ ବିଭକ୍ତ ହୋଇଛି । ଓଡ଼ିଆ ଭାଗବତରେ ତ୍ରୟୋଦଶ ସ୍କନ୍ଧରୁ ତେରଟି ଅଧ୍ୟାୟ ବାଦ୍ ଦେଲେ ଦ୍ୱାଦଶ ସ୍କନ୍ଧ ପର୍ଯ୍ୟନ୍ତ ମୋଟ ଅଧ୍ୟାୟ ସଂଖ୍ୟା ୩୪୨ ହେବ । ଏଠାରେ ଆଲୋଚ୍ୟ ସ୍କନ୍ଧର ଶେଷ ଅଧ୍ୟାୟରେ ଥିବା ନିମ୍ନୋକ୍ତ ପଦ ବିସ୍ତରକୁ ନିଆଯାଇପାରେ—

ଜଗନ୍ନାଥଦାସଙ୍କ ଗୀତ । ନାମ ତା ଶିଶୁ ଭାଗବତ ॥
ତିନିଶତ ଉନତିରିଶ । ଏକାଦଶଯାଏ ପ୍ରକାଶ ॥
ଅଧ୍ୟା ନାମେଣ ଯେ ବିଶେଷ । ଶ୍ରୀଭାଗବତ ଗୀତରସ ॥

କିନ୍ତୁ ଶ୍ରୀଧରସ୍ୱାମୀଙ୍କ ଗୃହୀତ ପାଠ ଅନୁସାରେ ଏକାଦଶ ସ୍କନ୍ଧ ପର୍ଯ୍ୟନ୍ତ ସଂସ୍କୃତ ଭାଗବତ ୩୨୨ ଅଧ୍ୟାୟ ବିଶିଷ୍ଟ ହେଉଥିବାବେଳେ ଓଡ଼ିଆ ଭାଗବତ ୩୨୯ ଅଧ୍ୟାୟରେ ବିଭକ୍ତ ହୋଇଛି । ମୂଳ ଭାଗବତର ଅଧ୍ୟାୟ ସଂଖ୍ୟା ଓ ମୁଦ୍ରିତ ଓଡ଼ିଆ ଭାଗବତର ଅଧ୍ୟାୟ ସଂଖ୍ୟା ମଧ୍ୟରେ ଥିବା ପାର୍ଥକ୍ୟ କେବଳ ଦଶମ ଓ ଏକାଦଶ

ସ୍କନ୍ଧରେ ଦେଖାଯାଉଥିଲେ ମଧ୍ୟ ଅନ୍ୟାନ୍ୟ ସ୍କନ୍ଧମାନଙ୍କରେ ଉଭୟ ଗ୍ରନ୍ଥର ଅଧ୍ୟାୟ ସଂଖ୍ୟା ସମାନ ରହିଛି—

| ସ୍କନ୍ଧସଂଖ୍ୟା | ସଂସ୍କୃତ ଭାଗବତ | ଓଡ଼ିଆ ଭାଗବତ |
|---|---|---|
| ୧ | ୧୯ | ୧୯ |
| ୨ | ୧୦ | ୧୦ |
| ୩ | ୩୩ | ୩୩ |
| ୪ | ୩୧ | ୩୧ |
| ୫ | ୨୬ | ୨୬ |
| ୬ | ୧୯ | ୧୯ |
| ୭ | ୧୫ | ୧୫ |
| ୮ | ୨୪ | ୨୪ |
| ୯ | ୨୪ | ୨୪ |
| ୧୦ | ୯୦ | ୯୬ |
| ୧୧ | ୩୧ | ୩୨ |
| ୧୨ | ୧୩ | ୧୩ |
| | ୩୩୫ | ୩୪୨ |

ଉପଯୁକ୍ତ ଅଧ୍ୟାୟ ସଂଖ୍ୟା ଭାଗବତରେ ଦ୍ୱାଦଶ ସ୍କନ୍ଧ ତ୍ରୟୋଦଶ ଅଧ୍ୟାୟ ଶେଷରେ ସୂଚୀତ ହୋଇଛି । ସଂସ୍କୃତ ଭାଗବତ ଦଶମ ସ୍କନ୍ଧର ୧, ୩୪, ୩୬, ୪୯ ୫୧ ଓ ୬୮ ଅଧ୍ୟାୟକୁ ଓଡ଼ିଆ ଭାଗବତରେ ଦୁଇଟି କରି ଏବଂ ଏକାଦଶ ସ୍କନ୍ଧର ଦ୍ୱିତୀୟ ଅଧ୍ୟାୟକୁ ଦୁଇଟି ଅଧ୍ୟାୟରେ ବିଭକ୍ତ କରାଯାଇଥିବାରୁ ଏକାଦଶ ସ୍କନ୍ଧ ପର୍ଯ୍ୟନ୍ତ ଏହାର ଅଧ୍ୟାୟ ସଂଖ୍ୟା ୩୨୯ ହୋଇଛି । ସଂସ୍କୃତ ଭାଗବତରେ ୧୮ ହଜାର ଶ୍ଳୋକ ଥିବାବେଳେ ଓଡ଼ିଆ ଭାଗବତ ପ୍ରାୟ ୨୬୧୬୦ ପଦରେ ରଚିତ ହୋଇଛି ।

ବିଷୟବସ୍ତୁ ସଂଯୋଜନାରେ ମଧ୍ୟ ସଂସ୍କୃତ ଭାଗବତଠାରୁ ଓଡ଼ିଆ ଭାଗବତରେ କେତେକ ପାର୍ଥକ୍ୟ ରହିଛି । ଉଦାହରଣ ସ୍ୱରୂପ ମୂଳଭାଗବତରେ ଦ୍ୱିତୀୟ ଅଧ୍ୟାୟ ପୁରୁଷସଂସ୍ଥା ବର୍ଣ୍ଣନ ନାମରେ ଅଭିହିତ । କିନ୍ତୁ ଓଡ଼ିଆ ଭାଗବତରେ ଏହା ଯୋଗଧ୍ୟୁତ ବର୍ଣ୍ଣନ ନାମରେ ପରିଚିତ । ସେହିପରି ମୂଳଗ୍ରନ୍ଥର ତୃତୀୟ ଅଧ୍ୟାୟରେ ଭକ୍ତଯୋଗର ବର୍ଣ୍ଣନା ଥିବାବେଳେ ଓଡ଼ିଆ ଭାଗବତରେ ସେହି ବିଷୟ ଦୁଇଟି (୩ ଓ ୪) ଅଧ୍ୟାୟରେ ବର୍ଣ୍ଣିତ ହୋଇଛି । ମୂଳ ଗ୍ରନ୍ଥର ସପ୍ତମ ଅଧ୍ୟାୟରେ ବରାହ-

ଠାରୁ ଶ୍ରୀକୃଷ୍ଣଙ୍କ ପର୍ଯ୍ୟନ୍ତ ଅବତାର ଚରିତ ବର୍ଣ୍ଣନା କରାଯାଇଥିବା ବେଳେ ସେହି କ୍ଷେତ୍ରରେ ଓଡ଼ିଆ ଭାଗବତରେ ବରାହଠାରୁ କଳ୍କି ଅବତାର ପର୍ଯ୍ୟନ୍ତ ଘଟଣାର ଉଲ୍ଲେଖ ରହିଛି ।

ସଂସ୍କୃତ ଭାଗବତରେ ଚତୁର୍ଥ ସ୍କନ୍ଧରେ ଧ୍ରୁବଚରିତ ଅଷ୍ଟମରୁ ତ୍ରୟୋଦଶ ଅଧ୍ୟାୟରେ ଉଲ୍ଲେଖ ଥିବାବେଳେ ଓଡ଼ିଆ ଭାଗବତରେ ଏହା ନବମରୁ ଚତୁର୍ଦ୍ଦଶ ଅଧ୍ୟାୟ ମଧ୍ୟରେ ବର୍ଣ୍ଣିତ ହୋଇଛି । ପଞ୍ଚମ ସ୍କନ୍ଧର ପଞ୍ଚଦଶ ଅଧ୍ୟାୟ ଭରତବଂଶ ବର୍ଣ୍ଣନ ନାମରେ ଅଭିହିତ ହେଲାବେଳେ ଓଡ଼ିଆ ଭାଗବତରେ ସେହି ଅଧ୍ୟାୟଟି ପ୍ରିୟବ୍ରତ ବଂଶ ବର୍ଣ୍ଣନ ରୂପେ ପରିଚିତ ହୋଇଛି । ସେହିପରି ସପ୍ତଦଶ ଅଧ୍ୟାୟରେ ଶଙ୍କରକୃତ ସଙ୍କର୍ଷଣସ୍ତବ ଥିବାବେଳେ ଓଡ଼ିଆ ଭାଗବତର ସେହି ଅଧ୍ୟାୟରେ ସଂସାର ବ୍ୟବହାର ବର୍ଣ୍ଣନ ଓ ପ୍ରହ୍ଲାଦ ସ୍ତୁତିର ଉଲ୍ଲେଖ ଅଛି ।

ମୂଳ ଗ୍ରନ୍ଥର ସପ୍ତମସ୍କନ୍ଧ ଚତୁର୍ଥ ଅଧ୍ୟାୟରେ ପ୍ରହ୍ଲାଦ ଜନ୍ମ ବର୍ଣ୍ଣିତ ହୋଇଛି । କିନ୍ତୁ ଓଡ଼ିଆ ଭାଗବତର ସେହି ଅଧ୍ୟାୟଟି ବିଷ୍ଣୁ ପ୍ରସନ୍ନ ବର୍ଣ୍ଣନ ନାମରେ ଅଭିହିତ ହୋଇଥିବାର ଦେଖାଯାଏ । ଅଷ୍ଟମ ସ୍କନ୍ଧର ତ୍ରୟୋଦଶ ଓ ଚତୁର୍ଦ୍ଦଶ ଅଧ୍ୟାୟ ବର୍ଣ୍ଣିତ ଭାବି ସପ୍ତମନୁଙ୍କ ପରିଚୟ ଓଡ଼ିଆ ଗ୍ରନ୍ଥର ତ୍ରୟୋଦଶ ଅଧ୍ୟାୟ ମଧ୍ୟରେ ଦିଆଯାଇଛି । ମୂଳଗ୍ରନ୍ଥର ଦଶମ ସ୍କନ୍ଧ ପ୍ରଥମ ଓ ଦ୍ୱିତୀୟ ଅଧ୍ୟାୟର ବିଷୟ-ବସ୍ତୁ ଓଡ଼ିଆ ଭାଗବତର ପ୍ରଥମରୁ ତୃତୀୟ ଅଧ୍ୟାୟ ମଧ୍ୟରେ ବର୍ଣ୍ଣିତ ହୋଇଛି ଏବଂ ନବମ ଓ ଦଶମ ଅଧ୍ୟାୟର ବିଷୟ ଓଡ଼ିଆ ଗ୍ରନ୍ଥର ଦଶମ ଅଧ୍ୟାୟରେହିଁ ଦିଆଯାଇଛି । ସେହିପରି ଦଶମ ସ୍କନ୍ଧ ପୂର୍ବାର୍ଦ୍ଧଭାଗର ପଞ୍ଚତ୍ରିଂଶ ଅଧ୍ୟାୟର କେତେକ ଅଂଶଠାରୁ ଅଣତ୍ରିଶ ଅଧ୍ୟାୟ ପର୍ଯ୍ୟନ୍ତ ସମସ୍ତ ବିଷୟ ଓଡ଼ିଆ ଭାଗବତ ଦ୍ୱାରକା ଲୀଳାର ପ୍ରଥମ ପାଞ୍ଚୋଟି ଅଧ୍ୟାୟ ମଧ୍ୟରେ ବର୍ଣ୍ଣନା କରାଯାଇଛି । ମୂଳଗ୍ରନ୍ଥର ଉତ୍ତରାର୍ଦ୍ଧର ଅଠାବନ ଅଧ୍ୟାୟରେ ଥିବା ବିଷୟ ଓଡ଼ିଆ ଭାଗବତର ୬୨ ଓ ୬୩ ଅଧ୍ୟାୟ ଦୁଇଟିରେ ଦିଆଯାଇଛି । ସେହିପରି ଅଶୀତିତମ ଅଧ୍ୟାୟର ଗୃହଚର୍ଯ୍ୟା ବିଷୟ ଓଡ଼ିଆ ଗ୍ରନ୍ଥରେ ଶ୍ରୀକୃଷ୍ଣମାୟା ରୂପେ ବର୍ଣ୍ଣିତ ହୋଇଛି ।

ସଂସ୍କୃତ ଭାଗବତର ଏକାଦଶ ସ୍କନ୍ଧ ତୃତୀୟ ଅଧ୍ୟାୟ ବର୍ଣ୍ଣିତ ମାୟା, ମୁକ୍ତି ଓ କର୍ମଯୋଗ ବିଷୟ ଓଡ଼ିଆ ଭାଗବତର ତୃତୀୟ ଓ ଚତୁର୍ଥ ଅଧ୍ୟାୟରେ ଉଲ୍ଲେଖ କରାଯାଇଛି ଏବଂ ଏକବିଂଶ ଅଧ୍ୟାୟଟିରେ ଦ୍ରବ୍ୟଦେଶାଦି ଗୁଣଦୋଷ ବର୍ଣ୍ଣନା ହୋଇଥିବା ବେଳେ ସେହି ବିଷୟ ଓଡ଼ିଆ ଭାଗବତର ବାଇଶ ଅଧ୍ୟାୟରେ ଦେବତତ୍ତ୍ୱ କଥନ ନାମରେ ଖ୍ୟାତ ହୋଇଛି । ବିଷୟବସ୍ତୁର ସଂଯୋଜନାରେ ପୁନର୍ବିନ୍ୟାସ କରାଯିବା ସଙ୍ଗେ ସଙ୍ଗେ ଓଡ଼ିଆ ଭାଗବତରେ କେତେକ ବିଷୟଗତ ନୂତନତା ଥିବାର ଦେଖାଯାଏ ।

ଓଡ଼ିଆ ଭାଗବତରେ ରାମକୃଷ୍ଣଙ୍କୁ ନେବାପାଇଁ କଂସ ଆଦେଶରେ ଆସିଥିବା ଅକ୍ରୂର ଗୋକୁଳରେ ତାଙ୍କୁ ଚିହ୍ନି ନପାରିବା ବିଷୟ ଓ ଗୋପୀ ବୃନ୍ଦାବତୀ ଚରିତ ମୂଳ ଭାଗବତରେ ନାହିଁ । ସଂସ୍କୃତ ଭାଗବତ ଅପେକ୍ଷା କଂସର ରଙ୍ଗସଭାରେ ସମବେତ କଂସ ସମର୍ଥକ ନରପତିମାନଙ୍କର ଏକ ଦୀର୍ଘତାଲିକା ଓଡ଼ିଆଭାଗବତରେ ଅଛି । ନନ୍ଦ ଓ ଅକ୍ରୁର ସମ୍ବାଦ ନୂତନ ଗ୍ରନ୍ଥ ତୁଳନାରେ ଓଡ଼ିଆ ଗ୍ରନ୍ଥରେ ବିସ୍ତୃତ-ଭାବେ ବର୍ଣ୍ଣିତ ହୋଇଛି । ସେହି ଦୃଷ୍ଟିରୁ ଓଡ଼ିଆ ଭାଗବତରେ ବିଷୟବସ୍ତୁର ଉପସ୍ଥାପନା, ଜ୍ଞାନ ଓ ଭକ୍ତିଯୋଗର ତତ୍ତ୍ୱ ଆଲୋଚନା, ବର୍ଣ୍ଣନା ଶୈଳୀ ପ୍ରଭୃତି ବିଚାର କଲେ ସବୁ କ୍ଷେତ୍ରରେ ଜଗନ୍ନାଥ ଦାସ ସ୍ୱୀୟ ମୌଳିକ ଚିନ୍ତାର ପରିଚୟ ଦେଇଥିବାର ଦେଖାଯାଏ ।

ମହାତ୍ମା ଜଗନ୍ନାଥ ଦାସ ଭାଗବତର ଏକାଦଶ ସ୍କନ୍ଧ ପର୍ଯ୍ୟନ୍ତ ରଚନା ଶେଷ କରିଥିଲେ, ଏଥିରେ ସନ୍ଦେହ ନାହିଁ । କିନ୍ତୁ ଦ୍ୱାଦଶ ସ୍କନ୍ଧ ରଚନା ବିଷୟରେ କେତେକ ସନ୍ଦେହ ସୂତ୍ରପାତ ହୋଇଛି । ଦ୍ୱାଦଶ ସ୍କନ୍ଧର ଅଧ୍ୟାୟ ଶେଷରେ ଜଗନ୍ନାଥ ଦାସଙ୍କ ନାମ ଭଣିତା ହୋଇଥିଲେ ମଧ୍ୟ ଏହା ତାଙ୍କ ଶିଷ୍ୟ ବିପ୍ର ମହାଦେବ ଦାସଙ୍କ ରଚନା ବୋଲି ନିମ୍ନୋକ୍ତ ପଦରୁ ସୂଚିତ ହୁଏ—

ଦ୍ୱାଦଶସ୍କନ୍ଧ ଭାଗବତ । ତ୍ରୟୋଦଶ ଅଧ୍ୟା ନିର୍ମିତ ॥
ଜଗନ୍ନାଥ ଦାସ ପ୍ରକାଶ । କରିତ ଲେଉଁଅଛି ଆଶ ॥
ନାମ ମୋହର ମହାଦେବ । ବିପ୍ରର କୁଳେ ମୁଁ ସମ୍ଭବ ।
କୃଷ୍ଣ ସଙ୍ଗତେ ଜଗନ୍ନାଥ । ଚଳିଲେ ଗୋଲକ ଯେ ପଥ ॥
ମୁଁ ଏହା କରଇ ବିଚାର । ଅଷ୍ଟାଦଶ ପୁରାଣ ସାର ।
ଦ୍ୱାଦଶ ସ୍କନ୍ଧ ତ୍ରୟୋଦଶ । ଯେମନ୍ତେ ହୋଇବ ପ୍ରକାଶ ॥

(ଭାଗ-୧୨-ଅ୧, ପୃ,—୨ )

ଦ୍ୱାଦଶ ସ୍କନ୍ଧର ଶେଷ ଅଧ୍ୟାୟରେ ଥିବା ନିମ୍ନଲିଖିତ ପଙ୍‌କ୍ତିଗୁଡ଼ିକୁ ମଧ୍ୟ ଏ ପ୍ରସଙ୍ଗରେ ବିଚାରକୁ ନିଆଯାଇ ପାରେ—

ଏଣୁ ତତ୍ତ୍ୱ ବୋଧିବା ଅର୍ଥେ । ଦ୍ୱାଦଶ ସ୍କନ୍ଧେ ଶ୍ରୁତିପଥେ ॥
ବିପ୍ରଙ୍କଠାରୁ ଶୁଣି ମନେ । ଚିତ୍ତୋଇ କରିଲି ଲେଖନେ ।
ଏଣୁ ସେ ଗୀତରେ ବିଶୁଦ୍ଧ । ଜଗନ୍ନାଥ ନାମ ପ୍ରସିଦ୍ଧ ॥
× × ×
ତେଣୁ ତାଙ୍କ ଚରଣେ ମନ । ସୁଜନେ ଦୋଷ ମୋ ନଧେନ ॥
ଆଶା ମୋ' ସାଧୁଙ୍କ ଚରଣ । ଶରଣ ମହାଦେବ ହୀନ ॥

(ଭାଗ-୧୨, ଅ-୧୩, ପୃ—୧୩୭)

କେତେକ ଆଲୋଚକ ପୂର୍ବରୁ ଉଦ୍ଧୃତ ହୋଇଥିବା 'ଶ୍ରୀଜଗନ୍ନାଥ ଚରିତାମୃତ'ର ଉଲ୍ଲେଖକୁ ଆଧାର କରି ଜଗନ୍ନାଥ ଦାସ ଦ୍ୱାଦଶ ସ୍କନ୍ଧ ପର୍ଯ୍ୟନ୍ତ ଭାଗବତ ରଚନା ଶେଷ କରିଥିଲେ ବୋଲି ଯେଉଁ ମତ ପ୍ରକାଶ କରିଛନ୍ତି ତାହା ଠିକ୍ ମନେ ହୁଏ ନାହିଁ । କାରଣ ସେଥିରେ ଜଗନ୍ନାଥ ଦାସ ଟୀକା ଟିପ୍ପଣୀ ସହିତ ଭାଗବତ ଦ୍ୱାଦଶ ସ୍କନ୍ଧ ପର୍ଯ୍ୟନ୍ତ ଗଭୀର ଭାବେ ଅଧ୍ୟୟନ କରିଥିବାର ସୂଚନା ଦିଆଯାଇଛି । ଉପର୍ଯ୍ୟୁକ୍ତ ଉକ୍ତିକୁ ବିଗ୍ଭର କରି କେତେକ ଆଲୋଚକ ଜଗନ୍ନାଥ ଦାସ ଭାଗବତ ଦ୍ୱାଦଶ ସ୍କନ୍ଧର କେତୋଟି ଅଧ୍ୟାୟ ରଚନା କରିଥିବାର ଅନୁମାନ କରିଛନ୍ତି । କିନ୍ତୁ ଭାଷା, ଭାବ ପ୍ରକାଶନ ଓ ରଚନା ଶୈଳୀ ଦୃଷ୍ଟିରୁ ଦ୍ୱାଦଶ ସ୍କନ୍ଧର ପାଠ ଜଗନ୍ନାଥ ଦାସଙ୍କ ରଚନାଠାରୁ ପୃଥକ ବୋଲି ନିର୍ବିବାଦରେ କୁହାଯାଇପାରେ । ତେଣୁ ଜଗନ୍ନାଥ ଦାସଙ୍କ ପରେ ଭକ୍ତ ମହାଦେବ ଦାସ ଦ୍ୱାଦଶ ସ୍କନ୍ଧ ଓ ଭକ୍ତ ଦ୍ୱାରକା ଦାସ ତ୍ରୟୋଦଶ ସ୍କନ୍ଧ ଭାଗବତ ରଚନା କରିଥିବା 'ଦ୍ୱାରକା-ଜଗନ୍ନାଥ ଦାସ' ନାମ ଭଣିତାରୁ ଜଣାଯାଏ । ଓଡ଼ିଆ ଭାଗବତର ବିଷୟବସ୍ତୁ ସଂକ୍ଷେପରେ ନିମ୍ନମତେ ଉଲ୍ଲେଖ କରାଯାଇପାରେ ।

୩) ଭାଗବତର ବିଷୟବସ୍ତୁ—

ଭାଗବତର ଦ୍ୱାଦଶ ସ୍କନ୍ଧରେ ଥିବା ଅନୁକ୍ରମଣିକା ଅନୁସାରେ ପ୍ରତ୍ୟେକ ସ୍କନ୍ଧର ଅଧ୍ୟାୟ ସଂଖ୍ୟା ଓ ବିଷୟବସ୍ତୁ ସଂକ୍ଷେପରେ ନିମ୍ନମତେ ଉଲ୍ଲେଖ କରାଯାଇ ପାରେ ।

ପ୍ରଥମସ୍କନ୍ଧ—

ଶୁକଦେବ ପ୍ରସନ୍ନ ହୋଇ । ଶ୍ରୀଭାଗବତ ଗ୍ରନ୍ଥ କହି ।
ଊନବିଂଶ ଅଧ୍ୟାରେ ପୁଣ । ପ୍ରଥମ ସ୍କନ୍ଧ ଯେ ସମ୍ପୂର୍ଣ୍ଣ ॥
ପ୍ରଥମ ସ୍କନ୍ଧେ ଏ ନିର୍ବାଣ । ଶୁକ ଶୌନକ ମୁନିଗଣ ॥

॥ ପୃ—୯୫ ॥

ଓଡ଼ିଆ ଭାଗବତର ପ୍ରଥମ ସ୍କନ୍ଧ ଊଣାଇଶ ଅଧ୍ୟାୟରେ ବିଭକ୍ତ । ଏଥିରେ (୧) ନୈମିଷାରଣ୍ୟରେ ଶ୍ରୀମଦ ଭାଗବତ ବିଷୟରେ ସୂତଙ୍କୁ ଋଷିମାନଙ୍କର ପ୍ରଶ୍ନ, (୨) ଭାଗବତ କଥା ଶ୍ରବଣ ଓ କୀର୍ତ୍ତନରେ ଶ୍ରେୟଲାଭ ଏବଂ ଭଗବଦ୍ ଭକ୍ତି ମାହାତ୍ମ୍ୟ ବିଷୟରେ ସୂତଙ୍କର ପ୍ରତ୍ୟୁତ୍ତର ଦାନ, (୩) ଭଗବାନଙ୍କ ବାଇଶି ଅବତାର (କୁମାର, ଯଜ୍ଞେଶ (ବରାହ), ନାରଦ, ନରନାରାୟଣ, କପିଳ, ଦତ୍ତାତ୍ରେୟ, ଆକୂତେୟ, ଋଷଭ, ପୃଥୁ, ମତ୍ସ୍ୟ, କୂର୍ମ, ଧନ୍ୱନ୍ତରି, ମୋହିନୀ, ନୃସିଂହ, ବାମନ, ପରଶୁରାମ, ବ୍ୟାସ, ରାମ, କୃଷ୍ଣ, ବୁଦ୍ଧ ଓ କଲ୍କି) କଥାର

ବର୍ଣ୍ଣନା ଅଛି, (୪) ବେଦବ୍ୟାସଙ୍କ ଖିନ୍ନତା ଓ ନାରଦ ସମାଗମ, (୫) ବ୍ୟାସ ନାରଦ ସମ୍ବାଦ ଭଗବଦଗୁଣ କୀର୍ତ୍ତନର ମହତ୍ତ୍ୱ ଓ ନାରଦ କର୍ତ୍ତୃକ ବ୍ୟାସଙ୍କ ପୂର୍ବଜନ୍ମବୃତ୍ତାନ୍ତ ପ୍ରକାଶ, (୬) ବ୍ୟାସଙ୍କ ପୂର୍ବଜନ୍ମବୃତ୍ତାନ୍ତର ଅବଶିଷ୍ଟାଂଶ ସହିତ ନାରଦ ମୁଖରେ ନାରଦ ଚରିତ ବର୍ଣ୍ଣନ, (୭) ନାରଦଙ୍କ ଉପଦେଶରେ ବ୍ୟାସଙ୍କ ଶ୍ରୀମଦ୍‌ଭାଗବତ ରଚନାରମ୍ଭ । ପରୀକ୍ଷିତ ଜନ୍ମ ପ୍ରସଙ୍ଗରେ ସୁପ୍ତ ଦ୍ରୌପଦୀ ସୁତଙ୍କ ବଧ ହେତୁ ଅର୍ଜ୍ଜୁନ ଦ୍ୱାରା ଅଶ୍ୱତ୍ଥାମାର ଶାସ୍ତି । (୮) ଉତ୍ତରା ଗର୍ଭସ୍ଥ ପରୀକ୍ଷିତଙ୍କ ରକ୍ଷିତ, ଅଶ୍ୱତ୍ଥାମାର ବ୍ରହ୍ମାସ୍ତ୍ରରୁ ରକ୍ଷାକରିବା ନିମିତ୍ତ କୁନ୍ତୀଙ୍କର ଶ୍ରୀକୃଷ୍ଣସ୍ତୁତି, (୯) ଶରଶଯ୍ୟାରେ ଶାୟିତ ଭୀଷ୍ମଙ୍କ ନିକଟକୁ ଯୁଧିଷ୍ଠିର ପ୍ରଭୃତିଙ୍କ ଯାତ୍ରା, ଭୀଷ୍ମଙ୍କ ଧର୍ମୋପଦେଶ ଏବଂ ଶ୍ରୀକୃଷ୍ଣସ୍ତୁତି ପୂର୍ବକ ଭୀଷ୍ମଙ୍କର ମହାପ୍ରସ୍ଥାଣ, (୧୦) ଶ୍ରୀକୃଷ୍ଣଙ୍କ ଦ୍ୱାରକା ପ୍ରତ୍ୟାଗମନ, (୧୧) ଦ୍ୱାରକାରେ ଶ୍ରୀକୃଷ୍ଣଙ୍କ ଅଭିନନ୍ଦନ, (୧୨) ପରୀକ୍ଷିତ ରାଜାଙ୍କ ଜନ୍ମ, (୧୨) ବିଦୁର ଉପଦେଶରେ ଗାନ୍ଧାରୀ ଓ ଧୃତରାଷ୍ଟ୍ରଙ୍କ ବନଗମନ, (୧୪) ବିବିଧ ଅମଙ୍ଗଳ ଦେଖି ଯୁଧିଷ୍ଠିରଙ୍କ ବ୍ୟାକୁଳତା ଏବଂ ଦ୍ୱାରକାରୁ ଅର୍ଜ୍ଜୁନଙ୍କ ପ୍ରତ୍ୟାଗମନ, (୧୫) ଯଦୁକୁଳ ସଂହାର, ଶ୍ରୀକୃଷ୍ଣଙ୍କ ପ୍ରସ୍ଥାଣ ଶୁଣି ଯୁଧିଷ୍ଠିର ପ୍ରଭୃତିଙ୍କ ହିମାଳୟ ଯାତ୍ରା, (୧୬) ପରୀକ୍ଷିତଙ୍କ ରାଜ୍ୟଲାଭ, ଦିଗ୍‌ବିଜୟ, ଭୂମିଧର୍ମ ସମ୍ବାଦଶ୍ରବଣ, (୧୭) ପରୀକ୍ଷିତ ଧର୍ମ ସମ୍ବାଦ ଓ କଳି ନିଗ୍ରହ, (୧୮) ପରୀକ୍ଷିତଙ୍କ ମୃଗୟା ପ୍ରୟାଣ, ତୃଷାର୍ତ୍ତ ପରୀକ୍ଷିତ ଯୋଗାବିଷ୍ଟ ବ୍ରାହ୍ମଣ ଗଳାରେ ମୃତସର୍ପ ଦେଇ ପ୍ରସ୍ଥାନ କରିବା ପରେ ମୁନିକୁମାରଙ୍କ ଦ୍ୱାରା ସାତଦିନ ମଧ୍ୟରେ ପରୀକ୍ଷିତଙ୍କୁ ତକ୍ଷକ ଭକ୍ଷଣ କରୁ— ବୋଲି ଅଭିଶାପ ପ୍ରଦାନ ଏବଂ (୧୯) ମୁକ୍ତିନିମିତ୍ତ ଗଙ୍ଗାତୀରରେ ରାଜା ପରୀକ୍ଷିତଙ୍କ ଉପବାସ, ଋଷି ସମାଗମ, ମହର୍ଷି ଶୁକଙ୍କୁ ବ୍ୟାକୁଳ ପରୀକ୍ଷିତଙ୍କ ପ୍ରଶ୍ନ ପ୍ରଭୃତିର ବର୍ଣ୍ଣନା କରାଯାଇଅଛି ।

ଦ୍ୱିତୀୟ ସ୍କନ୍ଧ—

ଦ୍ୱିତୀୟ ସ୍କନ୍ଧର ଆଦ୍ୟରେ । ଶୁକ ପରୀକ୍ଷିଙ୍କ ବର୍ଗରେ ॥
ଶ୍ରୀ ଭାଗବତ ଯେ କହିଲେ । ସକଳ ରାଜ ଋଷିମେଳେ ॥

× × ×

ଦ୍ୱିତୀୟସ୍କନ୍ଧେ ଏ ଚରିତ । ଦଶ ଅଧ୍ୟାରେ ସମାପତ ॥

॥ ପୃ—୯୬ ॥

ଦ୍ୱିତୀୟ ସ୍କନ୍ଧ ଦଶଟି ଅଧ୍ୟାୟରେ ବିଭକ୍ତ, ଏଥିରେ, (୧) ଶୁକ-ପରୀକ୍ଷିତ ସମ୍ବାଦରେ ମହାପୁରୁଷର ସ୍ୱରୂପ ବର୍ଣ୍ଣନ, (୨) ପରୀକ୍ଷିତଙ୍କୁ ଶୁକମହର୍ଷିଙ୍କର ଯୋଗ ଓ ଗୂଢ଼ ଉପଦେଶ, (୩) ଭଗବଦ୍ ଭକ୍ତିର ପ୍ରାଧାନ୍ୟ ପ୍ରତିପାଦନ କରାଯାଇଛି, (୪) ପରୀକ୍ଷିତ ରାଜାଙ୍କର ସୃଷ୍ଟି ବିଷୟକ ପ୍ରଶ୍ନ ଓ ଶୁକଙ୍କ ଉତ୍ତର, (୫) ନାରଦଠାରେ

ବ୍ରହ୍ମାଙ୍କ ଦ୍ୱାରା ପଞ୍ଚବିଂଶତି ତତ୍ତ୍ୱ ଓ ବ୍ରହ୍ମାଣ୍ଡର ଉତ୍ପତ୍ତି ବର୍ଣ୍ଣନ, (୬) ଭଗବାନଙ୍କର ବିରାଟ ସ୍ୱରୂପ ପରିଚୟ, (୭) ବ୍ରହ୍ମାନାରଦ ସମ୍ବାଦରେ ଭଗବାନଙ୍କର ବରାହ ଅବତାରଠାରୁ କଳ୍କି ଅବତାର ପର୍ଯ୍ୟନ୍ତ ଅବତାର ଚରିତ ସହିତ ଶ୍ରୀକୃଷ୍ଣଙ୍କ ଆଶ୍ରୟରେ ମାୟା ସଂସାରରୁ ମୁକ୍ତିଲାଭ କରିଥିବା ପ୍ରହ୍ଲାଦାଦି ମହାପୁରୁଷମାନଙ୍କର ନାମାବଳୀ ଉଲ୍ଲିଖିତ ଅଛି ।

(୮) ଏହାପରେ କାଳର ଗତି, କର୍ମଫଳ, ଧର୍ମଜ୍ଞାନ, ଯଜ୍ଞଫଳ ପ୍ରଭୃତି ବିଷୟରେ ଶୁକଙ୍କୁ ରାଜା ପରୀକ୍ଷିତଙ୍କ ପ୍ରଶ୍ନ, (୯) ଶୁକଙ୍କ ପ୍ରତ୍ୟୁତ୍ତର ରୂପେ ଶ୍ରୀମଦ୍ ଭାଗବତ ପ୍ରବୃତ୍ତିର ବର୍ଣ୍ଣନ, (୧୦) ଭାଗବତ ପୁରାଣର ଦଶଲକ୍ଷଣ (ସର୍ଗ ବିସର୍ଗ, ସ୍ଥାନ, ପୋଷଣ, ଊତି, ମନ୍ୱନ୍ତର, ବଂଶାନୁକଥା, ନିରୋଧ, ମୁକ୍ତି ଓ ଆଶ୍ରୟ) ନିର୍ଣ୍ଣୟ ପ୍ରଭୃତିର ଉଲ୍ଲେଖ ଅଛି ।

ତୃତୀୟ ସ୍କନ୍ଧ—

ଏବେ ତୃତୀୟ ସ୍କନ୍ଧବାଣୀ । ବିଦୁର ଉଦ୍ଧବ ଭେଟିଲେଣି ॥
ବିଦୁର ପରମ ଆନନ୍ଦେ । ଚିତ୍ତ ନିବେଶି କୃଷ୍ଣପାଦେ ॥
× × × ×
ତୃତୀୟ ସ୍କନ୍ଧେ ଭାଗବତ । ତେତିଶ ଅଧ୍ୟା ସମାପତ ॥ ପୃ-୯୭

ତୃତୀୟ ସ୍କନ୍ଧର ବିଷୟବସ୍ତୁ ତେତିଶ ଅଧ୍ୟାୟ ମଧ୍ୟରେ ଲିଖିତ ହୋଇଅଛି । ଏଥିରେ ୧—ଦୁର୍ଯ୍ୟୋଧନଙ୍କ ଦ୍ୱାରା ଅପମାନିତ ହୋଇ ଧୃତରାଷ୍ଟ୍ରଙ୍କୁ ପରିତ୍ୟାଗ କରି ବିଦୁର ହସ୍ତିନାପୁରରୁ ପ୍ରସ୍ଥାନ କଲେ । ବହୁ ତୀର୍ଥ ଭ୍ରମଣ ପରେ ପରିଶେଷରେ ବୃନ୍ଦାବନରେ ଉଦ୍ଧବଙ୍କ ସହିତ ବିଦୁରର ସାକ୍ଷାତ ଓ ପରସ୍ପର କୁଶଳ ପ୍ରଶ୍ନ ମଧ୍ୟରେ କୌରବ, ପାଣ୍ଡବ ତଥା ଶ୍ରୀକୃଷ୍ଣଙ୍କ ପ୍ରସଙ୍ଗର ଆଲୋଚନା କରାଯାଇଛି । ୨—ବିଦୁର ଠାରେ ଉଦ୍ଧବ ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳା ସହିତ ୩—ମଥୁରା ଓ ଦ୍ୱାରକାଲୀଳା ସଂକ୍ଷେପରେ ବର୍ଣ୍ଣନା କରିଥିଲେ । ୪—ଯଦୁବଂଶ ସଂହାର, ଶ୍ରୀକୃଷ୍ଣ ଦେହତ୍ୟାଗ ସମୟରେ ମୈତ୍ରେୟଙ୍କୁ ତତ୍ତ୍ୱଜ୍ଞାନ ଉପଦେଶ ଏବଂ ଉଦ୍ଧବ ଉପଦେଶରେ ବିଦୁରର ମୈତ୍ରେୟଙ୍କ ନିକଟକୁ ପ୍ରସ୍ଥାନ । ୫—ବିଦୁର ମୈତ୍ରେୟ ସମ୍ବାଦରେ ସୃଷ୍ଟିକ୍ରମ ଓ ମହଦାଦିତତ୍ତ୍ୱର ବର୍ଣ୍ଣନ, ୬—ବିରାଟ ପୁରୁଷ ପରିଚୟ, ୭—ନିର୍ଗୁଣ ପୁରୁଷଙ୍କ ବିଷୟରେ ବିଦୁର ପ୍ରଶ୍ନର ମୈତ୍ରେୟଙ୍କ ଦ୍ୱାରା ସମାଧାନ ୮) ବିଷ୍ଣୁଙ୍କ ନାଭିମଣ୍ଡଳରୁ ବ୍ରହ୍ମାଙ୍କ ଉତ୍ପତ୍ତି ୯) ବ୍ରହ୍ମାଙ୍କ ଭଗବଦ୍—ସ୍ତୁତିର ବର୍ଣ୍ଣନା କରାଯାଇଛି ।

୧୦) ବ୍ରହ୍ମାଙ୍କ ଦ୍ୱାରା ଦଶବିଧ ସୃଷ୍ଟି (ମହତ୍ତ୍ୱ, ଅହଙ୍କାର, ବ୍ରହ୍ମଶକ୍ତି, ଦଶ-ଇନ୍ଦ୍ରିୟ, ମାନ, ବୁଦ୍ଧି ଏବଂ ପ୍ରକୃତି-ବିକୃତି ଦ୍ୱାରା କ୍ରମଶଃ ଲତାଗୁଳ୍ମ, ପଶୁଗଣ,

ମନୁଷ୍ୟ ଓ ଦେବତାଦିଙ୍କ ଯକ୍ଷରକ୍ଷ ପ୍ରଭୃତି) ପ୍ରକରଣ । ୧୧) ମନ୍ୱନ୍ତର କାଳ ଓ ଦେବମାନବାଦିଙ୍କ ଆୟୁଷ ନିରୂପଣ, ୧୨) ବ୍ରହ୍ମାଙ୍କ ସୃଷ୍ଟିସର୍ଜନାରେ ଦଶଋଷି, ଧର୍ମ, ଅଧର୍ମ କାମ ପ୍ରଭୃତି, ବେଦ ଓ ବେଦାଙ୍ଗ ତଥା ସ୍ୱାୟମ୍ଭୁବ ମନୁର ଉତ୍ପତ୍ତି ବର୍ଣ୍ଣିତ ହୋଇଅଛି । ୧୩) ବ୍ରହ୍ମାଙ୍କ ନାସାରୁ ଆବିର୍ଭୂତ ଯଜ୍ଞବରାହଙ୍କ ଦନ୍ତାଗ୍ରସ୍ଥିତ ପୃଥିବୀ ଚରିତ । ୧୪) ଦିତି ଓ କଶ୍ୟପ ସମ୍ବାଦ, ୧୫) ବୈକୁଣ୍ଠଧାମରେ ଶ୍ରୀକୃଷ୍ଣଦର୍ଶନାର୍ଥୀ ସନକାଦି ଋଷିଙ୍କ ଦ୍ୱାରା ଦ୍ୱାରପାଳ ଜୟ-ବିଜୟଙ୍କୁ ଅଭିଶାପ ପ୍ରଦାନ, ୧୬) ଭଗବାନଙ୍କ କର୍ତ୍ତୃକ ଋଷିଙ୍କୁ ସାନ୍ତ୍ୱନା ଓ ଜୟବିଜୟ ଦୁହିଁଙ୍କର ଦିତି ଗର୍ଭରେ ପ୍ରବେଶ ବର୍ଣ୍ଣନା କରାଯାଇଅଛି ।

୧୭) ହିରଣ୍ୟାକ୍ଷ ଓ ହିରଣ୍ୟକଶିପୁର ଜନ୍ମ ଏବଂ ବରୁଣପୁରରେ ବରୁଣ ସହିତ ଯୁଦ୍ଧ, ୧୮) ବରାହରୂପୀ ହରିଙ୍କ ସହିତ ହିରଣ୍ୟାକ୍ଷର ଯୁଦ୍ଧ, ୧୯) ହିରଣ୍ୟାକ୍ଷ ବଧ, ୨୦) ବ୍ରହ୍ମାଙ୍କ ଦ୍ୱାରା ବିବିଧ ସୃଷ୍ଟି, ୨୧) କର୍ଦ୍ଦମ ମୁନି ଓ ଶିଷ୍ୟ ସ୍ୱାୟମ୍ଭୁବ ମନୁ-ସମ୍ବାଦ, ୨୨) କର୍ଦ୍ଦମ-ଋଷିଚରିତ, ୨୩) କର୍ଦ୍ଦମ ଓ ଦେବହୂତି ବିବାହ ଓ ସେମାନଙ୍କର ଗାର୍ହସ୍ଥ୍ୟଧର୍ମ ବର୍ଣ୍ଣନ ଏବଂ ନବକନ୍ୟାଙ୍କ (କଳା, ଅନସୂୟା, ଶ୍ରଦ୍ଧା, ହବି, ଗତି, କ୍ରିୟା, ଖ୍ୟାତି, ଅରୁନ୍ଧତୀ ଓ ଶାନ୍ତି) ଜନ୍ମବିବରଣ, ୨୪) ନବ-କନ୍ୟାଙ୍କ ବିବାହ, କର୍ଦ୍ଦମ କପିଳ ସମ୍ବାଦ ଓ କର୍ଦ୍ଦମ ଋଷିଙ୍କ ଭଗବତ୍ ପ୍ରାପ୍ତି, ୨୫) କପିଳ ଦେବହୂତି ସମ୍ବାଦରେ ଭକ୍ତିଯୋଗ ବର୍ଣ୍ଣନ ଓ ୨୬) ମହତ୍ତ୍ୱାଦି ପଞ୍ଚ-ବିଂଶତି ତତ୍ତ୍ୱର ଉତ୍ପତ୍ତି ବିବରଣ ଉଲ୍ଲିଖିତ ଅଛି ।

୨୭) କପିଳ ଦେବହୂତି ସମ୍ବାଦରେ ପ୍ରକୃତି ଓ ପୁରୁଷର ବିବେକ ଦ୍ୱାରା ମୋକ୍ଷପ୍ରାପ୍ତି ଓ ଭକ୍ତିଯୋଗର ବର୍ଣ୍ଣନ, ୨୮) ଯୋଗଲକ୍ଷଣ ସଗୁଣ ଭଗବାନଙ୍କ ସ୍ୱରୂପ ବର୍ଣ୍ଣନ, ୨୯) ମାତା ପୁତ୍ର ସମ୍ବାଦରେ ଭକ୍ତିଯୋଗର ରହସ୍ୟ ଓ କାଳପ୍ରଭାବ ବିବରଣ, ୩୦) ଦେହାସକ୍ତ ପୁରୁଷର ଅଧୋଗତି ବିଷୟ, ୩୧) ମାତୃଗର୍ଭରେ ଜୀବର ଦେହପ୍ରାପ୍ତି, ଗର୍ଭସ୍ଥ ଜୀବର ଭଗବତ୍ ପ୍ରାର୍ଥନା ଏବଂ ବାଲ୍ୟାବସ୍ଥାର ବିଭିନ୍ନ କ୍ଳେଶ ବର୍ଣ୍ଣନ, ୩୨) କର୍ମାସକ୍ତ ଚରିତ୍ର ନିନ୍ଦା ଓ ଭକ୍ତିଯୋଗର ଉତ୍କର୍ଷ ପ୍ରତିପାଦନ ୩୩) ଭଗବାନରୂପୀ ପୁତ୍ର କପିଳଙ୍କର ଜନନୀ ଦେବହୂତି ଜ୍ଞାନୋପଦେଶ, ଦେବହୂତି କୃତ ଭଗବତ୍ ସ୍ତୁତି ଏବଂ ବ୍ରହ୍ମପ୍ରାପ୍ତି ବିଷୟରେ ବର୍ଣ୍ଣନା କରାଯାଇଛି ।

ଚତୁର୍ଥ ସ୍କନ୍ଧ—

ଚତୁର୍ଥ ସ୍କନ୍ଧର ବର୍ଣ୍ଣନ । ନବ ପ୍ରଜାପତି ବଚନ ॥
ଏହାଙ୍କ ବଂଶାନୁଚରିତ । ସଂସାରେ ଯହିଁ ସେ ଉଦିତ ॥
× × × ×
ଏକତ୍ରିଂଶ ଅଧ୍ୟାୟେଣ । ଚତୁର୍ଥ ହୋଇଲା ସମ୍ପୂର୍ଣ୍ଣ ॥ ପୃ-୯୮ ॥

ଚତୁର୍ଥ ସ୍କନ୍ଧଟି ଏକତିରିଶ ଅଧ୍ୟାୟରେ ବିଭକ୍ତ ହୋଇଥିବାର ଏଥିରୁ ସୂଚିତ ହୁଏ । ଏଥିରେ (୧) ମୈତ୍ରେୟ ବିଦୁର ସମ୍ବାଦରେ ସ୍ୱାୟମ୍ଭୁବ ମନୁଙ୍କ କନ୍ୟାମାନଙ୍କର (ଆକୂତି, ଦେବହୂତି ଓ ପ୍ରସୂତି) ବଂଶବର୍ଣ୍ଣନ, (୨) ଦକ୍ଷ ପ୍ରଜାପତି ଯଜ୍ଞରେ ଶିବଙ୍କ ଅପମାନ, (୩) ହରଗୌରୀ ସମ୍ବାଦରେ ଶିବଙ୍କର ସତୀଙ୍କୁ ଦକ୍ଷଯଜ୍ଞ ଉଦ୍ଦେଶ୍ୟରେ ଯିବା ନିମିତ୍ତ ନିଷେଧ, (୪) ଦକ୍ଷ ଯଜ୍ଞରେ ସତୀଙ୍କ ଦେହତ୍ୟାଗ, (୫) ଦକ୍ଷଯଜ୍ଞ ଧ୍ୱଂସ ଓ ଦକ୍ଷର ଶିରଚ୍ଛେଦ, (୬) ବ୍ରହ୍ମାଦି ଦେବଗଣଙ୍କ କୈଳାସ ଗମନ ରୁଦ୍ରସ୍ତୁତି, (୭) ରୁଦ୍ର ପ୍ରସନ୍ନ ହୋଇ ଦକ୍ଷକୁ ଜୀବନ ଦାନ ଓ ଯଜ୍ଞକାର୍ଯ୍ୟ ସମାଧାନ ବିଷୟ ବର୍ଣ୍ଣିତ ହୋଇଅଛି ।

ଏହି ସ୍କନ୍ଧର ଅଷ୍ଟମ, ନବମ ଓ ଦଶମ ଅଧ୍ୟାୟ କଳଣା ବାଣୀରେ ରଚିତ । ଅଷ୍ଟମରେ ଧ୍ରୁବଚରିତ, ନବମରେ ଧ୍ରୁବଦ୍ୱାରା ବିଷ୍ଣୁଙ୍କ ଆରାଧନା ଏବଂ ଦଶମରେ ତପସ୍ୟା ଦ୍ୱାରା ଧ୍ରୁବର ଭଗବନ୍ତ ପ୍ରାପ୍ତି ବିଷୟ ବର୍ଣ୍ଣିତ ହୋଇଅଛି । (୧୧) ଧ୍ରୁବର ରାଜ୍ୟପ୍ରାପ୍ତି, (୧୨) ଗୃହ ପ୍ରତ୍ୟାବର୍ତ୍ତନ ପରେ ଗୁହ୍ୟକ ଦ୍ୱାରା ନିଜର କନିଷ୍ଠ ଭ୍ରାତା ଉତ୍ତମର ନିଧନ ବାର୍ତ୍ତା ଶୁଣି ଧ୍ରୁବର ଯୁଦ୍ଧଯାତ୍ରା ଏବଂ ଧ୍ରୁବ ସହିତ ଗୁହ୍ୟକର ମାୟାଯୁଦ୍ଧ, (୧୩) ଯୁଦ୍ଧରେ ଗୁହ୍ୟକର ପରାଜୟ, ସ୍ୱାୟମ୍ଭୁବ ମନୁଙ୍କ ଦ୍ୱାରା ଧ୍ରୁବର କ୍ରୋଧ ଶାନ୍ତ ବର୍ଣ୍ଣନା କରାଯାଇଛି । (୧୪) ତଦନନ୍ତର ଧ୍ରୁବର ତପସ୍ୟା ଓ ଭଗବନ୍ତ ପ୍ରାପ୍ତି ବିଷୟରେ ଉଲ୍ଲିଖିତ ଅଛି । (୧୫) ଧ୍ରୁବବଂଶରେ ଦୁଷ୍ଟରାଜା ବେଣୁର ଜନ୍ମ, (୧୬) ମୁନିଙ୍କ ଦ୍ୱାରା ଧର୍ମସ୍ଥାନ ବେଣୁର ମୃତ୍ୟୁ ଓ ନିଷାଦର ଉତ୍ପତ୍ତି ଏବଂ ଲକ୍ଷ୍ମୀ—ନାରାୟଣ ରୂପରେ ରାଜା ପୃଥୁଙ୍କ ଜନ୍ମ (୧୭) ପୃଥୁଙ୍କ ରାଜ୍ୟାଭିଷେକ, ମାଗଧ ଭାଟଗଣଙ୍କର ପୃଥୁଙ୍କ ସ୍ତୁତିଗାନ, (୧୮) ପୃଥୁରାଜା ଚରିତ, (୧୯) ପୃଥୁଙ୍କର ପୃଥିବୀ ପ୍ରତି କୋପ ଓ ଧେନୁରୂପରେ ପୃଥିବୀକର୍ତ୍ତୃକ ସ୍ତୁତିଗାନ (୨୦) ପୃଥିବୀର ଉପଦେଶ ଅନୁସାରେ ପୃଥକ ପୃଥକ ବତ୍ସ ଓ ପାତ୍ର କଳ୍ପନାରେ ପୃଥିବୀ ଦୋହନ, (୨୧) ନିଜର ଅଶ୍ୱମେଧ ଯଜ୍ଞରେ ବିଘ୍ନ ସୃଷ୍ଟି କରିବାରୁ ଇନ୍ଦ୍ରଙ୍କ ପ୍ରତି ପୃଥୁଙ୍କ କୋପ ଏବଂ ବ୍ରହ୍ମାଙ୍କଦ୍ୱାରା କୋପଶାନ୍ତ ଓ ଯଜ୍ଞକାର୍ଯ୍ୟରୁ ନିବୃତ୍ତି, ଭଗବନ୍ତ ଦର୍ଶନ, ପୃଥୁ ଭଗବାନ ସମ୍ବାଦର ବର୍ଣ୍ଣନା କରାଯାଇଅଛି ।

(୨୨) ପୃଥୁଚରିତରେ ପୃଥୁଙ୍କୁ ସନତ୍କୁମାରକର୍ତ୍ତୃକ ଜ୍ଞାନୋପଦେଶ, (୨୩) ପୃଥୁଙ୍କ ବନଗମନ, ଯୋଗସାଧନା, ଦେହତ୍ୟାଗ ଓ ବୈକୁଣ୍ଠପ୍ରାପ୍ତି, (୨୪) ପୃଥୁବଂଶ ପରିଚୟ, ରୁଦ୍ରଗୀତା ଉପାଖ୍ୟାନ, (୨୫) ପ୍ରାଚୀନ ବର୍ହୀ-ନାରଦ ସମ୍ବାଦରେ ପୁରଞ୍ଜନ ଉପାଖ୍ୟାନ ଆରମ୍ଭ, (୨୬) ପୁରଞ୍ଜନର ମୃଗୟା ବର୍ଣ୍ଣନ ଓ ତାହା ପତ୍ନୀର ପ୍ରଣୟାଭିମାନ, (୨୭) କାଳକନ୍ୟା ଚରିତ, (୨୮) ପୁରଞ୍ଜନର ଶୋକ, ଅଜ୍ଞାତ ପୁରୁଷର ଉପଦେଶ ଓ ପୁରଞ୍ଜନର ମୁକ୍ତି, (୨୯) ମୈତ୍ରେୟ ବିଦୁର

ସମ୍ବାଦରେ ପୁରଞ୍ଜନ ଉପାଖ୍ୟାନର ତାତ୍ପର୍ଯ୍ୟ ବିଷୟରେ ନାରଦଙ୍କ ଉପଦେଶ ଓ ପ୍ରାଚୀନବର୍ହିର ମୁକ୍ତିଲାଭ (୩୦) ଶୁକ-ପରୀକ୍ଷିତ ସମ୍ବାଦରେ ଦଶ ପ୍ରଚେତସଙ୍କ (ପ୍ରାଚୀନ ବର୍ହିଙ୍କ ଔରସରେ ସମୁଦ୍ରକନ୍ୟା ଶତଦ୍ରୁତିଙ୍କ ଗର୍ଭରୁ ସମାନ ରୂପ ଓ ବେଶ ନେଇ ଗୋଟିଏ ନାମରେ ଦଶପୁତ୍ର ପ୍ରଚେତସ ରୂପେ ପରିଚିତ) ଚରିତ, (୩୧) ନାରଦ-ପ୍ରଚେତସପ୍ରସଙ୍ଗ ଏବଂ ନାରଦଙ୍କ ଉପଦେଶରେ ଦଶ ପ୍ରଚେତସଙ୍କ ମୁକ୍ତି ବିଷୟ ପ୍ରଭୃତି ଚତୁର୍ଥ ସ୍କନ୍ଧରେ ବର୍ଣ୍ଣିତ ହୋଇଅଛି ।

ପଞ୍ଚମ ସ୍କନ୍ଧ—

ପଞ୍ଚମ ସ୍କନ୍ଧ ଆଦ୍ୟେ ପୁଣି । ପ୍ରିୟବ୍ରତ ରାଜା କାହାଣୀ ॥

× × × ×

ପଞ୍ଚମ ସ୍କନ୍ଦେ ଏ ଚରିତ । ଛବିଶ ଅଧ୍ୟା ସମାପତ ॥ ପୃ-୧୮ ॥

ପଞ୍ଚମ ସ୍କନ୍ଧରେ ଛବିଶଟି ଅଧ୍ୟାୟ ଅଛି । ଏଥିରେ (୧) ପ୍ରିୟବ୍ରତ ଚରିତ, (୨) ଜମ୍ବୁଦ୍ୱୀପର ରାଜା ଅଗ୍ନୀଧ୍ରର ଔରସରେ ପୂର୍ବଚିତ୍ତି ନାମକ ଅପ୍ସରା ଗର୍ଭରୁ ନବପୁତ୍ରଙ୍କ (ଇଳାବୃତ୍ତ ହରିବର୍ଷ, ନାଭି, ରମ୍ୟକ, କିଂପୁରୁଷ, ଭଦ୍ରାଶ୍ୱ, କୁରୁ, ହିରଣ୍ମୟ ଓ କେତୁମାଲ) ଜନ୍ମ ବିବରଣୀ ଏବଂ ଯଥାକ୍ରମେ ମେରୁଦେବୀ, ପ୍ରତିରୂପା, ଲତା, ରମ୍ୟା, ଉଗ୍ରଦଂଷ୍ଟ୍ରା, ବେଦବାଧିତ, ନାରୀ, ଶ୍ୟାମା ଓ ଭଦ୍ରାଦି ମେରୁର ନବ-କନ୍ୟା ସହିତ ସେମାନଙ୍କର ବିବାହ । (୩) ନାଭି-ରାଜାର ସନ୍ତାନ ନ ହେବାରୁ ଯଜ୍ଞପୁରୁଷଙ୍କ ସ୍ତୁତି କରିବାରେ ଭଗବାନ ଋଷଭଦେବ ତାହାର ପୁତ୍ର ରୂପେ ଜନ୍ମ-ଗ୍ରହଣ କଲେ । (୪) ଋଷଭଦେବ ଚରିତ, (୫) ବ୍ରହ୍ମାବର୍ତ୍ତରେ ଋଷଭଦେବଙ୍କ ସ୍ୱପୁତ୍ରମାନଙ୍କୁ (ଜ୍ୟେଷ୍ଠପୁତ୍ର ମହାବୀର ସହିତ ଶତପୁତ୍ର) ଧର୍ମୋପଦେଶଦାନ ଏବଂ ନିଜେ ଅବଧୂତ ବୃତ୍ତି ଗ୍ରହଣ କଲେ । (୬) ଋଷଭ ଚରିତ ଓ ଋଷଭଙ୍କ ଦେହ-ତ୍ୟାଗ । (୭) ଋଷଭ ପୁତ୍ର ଭରତ ଉପାଖ୍ୟାନ, ଭରତଙ୍କର ତପସ୍ୟା ନିମିତ୍ତ ପୁଲହାଶ୍ରମ ଗମନ । (୮) ମୃଗଶାବକ ମୋହରେ ଭରତଙ୍କର ମୃଗଯୋନିରେ ଜନ୍ମ ଏବଂ ଶାଳଗ୍ରାମ ତୀର୍ଥରେ ମୃଗଶରୀର ତ୍ୟାଗ । (୯) ଜଡ ଭରତ ଚରିତରେ ଭରତଙ୍କର ବ୍ରାହ୍ମଣ କୁଳରେ ଜନ୍ମ, ଜଡ଼ପରି ଆଚରଣ, ଭଦ୍ରକାଳୀଙ୍କ ନିକଟରେ ବଳି ଉଦ୍ଦେଶ୍ୟରେ ଉତ୍ସର୍ଗୀକୃତ ହେବାପରେ ଚଣ୍ଡିକାଙ୍କ କର୍ତ୍ତୃକ ଜଡଭରତର ଜୀବନ ରକ୍ଷାଦି ବିଷୟ ବର୍ଣ୍ଣିତ ହୋଇଅଛି ।

(୧୦) ସିନ୍ଧୁପତି ରହୂଗଣଙ୍କର ଶିବିକା-ବାହକରୂପେ ଜଡ଼ଭରତର ନିଯୁକ୍ତି ଏବଂ ଶିବିକା ବହନପାରିବାରୁ ରାଜାଙ୍କଦ୍ୱାରା ଜଡ଼ଭରତର ଅପମାନ, ପରିଶେଷରେ ରାଜାଙ୍କୁ ଜଡ଼ଭରତର ଜ୍ଞାନ ଉପଦେଶ ଓ ରହୂଗଣ ସହିତ ରାଜାଙ୍କ କ୍ଷମା

ଗ୍ରାର୍ଥନା ବିଷୟ ବର୍ଣ୍ଣନା କରାଯାଇଛି । (୧୧) ବ୍ରାହ୍ମଣ କୁମାର ଜଡଭରତ ରହୁଗଣଙ୍କ ସମ୍ଭାଷଣ । (୧୨) ଜଡ଼ଭରତ ଓ ରହୁଗଣ ସମ୍ବାଦ, (୧୩) ରହୁଗଣ ସମ୍ବାଦରେ ଜଡଭରତ କଳ୍ପିତ ସଂସାର ରୂପ ଅରଣ୍ୟର ବର୍ଣ୍ଣନା, ରହୁଗଣଙ୍କର ସଂଶୟ ଖଣ୍ଡନ, (୧୪) ଭରତ ଉପାଖ୍ୟାନ, (୧୫) ପ୍ରିୟବ୍ରତ ରାଜାର ବଂଶବର୍ଣ୍ଣନ, (୧୬) ଭୁବନକୋଶ ବର୍ଣ୍ଣନ, (୧୭) ଭାଗୀରଥୀ ବର୍ଣ୍ଣନ, ପ୍ରହ୍ଲାଦ ସ୍ତୁତି ଇତ୍ୟାଦି ବର୍ଣ୍ଣିତ ହୋଇଅଛି ।

(୧୮) ଭୁବନକୋଶ ବର୍ଣ୍ଣନରେ ବିଭିନ୍ନ ଧର୍ମ ଅଧିବାସୀଙ୍କ ଉପାସନାର ପ୍ରକାର ବର୍ଣ୍ଣନା କରାଯାଇଛି । (୧୯) କିଂପୁରୁଷ ଓ ଭାରତବର୍ଷର ବର୍ଣ୍ଣନ ସହିତ ଅଷ୍ଟ ଉପଦ୍ୱୀପ (ରମଣକ, ଆବର୍ତ୍ତନ, ସ୍ୱର୍ଣ୍ଣପ୍ରସ୍ଥ, ମନ୍ଦର ହରିଣ, ପାଞ୍ଚଜନ୍ୟ, ଚନ୍ଦ୍ରଶୁକ୍ଳ, ଲଙ୍କା ଓ ସିଂହଳ) ପରିଚୟ (୨୦) ଭୁବନକୋଶ ବର୍ଣ୍ଣନରେ ସପ୍ତଦ୍ୱୀପ (ଜମ୍ବୁ, ପ୍ଳକ୍ଷ, ଶାଳ୍ମଳି, କୁଶ, କ୍ରୌଞ୍ଚ, ଶାକ ଓ ପୁଷ୍କର) ପୃଥିବୀର ପରିଚୟ (୨୧) ଖଗୋଳ ବିବରଣ (୨୨) ଜ୍ୟୋତିଷ୍ଚକ୍ର ବର୍ଣ୍ଣନ (୨୩) ଗ୍ରହଚକ୍ର, ୨୪) ଭୂଗୋଳ ବିବରଣରେ ଅଧୋଭୁବନର (ଅତଳ, ବିତଳ, ସୁତଳ, ତଳାତଳ, ରସାତଳ, ମହାତଳ ଓ ପାତାଳ) ପରିଚୟ, (୨୫) ସଙ୍କର୍ଷଣଙ୍କଠାରେ ଅନନ୍ତଙ୍କ ସ୍ଥିତି ଓ ସଙ୍କର୍ଷଣ ସ୍ତୁତି, (୨୬) ବିଭିନ୍ନ ନରକର ସ୍ୱରୂପ ବର୍ଣ୍ଣନା ଇତ୍ୟାଦି ଏହି ସ୍କନ୍ଧରେ ଉଲ୍ଲିଖିତ ଅଛି ।

ଷଷ୍ଠ ସ୍କନ୍ଧ—

ଏବେ ଯେ ଷଷ୍ଠସ୍କନ୍ଧ ବାଣୀ । ଯାହା କହିଲ ପରମାଣି ॥
ଅଜାମିଳର ଉପାଖ୍ୟାନ । ନାମର ମାହାତ୍ମ୍ୟ ବର୍ଣ୍ଣନ ॥

× × × ×

ଏ ଷଷ୍ଠ ସ୍କନ୍ଧର ରଚିତ । ଉନବିଂଶ ଅଧ୍ୟା ଉକତ ॥ ପୃ-୯୧ ॥

ଷଷ୍ଠ ସ୍କନ୍ଧରେ ଉଣାଇଶଟି ଅଧ୍ୟାୟ ଅଛି । ଏଥିରେ (୧) ଅଜାମିଳ ଉପାଖ୍ୟାନ, ବିଷ୍ଣୁଦୂତ ଓ ଯମଦୂତ ସମ୍ବାଦ, (୨) ଅଜାମିଳ ବ୍ରାହ୍ମଣ ଉପାଖ୍ୟାନରେ ଶ୍ରୀକୃଷ୍ଣ ମହିମା ବର୍ଣ୍ଣନ, ଅଜାମିଳର ମୁକ୍ତି, (୩) ଯମ ଯମଦୂତ ସମ୍ବାଦ ଶ୍ରୀକୃଷ୍ଣ ମହିମାର ଉତ୍କୃଷ୍ଟତା ପ୍ରତିପାଦନ, (୪) ଆଦିସୃଷ୍ଟି କଥାରେ ଦକ୍ଷଜନ୍ମ, ପଞ୍ଚଜନ କନ୍ୟା ଅସିକ୍ନୀ ସହିତ ଦକ୍ଷର ବିବାହ, (୫) ହର୍ଯ୍ୟଶ୍ୱ ନାମରେ ଦକ୍ଷଙ୍କର ଅୟୁତସଂଖ୍ୟକ ପୁତ୍ର ଜନ୍ମ ଏବଂ ପିତୃଆଜ୍ଞା ପାଳନ କରି ପୁତ୍ରମାନଙ୍କର ପଶ୍ଚିମଦିଗକୁ ଯାତ୍ରା, ନାରଦଙ୍କ ଦ୍ୱାରା ପୁତ୍ରମାନଙ୍କର ବାରମ୍ବାର ବିନାଶ ହେବାରୁ ଦକ୍ଷ ପୁତ୍ରଶୋକରେ ଜର୍ଜରିତ ହୋଇ ନାରଦଙ୍କୁ ଅଭିଶାପ ଦେଇଥିଲେ । (୬) ଦକ୍ଷଙ୍କଠାରୁ

ଷାଠିଏ କନ୍ୟା ଉତ୍ପତ୍ତି ଏବଂ ସେମାନଙ୍କ ମଧ୍ୟରୁ ଦଶଟି କନ୍ୟା ଧର୍ମ, ତେରଟି କଶ୍ୟପ, ସତାଇଶଟି ଚନ୍ଦ୍ର, ଭୂତ, ଅଙ୍ଗିରା ଓ କୃଶାଶ୍ୱ ଦୁଇ ଦୁଇଟି ଅବଶିଷ୍ଟ ଚାରୋଟି କନ୍ୟା ତାର୍କ୍ଷ୍ୟ ବିବାହ କଲେ । ଏହି ଅଧ୍ୟାୟଟି ଦକ୍ଷକନ୍ୟା ବଂଶ ବର୍ଣ୍ଣନ ନାମରେ ଅଭିହିତ । (୭) ଇନ୍ଦ୍ରଙ୍କ ଦ୍ୱାରା ଦେବଗୁରୁଙ୍କ ଅପମାନ, ଋଷି ବିଶ୍ୱରୂପଙ୍କ ପୌରହିତ୍ୟ । (୮) ବିଶ୍ୱରୂପଙ୍କ ଦ୍ୱାରା ଧର୍ମୋପଦେଶ, (୯) ଭଗବାନଙ୍କ ଦ୍ୱାରା ବିଶ୍ୱରୂପ ବଧ, ବୃତ୍ରାସୁର ଜନ୍ମ, ଦେବଗଣଙ୍କ ଭଗବଦ୍ ସ୍ତୁତି ଓ ଭଗବଦ୍‌ବର ପ୍ରଦାନ, (୧୦) ବୃତ୍ରାସୁର ଯୁଦ୍ଧ, (୧୧) ବୃତ୍ରର ଭକ୍ତିଜ୍ଞାନ ବୈରାଗ୍ୟଯୁକ୍ତ ବଚନୋ-ଦ୍‌ଗାର ପ୍ରଭୃତିର ଉଲ୍ଲେଖ ଅଛି ।

(୧୨) ଇନ୍ଦ୍ର ଓ ବୃତ୍ରାସୁର ଯୁଦ୍ଧ, ବୃତ୍ରାସୁର ବଧ, (୧୩) ବ୍ରହ୍ମହତ୍ୟା ଭୟରେ ଇନ୍ଦ୍ରଙ୍କ ପଳାୟନ, ନହୁଷର ଇନ୍ଦ୍ରପଦ ପ୍ରାପ୍ତି, ଅଗସ୍ତିଙ୍କ ଶାପରେ ନହୁଷର ସର୍ପରୂପେ ସ୍ୱର୍ଗରୁ ପତନ ଏବଂ ଅଶ୍ୱମେଧ ଯଜ୍ଞ ଫଳରେ ଇନ୍ଦ୍ରଙ୍କ ବ୍ରହ୍ମହତ୍ୟା ଦୋଷ ନିବାରଣ ଓ ପୁନଃ ଇନ୍ଦ୍ରପଦ ପ୍ରାପ୍ତି ବର୍ଣ୍ଣିତ ହୋଇଅଛି । (୧୪) ଚିତ୍ରକେତୁ ଉପାଖ୍ୟାନରେ ବୃତ୍ରାସୁରର ପୂର୍ବଜନ୍ମ ବୃତ୍ତାନ୍ତ ଅଙ୍ଗିରା ମହର୍ଷିଙ୍କ ବରପ୍ରସାଦରୁ ପ୍ରାପ୍ତ ପୁତ୍ରର ମୃତ୍ୟୁ ସମ୍ବାଦରେ ଚିତ୍ରକେତୁ ରାଜା ଓ ପତ୍ନୀକୃତ ଦ୍ୟୁତିର ବିଳାପ, (୧୫) ପୁତ୍ରଶୋକ ଖଣ୍ଡନ ନିମିତ୍ତ ଅଙ୍ଗିରା ଓ ନାରଦଙ୍କର ଚିତ୍ରକେତୁଙ୍କୁ ଉପଦେଶ ପ୍ରଦାନ, (୧୬) ଚିତ୍ରକେତୁ ଭକ୍ତିଯୋଗ ବର୍ଣ୍ଣନରେ ରାଜପୁତ୍ରର ମୃତଦେହ ବିଯୁକ୍ତ ଜୀବାତ୍ମାର ଉକ୍ତି, ନାରଦକର୍ତ୍ତୃକ ଚିତ୍ରକେତୁଙ୍କୁ ସଙ୍କର୍ଷଣ ମନ୍ତ୍ରଦୀକ୍ଷା ଏବଂ ଚିତ୍ରକେତୁର ବିଦ୍ୟାଧର ପଦ ପ୍ରାପ୍ତି ବର୍ଣ୍ଣିତ ହୋଇଅଛି । (୧୭) କୈଳାସ ପର୍ବତରେ ଆସୀନ ପାର୍ବତୀ ପରମେଶ୍ୱରଙ୍କ ଅପମାନ ହେତୁ ପାର୍ବତୀ ଶାପରେ ଚିତ୍ରକେତୁର ବୃତ୍ରାସୁର ରୂପେ ଜନ୍ମ । (୧୮) ଦିତିବଂଶ ବର୍ଣ୍ଣନ ଓ ମରୁଦ୍‌ଗଣଙ୍କ ଉତ୍ପତ୍ତି ଏବଂ (୧୯) ପୁଂସବନ ବ୍ରତ ବା ବିଷ୍ଣୁବ୍ରତର ଉଲ୍ଲିଖିତ ଅଛି ।

ସପ୍ତମ ସ୍କନ୍ଧ—

ଏବେ ସେ ସପ୍ତମ ସ୍କନ୍ଧରେ । ହିରଣ୍ୟକଶିପୁ ଅସୁରେ
ତାହାଙ୍କ ପୁତ୍ର ପ୍ରହ୍ଲାଦ । ସେ ଯେ ଦଇତେଶ୍ୱର ଇନ୍ଦ୍ର ॥

× × × ×

ଶ୍ରାଦ୍ଧବିଧିରେ ଯେତେ ହୋଇ । ସମସ୍ତ ସ୍କନ୍ଧେ ଏହା କହି ॥
ପନ୍ଦର ଅଧ୍ୟାୟରେ ସମ୍ପୂର୍ଣ୍ଣ । ଅଧାର ପଦ ଯେ ପ୍ରମାଣ ॥
ସପ୍ତମ ସ୍କନ୍ଧେ ଏହା କହି । ଶୁଣ ଶୌନକ ମନ ଦେଇ ॥

(ପୃ-୯୯)

ସପ୍ତମ ସ୍କନ୍ଧଟି ପନ୍ଦର ଅଧ୍ୟାୟରେ ବିଭକ୍ତ । ଏହାର ଅଧ୍ୟାୟ ମାନଙ୍କ ମଧ୍ୟରେ (୧) ନାରଦ ଯୁଧିଷ୍ଠିର ସମ୍ବାଦରେ ସନକାଦି ଋଷିଙ୍କ ଶାପରୁ ଜୟ ବିଜୟ ଦୁହିଁଙ୍କର ଦୈତ୍ୟ ଜନ୍ମପ୍ରାପ୍ତି, (୨) ପୁତ୍ର ଶୋକାକୁଳା ଦିତିର ଶୋକ ଅପନୋଦନ ନିମିତ୍ତ ପ୍ରଜାପୀଡନ ଉଦ୍ଦେଶ୍ୟରେ ହିରଣ୍ୟ କଶିପୁର ସ୍ୱ-ଭୃତ୍ୟମାନଙ୍କୁ ଆଦେଶ, (୩) ହିରଣ୍ୟକଶିପୁର ତପସ୍ୟା ଏବଂ ବ୍ରହ୍ମାଙ୍କ ବରଦାନ, (୩) ହିରଣ୍ୟକଶିପୁର ରାଜ୍ୟଶାସନ, ପ୍ରହ୍ଲାଦ ଜନ୍ମ ଓ ପ୍ରହ୍ଲାଦର ଗୁଣ ବର୍ଣ୍ଣନ, (୫) ହିରଣ୍ୟକଶିପୁ ପ୍ରହ୍ଲାଦ ସମ୍ବାଦରେ ପ୍ରହ୍ଲାଦର ବଧ ନିମିତ୍ତ ଚେଷ୍ଟା ଏବଂ ପ୍ରହ୍ଲାଦର ସ୍ୱଗୃହ ପ୍ରତ୍ୟାବର୍ତ୍ତନ ବିଷୟ ବର୍ଣ୍ଣିତ ହୋଇଅଛି ।

(୬) ଦୈତ୍ୟବାଳକମାନଙ୍କୁ ପ୍ରହ୍ଲାଦର ଉପଦେଶ, (୭) ଅସୁରବାଳକ ବୋଧନରେ ମାତୃଗର୍ଭରେ ଥିବାବେଳେ ନାରଦ ମୁଖରୁ ଶୁଣିଥିବା ଉପଦେଶ ବିଷୟରେ ପ୍ରହ୍ଲାଦର ବାର୍ତ୍ତା, (୮) ପ୍ରହ୍ଲାଦର ହତ୍ୟା ନିମିତ୍ତ ହିରଣ୍ୟକଶିପୁର ପ୍ରୟତ୍ନ, ସ୍ତମ୍ଭରୁ ନୃସିଂହଙ୍କ ଆବିର୍ଭାବ ଓ ହିରଣ୍ୟକଶିପୁ ବଧ ଏବଂ ଦେବଗଣ କର୍ତ୍ତୃକ ନୃସିଂହାବତାର ସ୍ତୁତି, (୯) ପ୍ରହ୍ଲାଦ ନୃସିଂହ ସ୍ତୁତି ଚରିତ (୧୦) ପ୍ରହ୍ଲାଦ ନୃସିଂହ ସମ୍ବାଦରେ ପ୍ରହ୍ଲାଦର ବରପ୍ରାପ୍ତି, ରାଜ୍ୟାଭିଷେକ, ତ୍ରିପୁର ଦହନ ଉପାଖ୍ୟାନ ବର୍ଣ୍ଣିତ ହୋଇଅଛି । (୧୧) ମାନବର ସନାତନ ଧର୍ମ, ବର୍ଣ୍ଣଧର୍ମ ଓ ସ୍ତ୍ରୀ ଧର୍ମ ବର୍ଣ୍ଣନ, (୧୨) ବ୍ରହ୍ମଚର୍ଯ୍ୟ ଓ ବାନପ୍ରସ୍ଥାଶ୍ରମ ଧର୍ମ, (୧୩) ସନ୍ନ୍ୟାସ ଧର୍ମ, ଅବଧୂତ ଓ ପ୍ରହ୍ଲାଦ ସମ୍ବାଦ, (୧୪) ଦେଶକାଳ ପାତ୍ର ଅନୁସାରେ ଗାର୍ହସ୍ଥ ଧର୍ମ କଥନ ଏବଂ (୧୫) ନାରଦ ଯୁଧିଷ୍ଠିର ସମ୍ବାଦରେ ବର୍ଣ୍ଣାଶ୍ରମ ଧର୍ମର ବର୍ଣ୍ଣନା କରାଯାଇଅଛି ।

ଅଷ୍ଟମସ୍କନ୍ଧ—

ଏବେ ଅଷ୍ଟମ ସ୍କନ୍ଧ ଶୁଣ । ଯେମନ୍ତେ ହୋଇଛି ପ୍ରଚ୍ଛିନ୍ନ ॥
ଚତୁର୍ଦ୍ଦଶ ମନୁ ଚରିତ । ଭୂତ ବର୍ତ୍ତମାନ ଯେମନ୍ତ

× × ×

ଅଷ୍ଟମ ସ୍କନ୍ଧେ ଏ ଚରିତ । ତେଇଶ ଅଧ୍ୟା ସମାପତ ॥
ଅଷ୍ଟମ ସ୍କନ୍ଧେ ଏହା କହି । ଶୁଣ ଶୌନକ ମନ ଦେଇ ॥

॥ ପୃ—୧୦୦ ॥

ଅଷ୍ଟମ ସ୍କନ୍ଧଟି ମୂଳ ଗ୍ରନ୍ଥରେ ଚବିଶ ଅଧ୍ୟାୟରେ ବିଭକ୍ତ ହୋଇଥିଲେ ମଧ୍ୟ ଓଡ଼ିଆ ଭାଗବତରେ ଏହା ତେଇଶଟି ଅଧ୍ୟାୟରେ ବିଭକ୍ତ କରାଯାଇଅଛି । ଏହାର ଅଧ୍ୟାୟମାନଙ୍କରେ ମୁଖ୍ୟତଃ, (୧) ଶୁକ ପରୀକ୍ଷିତ ସମ୍ବାଦରେ ଚତୁର୍ଦ୍ଦଶ ମନୁଙ୍କ ସ୍ୱାୟମ୍ଭୁବ

ସ୍ୱାରୋଚଷ, ଉତ୍ତମ ଓ ତାମସ ପରିଚୟ, (୨) ଗଜେନ୍ଦ୍ରୋପାଖ୍ୟାନରେ ଗଜ ଓ ଗ୍ରାହପୁଦ୍ଧ, (୩) ଗଜସ୍ତୁତି ଓ ଗଜେନ୍ଦ୍ର-ମୋକ୍ଷଣ, (୪) ଗଜ ଓ ଗ୍ରାହର ପୂର୍ବଜନ୍ମ ଚରିତ ଏବଂ ଉଭୟଙ୍କ ମୁକ୍ତି ବିଷୟ ବର୍ଣ୍ଣିତ ହୋଇଅଛି ।

(୫) ପଞ୍ଚମ ମନୁ ରୈବତକ ବା ଗୌତମ ଓ ଷଷ୍ଠ ମନୁ ଚାକ୍ଷୁଷ ବା ଚରୁକ ପରିଚୟ, ଅଜ ଅବତାର ଚରିତ ଓ ବ୍ରହ୍ମାଙ୍କ ଭଗବତ୍ ସ୍ତୁତି, (୬) ମନ୍ଦରାଚଳକୁ ଆଣି ଦେବାସୁରଙ୍କର ସମୁଦ୍ର ମନ୍ଥନ ବିଷୟର ବର୍ଣ୍ଣନା କରାଯାଇଅଛି । (୭) ତତ୍ପରେ ସମୁଦ୍ର—ମନ୍ଥନାରମ୍ଭ ଓ ଶିବଙ୍କର ସମୁଦ୍ରୋତ୍ଥିତ ଗରଳପାନ, (୮) ସମୁଦ୍ରରୁ ଗଜ, ବାଜି, ଲକ୍ଷ୍ମୀ ସହିତ ଅନ୍ୟାନ୍ୟ ରତ୍ନର ଉତ୍ପତ୍ତି, ଦୈତ୍ୟମାନଙ୍କର ସୁଧା ହରଣ ଏବଂ ବିଷ୍ଣୁଙ୍କ ମୋହିନୀ ରୂପରେ (୯) ଦୈତ୍ୟମାନଙ୍କୁ ବଞ୍ଚିତ କରି ଦେବଗଣଙ୍କୁ ଅମୃତ ଦାନ ଓ ରାହୁର ଶିରଚ୍ଛେଦ ବିଷୟ ବର୍ଣ୍ଣିତ ହୋଇଅଛି, (୧୦) ଦେବାସୁର ସଂଗ୍ରାମ, (୧୧) ଦେବାସୁର ଯୁଦ୍ଧରେ ଦୈତ୍ୟମାନଙ୍କ ବିନାଶ, ବଳିର ପରାଜୟ, ନାରଦ ବଚନରେ ଯୁଦ୍ଧ ସମାପ୍ତି, (୧୨) ମୋହିନୀ ରୂପରେ ଭଗବାନ ଶିବଙ୍କୁ ମୋହିତ କରିଥିଲେ । (୧୩) ସପ୍ତମନୁ (ଶ୍ରାଦ୍ଧଦେବ, ସାବର୍ଣ୍ଣି, ଦକ୍ଷସାବର୍ଣ୍ଣି, ବ୍ରହ୍ମସାବର୍ଣ୍ଣି, ଧର୍ମସାବର୍ଣ୍ଣି, ରୁଦ୍ରସାବର୍ଣ୍ଣି ଓ ଦେବସାବର୍ଣ୍ଣି) ପରିଚୟ ଏବଂ ମନ୍ୱନ୍ତର କର୍ମ ନିରୂପଣ କରାଯାଇଛି ।

(୧୪) ବଳିର ସ୍ୱର୍ଗ ବିଜୟ, (୧୫) ଅଦିତିଙ୍କୁ ପୟୋବ୍ରତରେ ଉପଦେଶ, (୧୬) ଅଦିତିର ବ୍ରତରେ ସନ୍ତୁଷ୍ଟ ହୋଇ ଭଗବାନଙ୍କ ବରଦାନ ଏବଂ ତେଜୋମୟ ରୂପରେ ବିଷ୍ଣୁଙ୍କର ଅଦିତି ଗର୍ଭରେ ପ୍ରବେଶ, ବ୍ରହ୍ମାଙ୍କର ଭଗବତ୍ ସ୍ତୁତି, (୧୭) ବାମନାବତାର ପ୍ରାଦୁର୍ଭାବ ଓ ବଳିଗୃହରେ ବାମନଙ୍କ ବେଦଧ୍ୱନି, (୧୮) ବଳିବାମନ ସମ୍ବାଦ ଓ ତ୍ରିପାଦଭୂମି ପ୍ରାର୍ଥନା, ବଳିର ବିଶ୍ୱରୂପ ଦର୍ଶନ, (୨୦) ବଳିବନ୍ଧନ ଓ ବଳି ମୋକ୍ଷଣ, (୨୧) ବଳିର ପ୍ରଶଂସା ଏବଂ (୨୨) ବଳିର ପାତାଳ—ବାସ ବିଷୟରେ ଭଗବାନଙ୍କର ବରଦାନ (୨୩) ମତ୍ସ୍ୟାବତାର କଥା ବର୍ଣ୍ଣିତ ହୋଇଅଛି ।

ନବମସ୍କନ୍ଧ—

ନବମ ସ୍କନ୍ଧରେ ବ୍ୟାଖ୍ୟାନ । ବଂଶାନୁଚରିତ ଏ ମାନ ॥
ସେ ସୂର୍ଯ୍ୟ ବଂଶର କୀର୍ତ୍ତନ । ସୂର୍ଯ୍ୟର ଅଟଇ ନନ୍ଦନ ॥

× × ×

କୃଷ୍ଣ ଅବତାର ହୋଇଲେ । ନବମେ ଏମନ୍ତ କହିଲେ ॥
ଚବିଶ ଅଧ୍ୟାରେ ସମ୍ପୂର୍ଣ୍ଣ । ବଂଶାନୁଚରିତ ବ୍ୟାଖ୍ୟାନ ॥

॥ ପୃ—୧୦୫ ॥

ନବମ ସ୍କନ୍ଧର ବିଷୟବସ୍ତୁ ଚବିଶଟି ଅଧ୍ୟାୟ ବର୍ଣ୍ଣିତ ହୋଇଅଛି । ଏଥିରେ ୧) ଇଳାକନ୍ୟା ଉପାଖ୍ୟାନ, ୨) ବଂଶାନୁଚରିତରେ ପୃଷଧ୍ର, କବିକ, ବୃଷ, ଧୃଷ୍ଟ, ନୃଗ, ନରିଷ୍ୟନ୍ତ ପ୍ରଭୃତିଙ୍କର ବଂଶ ବିସ୍ତାର, (୩) ଶର୍ଯ୍ୟାତିବଂଶ, ସୁକନ୍ୟା, ଉପାଖ୍ୟାନ, ରୈବତକ କନ୍ୟା ଉପାଖ୍ୟାନ, (୪) ନାଭଗ ବଂଶ ବର୍ଣ୍ଣନ, ନାଭଗ ଚରିତ, ଅମ୍ବରୀଷ ଉପାଖ୍ୟାନ ଓ ଦୁର୍ବାସାଙ୍କ ପଳାୟନ ଇତ୍ୟାଦିର ବର୍ଣ୍ଣନା ଅଛି । (୫) ଦୁର୍ବାସାଙ୍କ ଦୁଃଖନିବୃତ୍ତି, ଅମ୍ବରୀଷ ପ୍ରଶଂସା, (୬) ଇକ୍ଷ୍ୱାକୁ ବଂଶ ପରିଚୟରେ ପରେ ମାନ୍ଧାତା ଚରିତ , ସୌଭରି ଉପାଖ୍ୟାନ, (୭) ତ୍ରିଶଙ୍କୁ କଥା, ହରିଶ୍ଚନ୍ଦ୍ର ଚରିତର ଉଲ୍ଲେଖ ଅଛି ।

(୮) ସଗର ବଂଶାନୁଚରିତ, (୯) ଗଙ୍ଗାବତରଣ, ସୌଦାସ ଚରିତ, ସୌଦାସ ଉପାଖ୍ୟାନ, (୧୦) ଶ୍ରୀରାମ ଚରିତ, (୧୧) ଶ୍ରୀରାମଙ୍କ ବଂଶବର୍ଣ୍ଣନ, (୧୨) ଇକ୍ଷ୍ୱାକୁ ବଂଶର କୁଶଠାରୁ ସୁମିତ୍ର ପର୍ଯ୍ୟନ୍ତ ନୃପତିମାନଙ୍କର ପରିଚୟ, (୧୩) ନିମି ରାଜବଂଶ ବିବରଣ, (୧୪) ସୋମବଂଶ ଚରିତରେ ମନୁପୁତ୍ରୀ ଇଳା ଗର୍ଭଜାତ ପୁରୁରବା ଚରିତ, (୧୫) ଜମଦଗ୍ନି ପରଶୁରାମ ଚରିତ, ସହସ୍ରାର୍ଜୁନ ବଧ, (୧୬) ଜମଦଗ୍ନି ବଧ, ପରଶୁରାମଙ୍କ ଦ୍ୱାରା କ୍ଷତ୍ରିୟମାନଙ୍କର ସଂହାର ଓ ବିଶ୍ୱାମିତ୍ରଙ୍କ ବଂଶର ବର୍ଣ୍ଣନା କରାଯାଇଅଛି ।

(୧୭) ନହୁଷ ତନୟ କ୍ଷତ୍ରବୃଦ୍ଧର ବଂଶ ପରିଚୟ, (୧୮) ଯଯାତି ଚରିତ, (୧୯) ଯଯାତିଙ୍କର ବୈରାଗ୍ୟୋଦୟ ଓ ଗୃହତ୍ୟାଗ, (୨୦) ପୁରୁବଂଶ ବର୍ଣ୍ଣନ, ଦୁଷ୍ମନ୍ତ ଓ ଭରତ ଚରିତ, (୨୧) ଭରତବଂଶ, ରନ୍ତିଦେବ ଚରିତ, (୨୨) ଦିବୋଦାସାଦି ଚରିତ ଓ ଋକ୍ଷବଂଶରେ ପାଣ୍ଡବାଦିଙ୍କ ଉତ୍ପତ୍ତି, (୨୩) ଅନୁ-ଦ୍ରୁହ୍ୟୁ ଓ ଯଦୁବଂଶ ବର୍ଣ୍ଣନ, (୨୪) ଯଦୁବଂଶରେ ଶ୍ରୀକୃଷ୍ଣାବତାରର ସୂଚନା ଦିଆଯାଇଅଛି ।

ଦଶମସ୍କନ୍ଧ—

ଦଶମ ସ୍କନ୍ଧେ କୃଷ୍ଣରସ । ଶୁଣିଲେ ନ ଥାଇ କଳୁଷ ॥
ଆଦ୍ୟେ ବସୁଦେବ ବିବାହ । କଂସ ଯେ ଦେବକୀ ନିଗ୍ରହ ॥

× × ×

ଏ ରୀତେ ଦଶମ ସମ୍ପୂର୍ଣ୍ଣ । ଛୟାଣୋଇ ଅଧ୍ୟା ବର୍ଣ୍ଣନ ॥
ଦଶମ ସ୍କନ୍ଧେ ଏହା କହି । ଶୁଣ ଶୌନକ ମନ ଦେଇ ॥

॥ ପୃ-୧୧୧ ॥

ମୂଳ ଗ୍ରନ୍ଥରେ ଦଶମ ସ୍କନ୍ଧ ନବେ ଅଧ୍ୟାୟରେ ବିଭକ୍ତ ଏବଂ ପ୍ରଥମରୁ ଅଣଚାଶ ଅଧ୍ୟାୟ ପର୍ଯ୍ୟନ୍ତ ପୂର୍ବାର୍ଦ୍ଧରୂପେ ଓ ପଚାଶରୁ ନବେ ଅଧ୍ୟାୟ ପର୍ଯ୍ୟନ୍ତ

ଉତ୍ତରାର୍ଦ୍ଧ ରୂପେ ପରିଚିତ । ଓଡ଼ିଆ ଭାଗବତରେ ଏହି ସ୍କନ୍ଧଟି ଛୟାନବେ ଅଧ୍ୟାୟରେ ବିଭକ୍ତ ଏବଂ ପ୍ରଥମରୁ ଅଡ଼ଚାଳିଶ ଅଧ୍ୟାୟ ପର୍ଯ୍ୟନ୍ତ ଗୋପଲୀଳା ଓ ଅଣଚାଶଠାରୁ ଛୟାନବେ ଅଧ୍ୟାୟ ପର୍ଯ୍ୟନ୍ତ ଦ୍ୱାରକା-ଲୀଳା ରୂପେ ଅଭିହିତ । ଗୋପଲୀଳାରେ ବ୍ରଜପୁର ଓ ମଥୁରାପୁରରେ ଘଟିଥିବା ଶ୍ରୀକୃଷ୍ଣଙ୍କର ବାଲ୍ୟ ଓ କୈଶୋରଲୀଳା ଏବଂ ଦ୍ୱାରକାଲୀଳାରେ ବିଦ୍ୟାଧ୍ୟୟନଠାରୁ ଶ୍ରୀକୃଷ୍ଣଙ୍କର ଯୌବନ-କାଳୀନ ଘଟଣାମାନ ବର୍ଣ୍ଣନା କରାଯାଇଅଛି ।

ଏହି ସ୍କନ୍ଧରେ (୧) ପୃଥିବୀ ଅସୁରମାନଙ୍କ ଉତ୍ପାତରେ ବ୍ୟାକୁଳ ହୋଇ ବ୍ରହ୍ମାଙ୍କଠାରେ ଶରଣ ପଶିଲା, ବ୍ରହ୍ମା ଦେବଗଣଙ୍କ ସହିତ କ୍ଷୀର ସମୁଦ୍ରର ତୀର-ବର୍ତ୍ତୀ ହୋଇ ଭଗବାନଙ୍କୁ ପ୍ରାର୍ଥନା କରିବା ପରେ ପ୍ରସନ୍ନ ହୋଇ ଭଗବାନ ବିଷ୍ଣୁ, ଶ୍ରୀକୃଷ୍ଣାବତାର ଗ୍ରହଣ ପୂର୍ବକ ପୃଥିବୀର ଭାର ହ୍ରାସ କରିବେ ବୋଲି ଦେବଗଣଙ୍କୁ ପ୍ରତିଶ୍ରୁତି ଦେଲେ, (୨) ଦେବକୀ ବସୁଦେବ ବିବାହ ଏବଂ ଦୈବବାଣୀ ଶୁଣି କଂସ ସେ ଦୁହିଁଙ୍କୁ ବନ୍ଦୀଶାଳାରେ ନିକ୍ଷେପ କଲେ । (୩) କଂସ ଦ୍ୱାରା ଦେବକୀ ପୁତ୍ର-ମାନଙ୍କର ହତ୍ୟା, ଦେବକୀ ଗର୍ଭରେ ଶ୍ରୀକୃଷ୍ଣ ପ୍ରବେଶ, ଦେବଗଣ କୃତ ଗର୍ଭସ୍ତୁତି, (୪) ଶ୍ରୀକୃଷ୍ଣଙ୍କ ଜନ୍ମ, ଦେବକୀ-ବସୁଦେବ ସ୍ତୁତି, ଭଗବାନଙ୍କ ଉପଦେଶ ଅନୁସାରେ ପୁତ୍ରକୁ ନେଇ ଗୋକୁଳର ନନ୍ଦଘରେ ରଖି ବସୁଦେବ ଯଶୋଦାର କନ୍ୟାକୁ ଆଣିଥିଲେ, ୫) ହତ୍ୟାକାରୀ କଂସ ଦାଉରୁ ଦେବକୀଙ୍କ ମୁକ୍ତି ଓ ଶ୍ରୀକୃଷ୍ଣାବତାର ସୂଚନା, କଂସର ଅନୁତାପ ଏବଂ ଅସୁରମାନଙ୍କ ସହିତ ମନ୍ତ୍ରଣା, (୬) ନନ୍ଦବସୁଦେବ ସମାଗମ, (୭) ପୂତନା ବଧ, (୮) ଶ୍ରୀକୃଷ୍ଣଙ୍କ ବାଲକ୍ରୀଡ଼ାରେ ଶକଟା ଓ ତୃଣାସୁର ବଧ ଏବଂ ଶ୍ରୀକୃଷ୍ଣ ମୁଖରେ ଯଶୋଦାଙ୍କର ବିଶ୍ୱବ୍ରହ୍ମାଣ୍ଡ ଦର୍ଶନ ବିଷୟ ବର୍ଣ୍ଣିତ ହୋଇଅଛି ।

(୯) ଯଦୁବଂଶର ପୁରୋହିତବର୍ଗ ଦ୍ୱାରା ରାମ ଓ କୃଷ୍ଣଙ୍କର ଜାତକର୍ମ ଓ ନାମକରଣ ସଂସ୍କାର, (୧୦) ଶ୍ରୀକୃଷ୍ଣଙ୍କର ଯମଳାର୍ଜ୍ଜୁନ—ଭଞ୍ଜନ ଓ (୧୧) ଯମଳା-ର୍ଜ୍ଜୁନ ଉଦ୍ଧାର, (୧୨) ବୃନ୍ଦାବନରେ ବକାସୁର ଓ ବତ୍ସାସୁର ବଧ (୧୩) ଅଘାସୁର ବଧ, (୧୪) ବତ୍ସାହରଣ, (୧୫) ବ୍ରହ୍ମାଙ୍କ ଭଗବତ୍ ସ୍ତୁତି, (୧୬) ତାଳବନ ଭଞ୍ଜନ ଧେନୁକାସୁର ବଧ, (୧୭) କାଳୀୟ ଦମନ ଓ କାଳୀୟ ମୋକ୍ଷଣ, (୧୮) ଦାବାଗ୍ନି ମୋକ୍ଷଣ (୧୯) ପ୍ରଲମ୍ବାସୁର ବଧ, (୨୦) କୁଞ୍ଜବନରେ ଦାବାନଳରୁ ଗାଈ ଓ ଓ ଗୋପାଳଙ୍କ ରକ୍ଷା, (୨୧) ବର୍ଷା ଓ ଶରତ୍କାଳ ବର୍ଣ୍ଣନ, (୨୨) ବେଣୁଧ୍ୱନି (୨୩) ବସ୍ତ୍ରହରଣଲୀଳା, (୨୪) ଯଜ୍ଞପତ୍ନୀ ବ୍ରାହ୍ମଣ କନ୍ୟାମାନଙ୍କର ମୋକ୍ଷ, (୨୫) ଇନ୍ଦ୍ର-ଯଜ୍ଞଭଙ୍ଗ, (୨୬) ଗୋବର୍ଦ୍ଧନ ଗିରି ଧାରଣ, (୨୭) ଏ ସମସ୍ତ ଅଲୌକିକ ଲୀଳାରେ ଭୀତ ଗୋପକୁଳଙ୍କୁ ଗର୍ଗଙ୍କ ଆଶ୍ୱାସନା ବିଷୟରେ ବର୍ଣ୍ଣନା କରାଯାଇଅଛି ।

୨୮) ଇନ୍ଦ୍ରଙ୍କର ଶ୍ରୀକୃଷ୍ଣଙ୍କଠାରେ କ୍ଷମାପ୍ରାର୍ଥନା, ୨୯) ବରୁଣ ଦ୍ୱାରା ବନ୍ଦୀ ନନ୍ଦଙ୍କ ମୁକ୍ତି, ୩୦) ବେଣୁନାଦରେ ଆକୃଷ୍ଟ ହୋଇ ଆସିଥିବା ବହୁଳା ଗୋପୀମାନଙ୍କ ସହିତ ଶ୍ରୀକୃଷ୍ଣଙ୍କର ରାସଲୀଳା ଏବଂ ରାସମଧ୍ୟରେ ଅନ୍ତର୍ଦ୍ଧାନ ୩୧) ରାସକ୍ରୀଡ଼ାରେ ଗୋପୀମାନଙ୍କ ବିଳାପ, ୩୨) ଗୋପୀବିଳାପ ଭଗବନ୍ତ ପ୍ରାର୍ଥନା ୩୩) ଶ୍ରୀକୃଷ୍ଣଙ୍କ ପ୍ରାଦୁର୍ଭାବ, ଗୋପୀମାନଙ୍କ ଆଶ୍ୱାସନା, ରାସକ୍ରୀଡ଼ା ୩୪) ମହାରାସ ଏବଂ ଏ ବିଷୟରେ ପରୀକ୍ଷିତଙ୍କ ଆଶଙ୍କାକୁ ଶୁକଙ୍କ ଉତ୍ତର ଦ୍ୱାରା ସମାଧାନ କରାଯାଇଅଛି । ୩୫) ଅଜଗର ମୁଖରୁ ନନ୍ଦଙ୍କ ମୁକ୍ତି ଓ ଅଜଗରରୂପୀ ସୁଦର୍ଶନ ବିଦ୍ୟାଧରର ମୋକ୍ଷ, ୩୬) ଶଙ୍ଖଚୂଡ଼ ବଧ, ୩୭) ଯଶୋଦାଙ୍କ ନିକଟରେ ଗୋପୀମାନଙ୍କର ଶ୍ରୀକୃଷ୍ଣଙ୍କ ଗୁଣଗାନ, ୩୮) ଷଣ୍ଢାସୁର ବଧ, ୩୯) ରାମକୃଷ୍ଣଙ୍କୁ ନେଇ ନନ୍ଦ ମଥୁରା ଆଗମନ ନିମିତ୍ତ କଂସର ସମ୍ବାଦ ନେଇ ଦୂତ ଅକ୍ରୂରର ଗୋପପୁର ଗମନ ପ୍ରଭୃତି ବର୍ଣ୍ଣନ ହୋଇଅଛି ।

୪୦) କେଶୀ ଓ ବ୍ୟୋମାସୁର ବଧ, ୪୧) ଅକ୍ରୂର ସହିତ ରାମକୃଷ୍ଣଙ୍କର ସାକ୍ଷାତ ଓ ଅଭ୍ୟର୍ଥନା, ୪୨) ମଥୁରା ଉଦ୍ଦେଶ୍ୟରେ ରାମକୃଷ୍ଣଙ୍କ ଯାତ୍ରା, ବିରହକାତର ଗୋପାଙ୍ଗନାମାନଙ୍କ ବିଳାପ, ଏବଂ ବାଟରେ କାଳିନ୍ଦୀ ଜଳରେ ଅକ୍ରୂରର ରାମକୃଷ୍ଣଙ୍କୁ ଦର୍ଶନ, ୪୩) ଅକ୍ରୂର ସ୍ତବ, ୪୪) ରାମକୃଷ୍ଣଙ୍କ ମଥୁରା ପ୍ରବେଶ, ରଜକ ବଧ, ସୁଦାମା ମାଳିର ମୋକ୍ଷ, ୪୫) କୁବ୍‌ଜା ଚରିତ, ଧନୁଭଙ୍ଗ, ରଙ୍ଗସଭା ବର୍ଣ୍ଣନ, ୪୬) କୁବଳୟାପୀଡ଼ ବଧ, ରଙ୍ଗସଭା ପ୍ରବେଶ, ୪୭) ଚାଣୁର, ମୁଷ୍ଟିକାଦି ମଲ୍ଲମାନଙ୍କ ସହିତ କଂସର ନିଧନ ଏବଂ ୪୮) ଦେବକୀ ବସୁଦେବଙ୍କୁ ସାନ୍ତ୍ୱନା ଓ ଉଗ୍ରସେନର ରାଜ୍ୟାଭିଷେକ ପ୍ରଭୃତି ଗୋପଲୀଳାରେ ବର୍ଣ୍ଣିତ ହୋଇଅଛି ।

ଦ୍ୱାରକାଲୀଳାରେ ୪୯) ରାମକୃଷ୍ଣଙ୍କ ବିଦ୍ୟାଧ୍ୟୟନ ଓ ଦକ୍ଷିଣା ରୂପେ ଗୁରୁଙ୍କ ମୃତପୁତ୍ରର ପ୍ରତ୍ୟାବର୍ତ୍ତନ, ୫୦) ଗୋପୀଙ୍କ ସାନ୍ତ୍ୱନା ପାଇଁ ଶ୍ରୀକୃଷ୍ଣଙ୍କ ଦୂତ ରୂପେ ଉଦ୍ଧବର ବ୍ରଜପୁର ଗମନ ଏବଂ ସେଠାରେ ନନ୍ଦ-ଉଦ୍ଧବ ସାକ୍ଷାତ, ୫୧) ଉଦ୍ଧବ-ଗୋପୀ ସମ୍ବାଦ, ଉଦ୍ଧବର ଗୋପୀଙ୍କୁ ଆଶ୍ୱାସନା ଓ ମଥୁରା ପ୍ରତ୍ୟାବର୍ତ୍ତନ ବିଷୟ ବର୍ଣ୍ଣିତ ହୋଇଅଛି । ପୁନଶ୍ଚ ୫୨) କୁବ୍‌ଜା ମନୋରଥ ପୂର୍ତ୍ତି, ରାମ ଓ ଉଦ୍ଧବ ସହିତ ଶ୍ରୀକୃଷ୍ଣଙ୍କ ଅକ୍ରୂର ଗୃହରେ ପ୍ରବେଶ, ଅକ୍ରୂରର ହସ୍ତିନାପୁର ଯାତ୍ରା ଏବଂ ୫୩) କୁନ୍ତୀଙ୍କ କରୁଣୋଦ୍‌ଗାର, ଅକ୍ରୂର ଧୃତରାଷ୍ଟ୍ର ସମ୍ବାଦ ଓ ଅକ୍ରୂରର ମଥୁରା ପ୍ରତ୍ୟାବର୍ତ୍ତନ ବର୍ଣ୍ଣନା କରାଯାଇଅଛି ।

୫୪) ରାମ-କୃଷ୍ଣଙ୍କର ଜରାସନ୍ଧ ସହିତ ଯୁଦ୍ଧ, ଦ୍ୱାରକାଦୁର୍ଗ ନିର୍ମାଣ, ୫୫) କାଳଯବନ ବିନାଶ, ମାନ୍ଧାତା ନୃପତି ପୁତ୍ର ମୁଚୁକୁନ୍ଦର ଭଗବନ୍ତ ସ୍ତୁତି ଓ ମୁକ୍ତି, ୫୬) ଆବର୍ତ୍ତର ପ୍ରଭୁ ରେବତର କନ୍ୟା ରେବତୀ ସହିତ ବଳଦେବଙ୍କ

ବିବାହ, ଶ୍ରୀକୃଷ୍ଣଙ୍କ ନିକଟକୁ ବିଦର୍ଭର ରାଜା ଭୀଷ୍ମକ କନ୍ୟା ରୁକ୍ମିଣୀର ସନ୍ଦେଶ ପ୍ରେରଣ ୫୭) କୃଷ୍ଣଙ୍କର କୁଣ୍ଡିନପୁର ଯାତ୍ରା ଓ ରୁକ୍ମିଣୀ ହରଣ, ୫୮) ଯଦୁମାନଙ୍କ ସଂଗ୍ରାମରେ ଚୈଦ୍ୟପକ୍ଷର ରାଜାମାନଙ୍କ ପରାଜୟ, ରୁକ୍ମିଣୀ ଶ୍ରୀକୃଷ୍ଣ ବିବାହ, ୫୯) ପ୍ରଦ୍ୟୁମ୍ନ ଜନ୍ମ, ଶମ୍ବରାସୁର ବଧ, ୬୦) ସ୍ୟମନ୍ତର ମଣିହରଣ ଉପାଖ୍ୟାନ, ଜାମ୍ବବତୀ ଓ ସତ୍ୟଭାମାଙ୍କ ସହିତ ଶ୍ରୀକୃଷ୍ଣଙ୍କର ବିବାହ ୬୧) ସ୍ୟମନ୍ତର ମଣି-ହରଣରେ ସତ୍ରାଜିତକୁ ହତ୍ୟାକରି ଶତଧନ୍ୱାର ମଣିହରଣ, ଶତଧନ୍ୱା ବଧ, ମଣି ସହିତ ଅକ୍ରୂରର ଦ୍ୱାରକା ପଳାୟନ, ୬୨) କାଳିନ୍ଦୀ କନ୍ୟା ବିବାହ, ୬୩) ଶ୍ରୀକୃଷ୍ଣଙ୍କ ସହିତ ମିତ୍ରବିନ୍ଦା, ସତ୍ୟା, ଭଦ୍ରା ଓ ଲକ୍ଷ୍ମଣା କନ୍ୟାମାନଙ୍କର ବିବାହ, ୬୪) ମୁରାସୁର ବଧ, ନରକାସୁର ବଧ, ପାରିଜାତ ହରଣ, ଷୋଳସହସ୍ର କନ୍ୟାଙ୍କ ସହିତ ଶ୍ରୀକୃଷ୍ଣଙ୍କ ବିବାହ, ୬୫) ଲକ୍ଷ୍ମୀନାରାୟଣଙ୍କ ପ୍ରଣୟ କଳହ ପ୍ରଭୃତିର ବର୍ଣ୍ଣନା କରାଯାଇଛି ।

୬୬) ଶ୍ରୀକୃଷ୍ଣଙ୍କ ସନ୍ତତିଙ୍କ ପରିଚୟ, ଅନିରୁଦ୍ଧ ବିବାହରେ ରୁକ୍ମିଣ ବଧ, ୬୭) ଉଷା ଅନିରୁଦ୍ଧ ସମାଗମ, ଅନିରୁଦ୍ଧ ବନ୍ଧନ, ୬୮) ଶ୍ରୀକୃଷ୍ଣ ବାଣାସୁର ଯୁଦ୍ଧ, ଉଷା ଅନିରୁଦ୍ଧ ବିବାହ, ୬୯) କୃକଳାଶ ରୂପୀ ଅଭିଶପ୍ତ ନୃଗରାଜାର ମୁକ୍ତି, ୭୦) ବଳରାମଙ୍କ ବ୍ରଜପୁର ଯାତ୍ରା ଓ କାଳିନ୍ଦୀ ଆକର୍ଷଣ । ୭୧) ପୌଣ୍ଡ୍ରକ ଓ କାଶୀରାଜ ବଧ, କାଶୀପୁର ଦହନ, ୭୨) ରୈବତକରେ ଦ୍ୱିବିଧ ବା ଦ୍ୱିବିଦ ବାନର ବଧ, ୭୩) ଜାମ୍ବବତୀ-ସୁତ ଶାମ୍ବକର୍ତ୍ତୃକ ଦୁର୍ଯ୍ୟୋଧନ କନ୍ୟା ଲକ୍ଷ୍ମଣା ହରଣ ଓ ଲକ୍ଷ୍ମଣା ସହିତ ଶାମ୍ବର ବିବାହ, ୭୪) ନାରଦଙ୍କର ଶ୍ରୀକୃଷ୍ଣ ମାୟା ଦର୍ଶନ, ୭୫) ଯୁଧିଷ୍ଠିର ସମ୍ବାଦ ନେଇ ନାରଦ ଓ ଜରାସନ୍ଧ ଦ୍ୱାରା ବନ୍ଦୀକୃତ ରାଜାଗଣଙ୍କ ସମ୍ବାଦ ସହିତ ରାଜଦୂତର ଆଗମନ, ୭୬) ଉଦ୍ଧବ ସହିତ ମନ୍ତ୍ରଣା ପରେ ଶ୍ରୀକୃଷ୍ଣଙ୍କର ଇନ୍ଦ୍ରପ୍ରସ୍ଥ ଯାତ୍ରା ୭୭) ରାଜସୂୟ ଯଜ୍ଞ ଉଦ୍ଦେଶ୍ୟରେ ପାଣ୍ଡବମାନଙ୍କ ଦିଗ୍‌ବିଜୟ ଓ ଭୀମଦ୍ୱାରା ଜରାସନ୍ଧ ବଧ, ୭୮) ଜରାସନ୍ଧର କାରାଗାରରେ ଅବରୁଦ୍ଧ ରାଜାମାନଙ୍କ ମୁକ୍ତି ବିଷୟ ବର୍ଣ୍ଣିତ ହୋଇଅଛି ।

ଏହାପରେ ୭୯) ରାଜସୂୟ ଯଜ୍ଞରେ ଶିଶୁପାଳ ବଧ, ୮୦) ମୟ ନିର୍ମିତ ଯୁଧିଷ୍ଠିରଙ୍କ ମାୟା ସଭାରେ ଦୁର୍ଯ୍ୟୋଧନର ଅପମାନ, ୮୧) ଶାଲ୍ୱଙ୍କ ସହିତ ଯଦୁଙ୍କ ଯୁଦ୍ଧ ଓ ମୋହିତ ପ୍ରଦ୍ୟୁମ୍ନର ବର୍ଣ୍ଣନା, ୮୨) ଶାଲ୍ୱରାଜା ବଧ, ୮୩) ଦନ୍ତବକ୍ର ଓ ବିଦୁରଥ ବଧ, ୮୪) ବଲ୍ୱଲ ବଧ, ସୂତହତ୍ୟା ହେତୁ ବ୍ରହ୍ମହତ୍ୟାଜନିତ ବିଷାଦରେ ୮୫) ବଳଦେବଙ୍କର ତୀର୍ଥଯାତ୍ରା ୮୬) ସୁଦାମା ଉପାଖ୍ୟାନରେ ସୁଦାମାର ଦାରିଦ୍ର୍ୟ ନାଶ, ୮୭) ସୁଦାମାର ମୋକ୍ଷ, ୮୮) ସୂର୍ଯ୍ୟୋପରାଗ ପର୍ବପାଳନ ନିମିତ୍ତ ଯଦୁଙ୍କ ସହ ଶ୍ରୀକୃଷ୍ଣଙ୍କର କୁରୁକ୍ଷେତ୍ର ଯାତ୍ରା ଓ ଗୋପୀମାନଙ୍କ ମୁକ୍ତି, ୮୯) ଦ୍ରୌପଦୀଙ୍କ-

ଠାରେ ଶ୍ରୀକୃଷ୍ଣ ପତ୍ନୀମାନଙ୍କର ସ୍ୱ ସ୍ୱ ବିବାହ ବାର୍ତ୍ତା କଥନ, ୧୦) ତୀର୍ଥଯାତ୍ରାରେ ବନ୍ଧୁମାନଙ୍କର କୁଶଳ ପ୍ରଶ୍ନ, ବସୁଦେବର ଯଜ୍ଞୋତ୍ସବ, ଋଷିଗଣଙ୍କ ଭଗବତ୍ ସ୍ତୁତି, ୧୧) ଦେବକୀର ମୃତ ଷଡ୍‌ପୁତ୍ର ପ୍ରାପ୍ତି, ୧୨) ସୁଭଦ୍ରା ହରଣ, ଶ୍ରୀକୃଷ୍ଣଙ୍କର ମିଥିଳା ଯାତ୍ରା, ବସୁଦେବ ସୂତର ମୁକ୍ତି, ୧୩) ବେଦସ୍ତୁତି ବା ଶ୍ରୁତିଗୀତା ବର୍ଣ୍ଣନ, ୧୪) ବୃକାସୁର ଭୟରୁ ଶିବଙ୍କ ରକ୍ଷା ଓ ବୃକାସୁର ବଧ, ୧୫) ବ୍ରହ୍ମା, ବିଷ୍ଣୁ ଓ ଶିବଙ୍କ ଶ୍ରେଷ୍ଠତ୍ୱ ପ୍ରତିପାଦନ ଉଦ୍ଦେଶ୍ୟରେ ଭୃଗୁଙ୍କ ପୌରହିତ୍ୟରେ ଋଷିମାନଙ୍କ ଯଜ୍ଞ, ବିଷ୍ଣୁଙ୍କ ଶ୍ରେଷ୍ଠତ୍ୱର ପରିଚୟ, ଅର୍ଜୁନ ସହିତ ମହାକାଳ ପୁରକୁ ଯାଇ ଶ୍ରୀକୃଷ୍ଣ ବ୍ରାହ୍ମଣର ମୃତ ପୁତ୍ରକୁ ଫେରାଇ ଆଣିଥିଲେ । ଶେଷ ଅଧ୍ୟାୟରେ ୧୬) ଶ୍ରୀକୃଷ୍ଣଙ୍କ ଲୀଳାର ସଂକ୍ଷିପ୍ତ ବର୍ଣ୍ଣନା, କୃଷ୍ଣ ମହିଷୀମାନଙ୍କ ଅନୁରାଗାଧିକ୍ୟ ଏବଂ ଯଦୁକୁଳରେ ଅସଂଖ୍ୟତ୍ୱ ପ୍ରତିପାଦନ କରାଯାଇଅଛି ।

ଏକାଦଶ ସ୍କନ୍ଧ—

ଏବେ ହୋ ଶୁଣ ଏକାଦଶ । ଶ୍ରୀକୃଷ୍ଣ ବିଭୂତି ପ୍ରକାଶ ॥
ଶୁକେ ପରୀକ୍ଷ ପଚାରିଲା । କେମନ୍ତ ବ୍ରହ୍ମଶାପ ହେଲା ॥

× × ×

ଏକାଦଶ ସ୍କନ୍ଧ ଚରିତ । ବତିଶ ଅଧ୍ୟାୟରେ କର୍ମିତ ॥
ଏକାଦଶରେ ଏହା କହି । ଶୁଣ ଶୌନକ ମନ ଦେଇ ॥

ପୃ–୧୧୩

ମୂଳ ଭାଗବତରେ ଏକାଦଶ ସ୍କନ୍ଧ ଏକତିରିଶଟି ଅଧ୍ୟାୟରେ ବିଭକ୍ତ ହୋଇଥିବା ସ୍ଥଳେ ଓଡ଼ିଆ ଭାଗବତରେ ଏହି ସ୍କନ୍ଧ ବତିଶ ଅଧ୍ୟାୟ ମଧ୍ୟରେ ଲିଖିତ ହୋଇଅଛି । ଏଥିରେ ୧) ଯଦୁକୁଳ ସଂହାର ନିମିତ୍ତ ଋଷିମାନଙ୍କ ଶାପ, ୨) ବସୁଦେବଙ୍କୁ ଦେବର୍ଷି ନାରଦଙ୍କ ଉପଦେଶ, ନିମି ଓ ନବ ବିପ୍ର ବା ନବ ଯୋଗେଶ୍ୱର (କବି, ହବି, ଅନ୍ତରୀକ୍ଷ, ପିପ୍‌ପଲାୟନ, ପ୍ରବୁଦ୍ଧ, ଆବିର୍ହୋତ୍ର, ଦ୍ରୁମିଳ, ଚମସ ଓ କରଭାଜନ) ସମ୍ବାଦରେ ଭାଗବତ ଧର୍ମ ଓ ଭାଗବତର ଲକ୍ଷଣ ବିଷୟରେ ବର୍ଣ୍ଣନା କରାଯାଇଅଛି ।

୩) ତ୍ରିବିଧ ବୈଷ୍ଣବର (ଉତ୍ତମ, ମଧ୍ୟମ, ପ୍ରାକୃତ) ପରିଚୟ, ୪) କର୍ମଯୋଗଦ୍ୱାରା ମାୟାରୁ ମୁକ୍ତ ହେବା ଉପାୟ, ୫) ନିମି ଓ ପୂର୍ବୋକ୍ତ ନବବିପ୍ର ସମ୍ବାଦରେ ନାରାୟଣଙ୍କ ବିଭିନ୍ନ ଅବତାର ବର୍ଣ୍ଣନା, ୬) ବସୁଦେବ ନାରଦ ସମ୍ବାଦରେ ବର୍ଣ୍ଣଭେଦ, ଭକ୍ତିଯୋଗ ବିଷୟ ବର୍ଣ୍ଣିତ ହୋଇଅଛି । ୭) ଦେବସ୍ତୁତି ଓ ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦ ୮) ଶ୍ରୀକୃଷ୍ଣଙ୍କର ଉଦ୍ଧବଙ୍କୁ ଜ୍ଞାନୋପଦେଶ ଏବଂ ପ୍ରସଙ୍ଗ-

ନବମେ ଅବଧୂତ ଯଦୁ ଉପାଖ୍ୟାନ ଅନ୍ତର୍ଗତ ଅବଧୂତଙ୍କ ଚବିଶ ଗୁରୁଙ୍କ (ପୃଥିବୀ, ପବନ, ଅନଳ, ବାଳକ, ଆକାଶ, ରବି, ଚନ୍ଦ୍ର, ଜଳ, ସିନ୍ଧୁ, କୁଞ୍ଜର, ଭ୍ରମର, କପୋତ, ପତଙ୍ଗ, ଅଜଗର, ସର୍ପ, ମୀନ, ପିଙ୍ଗଳାବେଶ୍ୟା, କୁରରୀ, ବ୍ରାହ୍ମଣ-କୁମାରୀ, ହରିଣ, ଊର୍ଣ୍ଣନାଭ, ଶରକାରକ, ମଧୁହାରୀ ଓ ପେଶକୃତ୍) ମଧ୍ୟରୁ କପୋତ ଉପାଖ୍ୟାନ ସହିତ ଆଠଜଣ ଗୁରୁଙ୍କ ଉପଦେଶ ବର୍ଣ୍ଣନା କରାଯାଇଅଛି ।

୯) ଯଦୁରାଜା ଓ ଅବଧୂତ ସମ୍ବାଦରେ ପିଙ୍ଗଳା ବେଶ୍ୟା ଉପାଖ୍ୟାନ ସହିତ ନଅଜଣ ଗୁରୁଙ୍କ ଉପଦେଶ ଉଲ୍ଲିଖିତ ଅଛି । ୧୦) ଅବଶିଷ୍ଟ ସାତଜଣ ଗୁରୁଙ୍କ ଉପଦେଶ ସହିତ ଅବଧୂତ ଉପାଖ୍ୟାନ ସମାପ୍ତି । ୧୧) ଭଗବାନ ଉଦ୍ଧବ ସମ୍ବାଦରେ ମାୟାମୟ ମିଥ୍ୟା ସଂସାରର ପରିଚୟ, ଆତ୍ମାର ମୋହମୁକ୍ତି, ୧୨) ବନ୍ଧନଯୁକ୍ତ ଓ ମୁକ୍ତ ସାଧୁମାନଙ୍କର ଲକ୍ଷଣ, ସଦ୍‌ଭକ୍ତି ପ୍ରାପ୍ତିର ଉପାୟ ବର୍ଣ୍ଣିତ ହୋଇଅଛି । ୧୩) ସତ୍ସଙ୍ଗ ଫଳ କର୍ମାନୁଷ୍ଠାନ ଓ କର୍ମତ୍ୟାଗ ବ୍ୟବସ୍ଥା ପରିଚୟ, ୧୪) ହଂସରୂପରେ ଭଗବାନଙ୍କର ବ୍ରହ୍ମାଙ୍କୁ ଜ୍ଞାନୋପଦେଶ, ୧୫) ଭକ୍ତିର ମହତ୍ତ୍ୱ ଓ ଧ୍ୟାନଯୋଗ ବର୍ଣ୍ଣନା, ୧୬) ଅଷ୍ଟାଦଶ ସିଦ୍ଧିର (ଅଣିମା, ଲଘିମା, ବ୍ୟାପ୍ତି, ପ୍ରକାମ୍ୟ, ମହିମା, ଈଶିତ୍ୱ, ବଶିତ୍ୱ, କାମାବସାୟିତା =(ଅଷ୍ଟୈଶ୍ୱର୍ଯ୍ୟ) ଅନୂର୍ମିତ୍ୱ (କ୍ଷୁଧାପିପାସା ଜରା, ମୃତ୍ୟୁ, ଲୋଭ ଓ ମୋହର ନିବାରଣ), ଦୂରଶ୍ରବଣ, ଦୂରଦର୍ଶନ, ମନୋଜବ କାମରୂପ, ପରକାୟ, ପ୍ରବେଶ, ସ୍ୱଚ୍ଛନ୍ଦମୃତ୍ୟୁ, ମରଣସିଦ୍ଧି, ସଙ୍କଳ୍ପସିଦ୍ଧି ଓ ବଚନସିଦ୍ଧି) ପରିଚୟ ଦିଆଯାଇଛି ।

୧୭) ଭଗବାନଙ୍କ ବିଭୂତିଯୋଗ ବର୍ଣ୍ଣନ, ୧୮) ବର୍ଣ୍ଣାଶ୍ରମ ବିଚାର, ବ୍ରହ୍ମଚର୍ଯ୍ୟ ଓ ଗୃହସ୍ଥାଶ୍ରମ ବର୍ଣ୍ଣନ, ୧୯) ବାନପ୍ରସ୍ଥ ଓ ସନ୍ନ୍ୟାସ ଧର୍ମ ନିରୂପଣ ୨୦) ଜ୍ଞାନଯୋଗ ଓ ଭକ୍ତିଯୋଗ ପରିଚୟ ୨୧) ଭକ୍ତିଯୋଗ-ତତ୍ତ୍ୱଜ୍ଞାନ ନିରୂପଣ, ୨୨) ବେଦତତ୍ତ୍ୱର ବର୍ଣ୍ଣନ, ୨୩) ତତ୍ତ୍ୱ ନିରୂପଣ, ୨୪) ଭିକ୍ଷୁଗୀତା ଓ ଭିକ୍ଷୁଦ୍ୱିଜ ଉପାଖ୍ୟାନ, ୨୫) ବ୍ରହ୍ମାଙ୍କ ସୃଷ୍ଟି ନିରୂପଣରେ ସାଂଖ୍ୟଯୋଗ ପରିଚୟ, ୨୬) ତ୍ରିଗୁଣ ଲକ୍ଷଣ, ୨୭) ପୁରୂରବା ଉପାଖ୍ୟାନ, ୨୮) ସାଙ୍ଗକ୍ରିୟାଯୋଗ ବା ପ୍ରତିମା ପୂଜା ଲକ୍ଷଣ, ୨୯) ଜ୍ଞାନଯୋଗ ବର୍ଣ୍ଣନ ୩୦) ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦରେ ଭାଗବତ ଧର୍ମ ନିରୂପଣ ଓ ଉଦ୍ଧବଙ୍କର ବଦରିକାଶ୍ରମ ଗମନ । ୩୧) ଯଦୁକୁଳ ସଂହାର ବର୍ଣ୍ଣନ ଓ ବଳରାମଙ୍କ ଦେହତ୍ୟାଗ ଏବଂ ୩୨) ଶ୍ରୀକୃଷ୍ଣଙ୍କର ବୈକୁଣ୍ଠ ଯାତ୍ରା ବିଷୟମାନ ବର୍ଣ୍ଣିତ ହୋଇଅଛି ।

ଦ୍ୱାଦଶ ସ୍କନ୍ଧ—

ଦ୍ୱାଦଶ ସ୍କନ୍ଧେ ଯେ ଚରିତ । ବର୍ତ୍ତମାନ ଭବିଷ୍ୟ ଭୂତ ॥
ଶୁକ କହନ୍ତି ବିଦ୍ୟମାନ । ଶୌନକ ଶୁଣ ସାବଧାନ ॥

ଦ୍ୱାଦଶ ସ୍କନ୍ଧେ ସମାପତ । ନାମ ଯା ଶ୍ରୀମ ଭାଗବତ ॥
ତ୍ରୟୋଦଶ ଅଧ୍ୟାୟରେ ପୁଣ । ଦ୍ୱାଦଶ ହୋଇଲା ସମ୍ପୂର୍ଣ୍ଣ ॥

॥ ମୂ-୧୨ ॥

ଦ୍ୱାଦଶ ସ୍କନ୍ଧ ତେରଟି ଅଧ୍ୟାୟରେ ବିଭକ୍ତ । ଏହା ଅଧ୍ୟାୟମାନଙ୍କରେ ୧) କଳିଯୁଗୀୟ ରାଜବଂଶ ବିବରଣ, ୨) କଳିଯୁଗ ମହିମା ବର୍ଣ୍ଣନରେ କଳିଯୁଗ ଧର୍ମ ନିରୂପଣ, କଲ୍କି ଅବତାର ଓ ସତ୍ୟଯୁଗ ସମୟ ବିଚାର । ୩) ଚତୁର୍ଯୁଗ ପରିଚୟ ଓ କଳିଯୁଗରେ ନାମକୀର୍ତ୍ତନର ମାହାତ୍ମ୍ୟ । ୪) ଚତୁର୍ବିଧ ପ୍ରଳୟ (ନୈମିତ୍ତିକ, ପ୍ରାକୃତିକ, ଆତ୍ୟନ୍ତିକ ଓ ନିତ୍ୟ) ବର୍ଣ୍ଣନ । ୫) ଶୁକ ପରୀକ୍ଷିତ ସମ୍ବାଦରେ ପରମାର୍ଥ ଉପଦେଶ ବର୍ଣ୍ଣନ । ୬) ପରୀକ୍ଷିତ ରାଜାଙ୍କର ଦେହତ୍ୟାଗ, ବେଦଶାଖା ବିଭାଗ ଓ ଜନ୍ମେଜୟଙ୍କ ସର୍ପଯଜ୍ଞ । ୭) ଅଥର୍ବ ବେଦ ବିଭାଗ ଓ ପୁରାଣ ଲକ୍ଷଣ ବର୍ଣ୍ଣନ । ୮) ମାର୍କଣ୍ଡେୟଙ୍କ ତପସ୍ୟା ଓ ନାରାୟଣ ସ୍ତୁତି । ୯) ମାୟା ନିର୍ମିତ ମହାପ୍ରଳୟରେ ମାର୍କଣ୍ଡେୟଙ୍କର ବାଳମୁକୁନ୍ଦରୂପୀ ଭଗବାନ୍ ଦର୍ଶନ । ୧୦)ମାର୍କଣ୍ଡେୟଙ୍କୁ ଶିବଙ୍କ ବରଦାନ । ୧୧) ଚନ୍ଦ୍ରସୂର୍ଯ୍ୟ ଜ୍ୟୋତିର୍ମଣ୍ଡଳ ବର୍ଣ୍ଣନ ଓ ଦ୍ୱାଦଶ ଆଦିତ୍ୟ (ବୈଶାଖଠାରୁ ଚୈତ୍ର ପର୍ଯ୍ୟନ୍ତ ଯଥାକ୍ରମେ ଧାତା, ଅର୍ଯ୍ୟମା, ମିତ୍ର, ବରୁଣ, ଇନ୍ଦ୍ର, ବିବସ୍ୱାନ, ପୂଷା, ପର୍ଜନ୍ୟ, ଅଂଶୁ, ଭଗ, ତ୍ୱାଷ୍ଟା ଓ ବିଷ୍ଣୁ) ପରିଚୟ, ୧୨) ସୂତ ଶୌନକ ସମ୍ବାଦରେ ଦ୍ୱାଦଶ ସ୍କନ୍ଧ ପର୍ଯ୍ୟନ୍ତ ଗ୍ରନ୍ଥ ଅନୁକ୍ରମଣିକା ବର୍ଣ୍ଣନ ଏବଂ ୧୩) ପୁରାଣମାନଙ୍କର ସଂଖ୍ୟା ନିର୍ଣ୍ଣୟ ବିଷୟ ବର୍ଣ୍ଣିତ ହୋଇଅଛି ।

ତ୍ରୟୋଦଶ ସ୍କନ୍ଧ—

ବିପ୍ର ଦ୍ୱାରକା ଦାସଙ୍କ ରଚିତ ଭାଗବତର ତ୍ରୟୋଦଶ ସ୍କନ୍ଧରେ ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦ ମଧ୍ୟରେ ପୂର୍ବ ବର୍ଣ୍ଣିତ କେତେକ ବିଷୟ ପୁନଶ୍ଚ ବିସ୍ତୃତଭାବେ ଆଲୋଚିତ ହୋଇଅଛି । ଏହି ସ୍କନ୍ଧଟି ତେରଟି ଅଧ୍ୟାୟରେ ବିଭକ୍ତ । ସ୍କନ୍ଧଟିର ପ୍ରତିପାଦ୍ୟ ବିଷୟ ନିମ୍ନମତେ ଉଲ୍ଲିଖିତ ହେଲା ।

୧) ଶ୍ରୀକୃଷ୍ଣ ଉଦ୍ଧବ ଦ୍ୱାରକା ବିବରଣ, ୨) ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦରେ ପରମତତ୍ତ୍ୱ ଜ୍ଞାନର ଆଲୋଚନା, ୩) ବୈକୁଣ୍ଠ ବର୍ଣ୍ଣନା ୪) ଭକ୍ତ ଲକ୍ଷଣ, ୫) ଏକାକ୍ଷର ଜ୍ଞାନ କଥନ, ୬) ତତ୍ତ୍ୱଜ୍ଞାନ ଉପଦେଶ, ୭) ସଗୁଣ ବ୍ରହ୍ମ ଓ ନିର୍ଗୁଣ ବ୍ରହ୍ମ ପରିଚୟ, ୮) ମାତୃଗର୍ଭ ବିବରଣ, ୯) କାୟା ସୃଜନ, ୧୦) ବିଭୂତି ଯୋଗ କଥନ, ୧୧) ଅନ୍ୟଘଟ ପ୍ରବେଶ, ୧୨) ତତ୍ତ୍ୱକର୍ମ କଥନ ଓ ୧୩) ଶ୍ରୀକୃଷ୍ଣଙ୍କ ସହିତ ଉଦ୍ଧବର ବୈକୁଣ୍ଠ ଗମନ ବିଷୟମାନ ବର୍ଣ୍ଣନା କରାଯାଇଅଛି । ମହାଦେବ ଦାସ ଦ୍ୱାଦଶ ସ୍କନ୍ଧ ପର୍ଯ୍ୟନ୍ତ ଭାଗବତର ପ୍ରତିପାଦ୍ୟ ବିଷୟ ନିମ୍ନମତେ ସଂକ୍ଷେପରେ ବର୍ଣ୍ଣନା କରିଛନ୍ତି ।

ଏମନ୍ତେ କେତେହେଁ ପ୍ରଳୟ । କେ ତାହା କରିବ ନର୍ଣ୍ଣୟ ॥
ପ୍ରଥମ ସ୍କନ୍ଧେ ଅଛୁ ରହ । ଦ୍ୱିତୀୟ ସ୍କନ୍ଧେ ହୁଏ ଏହ ॥
ତୃତୀୟ ସ୍କନ୍ଧେ ଯା ବଖାଣି । ଚତୁର୍ଥ ସ୍କନ୍ଧେ ପରମାଣି ॥
ପଞ୍ଚମସ୍କନ୍ଧେ ଯାହା ଚୋତେ । କହିଲୁ ଷଷ୍ଠ ସ୍କନ୍ଧ ମତେ ॥
ସପ୍ତମ ସ୍କନ୍ଧେ ଜ୍ଞାନ କହ । ଅଷ୍ଟମ ସ୍କନ୍ଧେ ଭୃଙ୍ଗ ଭୃହ ॥
ନବମ ସ୍କନ୍ଧେ ଦେଲ ଦୀକ୍ଷା । ଦଶମ ସ୍କନ୍ଧେ ପ୍ରେମ ଶିକ୍ଷା ॥
ଏକାଦଶରେ ଜ୍ଞାନ କହ । ଦ୍ୱାଦଶ ସ୍କନ୍ଧେ ଜ୍ଞାନ କାଢ଼ି ॥

( ପୃ-୫ )

ମହାତ୍ମା ଜଗନ୍ନାଥ ଦାସ ଭାଗବତରେ ଏକାଦଶ ସ୍କନ୍ଧ ପର୍ଯ୍ୟନ୍ତ ରଚନା ଶେଷ କରିଥିଲେ ଏବଂ ପରବର୍ତ୍ତୀ ସ୍କନ୍ଧ ଦୁଇଟି ଯଥାକ୍ରମେ ମହାଦେବ ଦାସ ଓ ଦ୍ୱାରକା ଦାସଙ୍କ ଦ୍ୱାରା ପ୍ରଣିତ ହୋଇଥିବା ଉପର୍ଯ୍ୟୁକ୍ତ ଉକ୍ତିଗୁଡ଼ିକରୁ ସ୍ପଷ୍ଟ ପ୍ରମାଣିତ ହୁଏ । ତେଣୁ ବିଷୟବସ୍ତୁର ପୂର୍ଣ୍ଣାଙ୍ଗ ରୂପ ଉପସ୍ଥାପନ ନମିତ୍ତ ଏଠାରେ ଭାଗବତରେ ତ୍ରୟୋଦଶ ସ୍କନ୍ଧ ପର୍ଯ୍ୟନ୍ତ ବିବରଣ ସଂକ୍ଷେପରେ ଦିଆଯାଇଛି । କାରଣ, ଓଡ଼ିଶାରେ ଅଦ୍ୟାବଧି ତ୍ରୟୋଦଶ ସ୍କନ୍ଧ ପର୍ଯ୍ୟନ୍ତ ଭାଗବତର ପଠନ ପ୍ରଚଳିତ ଅଛି ।

(୪)ଭାଗବତର ପ୍ରଭାବ —

ଭାରତୀୟ ସଂସ୍କୃତ ସାହିତ୍ୟର ଇତିହାସରେ ରାମାୟଣ, ମହାଭାରତ ଓ ଶ୍ରୀମଦ୍‌ଭାଗବତର ପ୍ରଭାବ ଅତୁଳନୀୟ । ପରବର୍ତ୍ତୀ ସଂସ୍କୃତ କବିଗଣ ଏହି ଗ୍ରନ୍ଥ-ଗୁଡ଼ିକର ପ୍ରଭାବରେ ପ୍ରଭାବିତ ହୋଇ ଅନେକ କାବ୍ୟ କବିତା ରଚନା କରିଛନ୍ତି । ଭାରତର ମହାକବିମାନଙ୍କ ଆଦର୍ଶରେ ଉଦ୍‌ବୁଦ୍ଧ ହୋଇ ଓଡ଼ିଶାର କବି କବିଚନ୍ଦ୍ର ରାୟ ଦିବାକର ମିଶ୍ର ମହାଭାରତର ମୂଳବିଷୟକୁ ନେଇ 'ଭାରତାମୃତ ମହାକାବ୍ୟ' କବୀନ୍ଦ୍ର ମାର୍କଣ୍ଡେୟ ମିଶ୍ର ସମଗ୍ର ରାମାୟଣ ଅବଲମ୍ବନରେ 'ଦଶଗ୍ରୀବ ବଧ ମହା-କାବ୍ୟ' ଓ କବିଡିଣ୍ଡିମ ଜୀବଦେବ ଆଚାର୍ଯ୍ୟ ଶ୍ରୀମଦ୍‌ଭାଗବତର ଦଶମ ସ୍କନ୍ଧକୁ ଆଧାର କରି 'ଭକ୍ତିଭାଗବତ ମହାକାବ୍ୟ' ରଚନା କରି ଚିରସ୍ମରଣୀୟ ହୋଇଛନ୍ତି । ସଂସ୍କୃତ ସାହିତ୍ୟର ପ୍ରବାହମାନ ଧାରା କେବଳ ସଂସ୍କୃତ କବିମାନଙ୍କୁ ନୁହେଁ, ଭାରତର ସମସ୍ତ ଅଞ୍ଚଳର ଭାଷାକବି ଓ କାବ୍ୟଜଗତକୁ ମଧ୍ୟ ବହୁଧା ପ୍ରଭାବିତ କରିଥିଲା । ତାହାରି ଫଳରେ ସମୟ ଓ ସମାଜର ଆବଶ୍ୟକତାକୁ ଭିତ୍ତି କରି ଓଡ଼ିଶାରେ ସାରଳା ମହାଭାରତ, ଜଗମୋହନ ରାମାୟଣ ଓ ଭାଗବତ ଓଡ଼ିଆ ଭାଷାରେ ରଚିତ ହେଲା । ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଉକ୍ତ ଗ୍ରନ୍ଥତ୍ରୟ ବିଗତ ପାଞ୍ଚ-ଶତାବ୍ଦୀ ଧରି ଓଡ଼ିଆ କବିମାନଙ୍କୁ ପ୍ରଭାବିତ ଓ ପ୍ରଗୋଦିତ କରିଆସୁଛି ।

ଓଡ଼ିଶାରେ ଜଗନ୍ନାଥ ଦାସଙ୍କ 'ଭାଗବତ' ଉତ୍ତରରେ 'ରାମଚରିତ ମାନସ' ଓ ଦକ୍ଷିଣରେ 'କମ୍ବନ ରାମାୟଣ' ପରି ଆଦୃତ ଓ ପୂଜିତ ହେଉଛି । ଓଡ଼ିଆ ଜନସାଧାରଣଙ୍କ ଭାଷା ଓ ଗଣସାହିତ୍ୟର ଯଥାର୍ଥ ପ୍ରତିନିଧି ରୂପେ ଏହା ଶୀର୍ଷସ୍ଥାନ ଅଧିକାର କରିଛି । ଓଡ଼ିଆ ଭାଗବତ ରଚିତ ହେବା ପରଠାରୁ ଏ ମଧ୍ୟରେ ଦୀର୍ଘକାଳ ଅତିବାହିତ ହୋଇଥିଲେ ମଧ୍ୟ ଓଡ଼ିଆ ପ୍ରାଣ ଓ ମନକୁ ଏହା ଅଦ୍ୟାବଧି ନିୟମିତ କରୁଛି । ସର୍ବସାଧାରଣଙ୍କୁ ସାକ୍ଷର ଓ ଶିକ୍ଷିତ କରିବାରେ ଏହାର ଅବଦାନ ଅବିସ୍ମରଣୀୟ । ମହାତ୍ମା ଜଗନ୍ନାଥଙ୍କ ସାଧନା ପ୍ରସୂତ 'ଭାଗବତ'ହିଁ ଓଡ଼ିଆ ଗଣଜୀବନର ଜ୍ଞାନକଳ୍ପତରୁ, ଜାତୀୟତାର ଉତ୍ସ ଓ ଏକତାର ମୂଳସୂତ୍ର ରୂପେ ବିବେଚିତ । ଓଡ଼ିଆଜାତିର ଜ୍ଞାନ, ଦର୍ଶନ, ଧର୍ମ, ଶିକ୍ଷା ପ୍ରଭୃତିର ଆଧାର ହେଉଛି ଜଗନ୍ନାଥ ଦାସଙ୍କ ଭାଗବତ । ଓଡ଼ିଆଜାତି ଯେଉଁ ତିନୋଟି ଅମୂଲ୍ୟ ରତ୍ନକୁ ନେଇ ଗର୍ବ କରେ ଓ ବିଶ୍ୱଦରବାରରେ ନିଜକୁ ଓଡ଼ିଆ ବୋଲି ପ୍ରମାଣ କରେ ସେମାନେ ହେଲେ ପ୍ରଭୁ ଶ୍ରୀଜଗନ୍ନାଥ, କବିରାଜ ଜୟଦେବଙ୍କ ପ୍ରଣୀତ ଶ୍ରୀଗୀତଗୋବିନ୍ଦ ଓ ବିପ୍ର ଜଗନ୍ନାଥ ଦାସଙ୍କ ଭାଗବତ । ଓଡ଼ିଶାର ଘରେ ଘରେ ଏମାନେ ପୂଜିତ ଓ ପ୍ରତ୍ୟେକ ଓଡ଼ିଆ ହୃଦୟରେ ବିରାଜିତ । ଯେଉଁ ତଥାକଥିତ ଶିକ୍ଷାଭିମାନୀ ଓଡ଼ିଆ ଏହି ସତ୍ୟକୁ ଅସ୍ୱୀକାର କରେ, ନିଜକୁ ଓଡ଼ିଆ ବୋଲି କହି ଗର୍ବ କରିବାର ଅଧିକାର ତା'ର ନାହିଁ ।

ଶ୍ରୀଧର ସ୍ୱାମୀଙ୍କ ପଦାଙ୍କ ଅନୁସରଣ କରି ଜଗନ୍ନାଥ ଦାସ ଭାଗବତର ମଙ୍ଗଳାଚରଣରେ ଶ୍ରୀନୃସିଂହ-ଜଗନ୍ନାଥଙ୍କୁ ବନ୍ଦନା କରିଥିବାର ଦେଖାଯାଏ—

ନମଇ ନୃସିଂହ ଚରଣ । ଅନାଦି ପରମ କାରଣ ॥
ଯାହାର ଆଦି ମଧ୍ୟ ଅନ୍ତ । ବିସ୍ତର ନ ଘଟେ ଜଗତ ॥
ଇନ୍ଦ୍ରିୟ ଅର୍ଥ ନ ଜାଣନ୍ତି । ସତ୍ୟ ଯେ ନିତ୍ୟ ପ୍ରକାଶନ୍ତି ॥
ଆନନ୍ଦ ମନେ ବେଦ ସାର । ବ୍ରହ୍ମାରେ କଲା ଯେ ବିସ୍ତାର ॥
ଯାର ସ୍ୱରୂପ ହୃଦେ ଚିନ୍ତି । ବେଦପୁରୁଷ ନ ଜାଣନ୍ତି ॥
ସତ୍ୟ ପରମାନନ୍ଦ ହରି । ଯାହା ଭାବିଲେ ଭବୁ ତରି ॥
ତାର ଚରଣେ ନିତ୍ୟ ଧ୍ୟାନ । କରି ତରନ୍ତି ସୁଜ୍ଞଜନ ॥
ସେ ହରି ପାଦହୃଦେ ଧରି । ପ୍ରବନ୍ଧେ ଗୀତ ନାଦ କରି ॥
ଅଶେଷ ଜଗତର ହିତେ । ବନ୍ଦଇ ଦାସ ଜଗନ୍ନାଥେ ॥ ୧—୧ ।

(ପ୍ରଥମ ସ୍କନ୍ଧ, ପୃ-୧,୨)

ଶ୍ରୀପୁରୁଷୋତ୍ତମ କ୍ଷେତ୍ରର ଅଧିଦେବ ନୃସିଂହ ପରବର୍ତ୍ତୀକାଳରେ ଶ୍ରୀଜଗନ୍ନାଥ ନାମରେ ବିଖ୍ୟାତ ହୋଇଥିବା ସ୍କନ୍ଦପୁରାଣରୁ ଜଣାଯାଏ । ତେଣୁ

ଶ୍ରୀନୃସିଂହ ହିଁ ଶ୍ରୀଜଗନ୍ନାଥ । ସେଥିପାଇଁ ଗ୍ରନ୍ଥ ଆରମ୍ଭରେ ଜଗନ୍ନାଥ ଦାସ ନୃସିଂହଙ୍କୁ ବନ୍ଦନା କରିଛନ୍ତି । ଭାଗବତର ପ୍ରତି ସ୍କନ୍ଧର ଆରମ୍ଭରେ ମଙ୍ଗଳାଚରଣ ଓ ପ୍ରତି ଅଧ୍ୟାୟ ଶେଷରେ କବି ଭଣିତ ରହିଛି । କେତେକ କ୍ଷେତ୍ରରେ ସ୍କନ୍ଧର ବିଷୟବସ୍ତୁ ସମ୍ବନ୍ଧରେ ସୂଚନା ଆରମ୍ଭରେ ଦିଆଯାଇଥିବାର ଦେଖାଯାଏ—

ନମଇ ନୃସିଂହ ଚରଣ । ଅନାଦି ପରମ କାରଣ ॥
ଲୀଳା ବିଧୃତ କଳେବର । ଦେବ ମାନବେ ଅଗୋଚର ॥
ମାୟା ସଂସାର ଯାର ଲୀଳା । ଯା ନାମ ଭବଜଳେ ଭେଳା ॥
କରୁଣା କଟାକ୍ଷ ପ୍ରକାଶେ । ଶ୍ରୀଭାଗବତ ଏକାଦଶେ ॥
ଏ ଭାଗବତ ଧର୍ମ କଥା । ହେଲେ ଖଣ୍ଡଇ ଭବବ୍ୟଥା ॥
ନାରଦ ବସୁଦେବ ବାଣୀ । ନିମିରାଜନ ନବମୁନି ॥
ଉଦ୍ଧବ ନାରାୟଣ ବାଣୀ । ଯାହା କହିଲେ ଚକ୍ରପାଣି ॥
ସେ କଥା ପ୍ରାକୃତେ ପ୍ରକାଶ । ଆରମ୍ଭେ ଜଗନ୍ନାଥ ଦାସ ॥ ୧୧-୧ ॥

(ଏକାଦଶ ସ୍କନ୍ଧ, ପୃ-୨)

ଗୋସ୍ୱାମୀ ଜଗନ୍ନାଥ ଦାସ ଥିଲେ ଶ୍ରୀଜଗନ୍ନାଥଙ୍କ ପରମ ଭକ୍ତ । ସେଥିପାଇଁ ଭାଗବତରେ ବିଭିନ୍ନ ସ୍ଥଳରେ ସେ ତାଙ୍କୁ ପରଂବ୍ରହ୍ମ, ନାରାୟଣ, ଶ୍ରୀହରି ଓ ପୁରୁଷୋତ୍ତମ କୃଷ୍ଣ ରୂପେ ପ୍ରତିପାଦନ କରିଛନ୍ତି ।

ଜଗନ୍ନାଥ ଦାସ ଶ୍ରୀହରିଙ୍କ ଦ୍ୱାରା ସ୍ୱପ୍ନାଦିଷ୍ଟ ହୋଇ ଭାଗବତ ରଚନା କରିଥିବା କଥା ଗ୍ରନ୍ଥର ବିଭିନ୍ନ ସ୍ଥଳରେ ଲିପିବଦ୍ଧ ହୋଇଛି । ନିଜର କବିସୁଲଭ ନମ୍ରତା ଜଣାଇ ସେ ଜଗତର କଲ୍ୟାଣ ପାଇଁ ପ୍ରାକୃତ ବନ୍ଧରେ ଅର୍ଥାତ୍ ଓଡ଼ିଆ ଭାଷାରେ ଭାଗବତ ରଚନା କରିଛନ୍ତି ବୋଲି କହିଛନ୍ତି—

ବ୍ରାହ୍ମଣ କୁଳେ ଜାତ ହୋଇ । ବିଷ୍ଣୁ ବାସନା ମୋର ନାହିଁ ॥
ସପନେ କହିଲେ ମୁରାରି । ପୁରାଣେ ଗୀତ ନାଦ କରି ॥

× × ×

ସେ ହରି ଆଜ୍ଞା ଶିରେ ବହି । ଗୀତେ ପାରିଲି ଯାହା କହି ॥
ପ୍ରାକୃତ ଭାଷା ଏ ପ୍ରବନ୍ଧ । ଫିଟେ ଅନ୍ଧାର ଭବବନ୍ଧ ॥

( ଦଶମ ସ୍କନ୍ଧ, ପୃ-୬୪୮)

ନିର୍ମଳ ମୁନିଙ୍କର ମତ । ହରିଚରିତ ଭାଗବତ ॥
କହିବି ଅଛି ଯେତେ ଗୁଣ । ସୁଜନେ ସାବଧାନେ ଶୁଣ ॥

(ପ୍ରଥମ ସ୍କନ୍ଧ, ପୃ-୨)

ସଂସାର ହିତେ ବିଷ୍ଣୁ ବାଣୀ । ଗୀତେ ମୁଁ ବଖାଣିଲି ଆଣି ॥
ଏଣେ ନିର୍ମଳ ଚିତ୍ତ କରି । କୃଷ୍ଣ ଚରଣେ ମୁଁ କିଙ୍କର ॥

(ଦଶମ ସ୍କନ୍ଧ)

ଜ୍ଞାନାମୃଧି ସ୍ୱରୂପ ଭାଗବତ ରଚନାରେ ନିଜର ଅସାମର୍ଥ୍ୟ ପ୍ରକାଶ କରିବାକୁ ଯାଇ ଭାଗବତକାର ଜଗନ୍ନାଥ ଦାସ କହିଛନ୍ତି—

ଅଳପ ଜ୍ଞାନ ବୁଦ୍ଧି ମୋର । ମୁଁ ଯେସୁ ଅଜ୍ଞାନ ପାମର ॥
ନଜାଣି ସମୁଦ୍ରର ଗତି । ହସ୍ତେ ମନ୍ଥିଲି ମୂଢମତି ॥
ଯେବଣ ସୁଜନ ପସ୍ୱର । ଏ ଦୋଷ କ୍ଷମା କର ମୋର ॥

(ଭାଗ—୧୧-୯, ପୃ-୭୯)

ଜଗନ୍ନାଥ ଦାସଙ୍କ ଭାଗବତ ଏକ ସର୍ବୋତ୍ତମ ଧର୍ମଗ୍ରନ୍ଥ ରୂପେ ପଠିତ ଓ ପୂଜିତ ହେବା ସଙ୍ଗେ ସଙ୍ଗେ ସମଗ୍ର ଓଡ଼ିଆ ଜାତିକୁ ଭାଗବତ ଭାବନାରେ ବିଭୋର କରିବାରେ ଯେପରି ସଫଳ ହୋଇଛି ତା'ର ପଟାନ୍ତର ନାହିଁ । ଓଡ଼ିଆ ଭାଗବତ କେବଳ ଧାର୍ମିକ ଓ ଭକ୍ତସମାଜକୁ ନୁହେଁ, ସମସ୍ତ ଓଡ଼ିଆ ସାହିତ୍ୟକୁ ମଧ୍ୟ ଦୀର୍ଘକାଳ ଧରି ଗଭୀରଭାବେ ପ୍ରଭାବିତ କରିଆସିଛି । ଭାଗବତ ଏପରି ପ୍ରଭାବଶାଳୀ ହେବାର ବହୁ କାରଣ ମଧ୍ୟରୁ ମୁଖ୍ୟ କାରଣ ଏହାର ଭାଷା ଓ ସାହିତ୍ୟ । ଭାଗବତକୁ ଓଡ଼ିଶାର ଜାତୀୟ ଭାଷା ଓ ସାହିତ୍ୟର ଯଥାର୍ଥ ପ୍ରତିନିଧି ରୂପେ ଗ୍ରହଣ କରାଯାଇ ପାରେ । ଭାଗବତର ଭାଷା କିପରି ସରଳ, କୋମଳ, ମଧୁର ଓ ହୃଦୟସ୍ପର୍ଶୀ ତାହା କାହାରିକୁ ଅବିଦିତ ନାହିଁ । ଗୋସ୍ୱାମୀ ଜଗନ୍ନାଥ ଦାସ ପୂର୍ବସୂରିଙ୍କ ପଦାଙ୍କ ଅନୁସରଣ କରିଥିଲେ ମଧ୍ୟ ନିଜର ଭାଷା, ଭାବ ଓ ସାହିତ୍ୟକୁ ସାର୍ବଜନୀନ କରିବାରେ ଯେପରି ସାଫଲ୍ୟ ମଣ୍ଡିତ ହୋଇଛନ୍ତି ତା'ର ଉଦାହରଣ ବିରଳ ।

ଓଡ଼ିଆ ଭାଗବତରେ ସରଳ ଭକ୍ତିରସ ପଦାବଳୀ ତୁଳନାରେ ଗ୍ରାମ୍ୟ ଓ ଆଞ୍ଚଳିକ ପଦାବଳୀ କ୍ୱଚିତ୍ ବ୍ୟବହୃତ ହୋଇଥିବାର ଦେଖାଯାଏ । ଓଡ଼ିଆ ସାହିତ୍ୟର ଇତିହାସରେ ଜଗନ୍ନାଥ ଦାସଙ୍କ ଭାଗବତର ପଦଯୋଜନା ଶୈଳୀ ଯେଉଁ ନୂତନ ଦିଗର ସୂଚନା ଦେଇଛି ତା'ର ବଳିଷ୍ଠ ପ୍ରଭାବ ପରବର୍ତ୍ତୀକାଳର କେବଳ ପୁରାଣକାର ଓ କବିଙ୍କ ରଚନାବଳୀରେ ନୁହେଁ ଆଧୁନିକ ଓଡ଼ିଆ ସାହିତ୍ୟରେ ବି ଅନୁଭୂତ ହେଉଛି । କବିବର ରାଧାନାଥଙ୍କ ଠାରୁ ଆରମ୍ଭ କରି ଫକୀରମୋହନ, ନନ୍ଦକିଶୋର, ଗଙ୍ଗାଧର, ଗୋପବନ୍ଧୁ, ଗୋଦାବରୀଶ ପ୍ରଭୃତିଙ୍କ ରଚନାବଳୀରେ ଏହି ପ୍ରଭାବର ସ୍ପଷ୍ଟ ସ୍ୱାକ୍ଷର ଅଙ୍କିତ ହୋଇଛି । କିନ୍ତୁ ରୀତି ଯୁଗରେ ବହୁ ଉପାଦେୟ କାବ୍ୟ କବିତା ରଚିତ ହୋଇଥିଲେ ମଧ୍ୟ ସେଗୁଡ଼ିକ ଭାଗବତ ପରି ପାଠକ ସମାଜ ସୃଷ୍ଟି କରିପାରି ନାହିଁ ।

ଓଡ଼ିଆ ଭାଗବତ ସର୍ବାଦୃତ ଓ ସର୍ବଜନପ୍ରିୟ ହେବାରେ ତା'ର ଭାଷା, ରଚନାକୌଶଳ, ଦାର୍ଶନିକ ବିସ୍ତାର, ଲୋକୋକ୍ତି ଭାଗବତ ଭାବନା ଅଭିନବବୃତ୍ତ ପ୍ରଭୃତି ମୁଖ୍ୟ ସ୍ଥାନ ଲାଭ କରିପାରେ । ତନ୍ମଧ୍ୟରେ ଭାଷା ଓ ବୃତ୍ତ ପ୍ରଧାନ ସ୍ଥାନୀୟ । ଓଡ଼ିଆ ସାହିତ୍ୟରେ ଏହାର ଗଭୀର ପ୍ରଭାବ ପଡ଼ିଥିବାର ଦେଖାଯାଏ । ରାଗ ଲକ୍ଷଣ ଦୃଷ୍ଟିରୁ ଗୁର୍ଜରୀ ରାଗରେ ନାମିତ ନବାକ୍ଷର ବିଶିଷ୍ଟ ଛନ୍ଦରେ ଭାଗବତ ରଚିତ ହୋଇଛି । ତେଣୁ ଓଡ଼ିଆ ସାହିତ୍ୟରେ ଏହା ଭାଗବତବୃତ୍ତ ନାମରେ ଅଭିହିତ । ଗୋସ୍ୱାମୀ ଜଗନ୍ନାଥ ଦାସଙ୍କ ସମକାଳୀନ ଓ ତାଙ୍କର ଦୀକ୍ଷାଗୁରୁ ବଳରାମ ଦାସଙ୍କ ଗୀତାଗ୍ରନ୍ଥ ଗୁଡ଼ିକରେ ଏହି ଭାଗବତବୃତ୍ତର ପ୍ରଥମ ପ୍ରୟୋଗ ଦେଖିବାକୁ ମିଳେ । ପରବର୍ତ୍ତୀକାଳରେ ଶହଶହ କବି ଏହି ବୃତ୍ତରେ କାବ୍ୟ କବିତା ରଚନା କରିଛନ୍ତି । କେବଳ ବୃତ୍ତ ନୁହେଁ ଓଡ଼ିଆ ଭାଗବତର ବିଷୟବସ୍ତୁ ମଧ୍ୟ କୃଷ୍ଣଦାସ, ମହାଦେବ ଦାସ, ଦୀନବନ୍ଧୁ ଦାସ, ଭକ୍ତଚରଣ ଦାସ, ଭୂପତି ପଣ୍ଡିତ, ଦନାଇଦାସ, ରାଧାନାଥ, ଗୋପବନ୍ଧୁ ଦାସ ପ୍ରଭୃତିଙ୍କ ରଚନାବଳୀରେ ସ୍ଥାନ ପାଇଥିବାର ଦେଖାଯାଏ ।

(୫) ଭାଗବତର ପ୍ରତିଷ୍ଠା—

ଓଡ଼ିଆ ଭାଗବତ ଧର୍ମଗ୍ରନ୍ଥ ରୂପେ ପ୍ରତିଷ୍ଠିତ ବୋଲି ପୂର୍ବରୁ ଉଲ୍ଲେଖ କରାଯାଇଛି । ସେଥିପାଇଁ ଏହା ଓଡ଼ିଶାର ଘରେ ଘରେ ପୂଜିତ ହେଉଛି । ଆଜିବି ଏହାର ବାଣୀ ସ୍ତ୍ରୀ-ପୁରୁଷ ନିର୍ବିଶେଷରେ ଓଡ଼ିଶାର ଜନସାଧାରଣଙ୍କ ଜିହ୍ୱାଗ୍ରରେ ବିଦ୍ୟମାନ ଥିବା ଓ ଆବଶ୍ୟକ ସ୍ଥଳେ ଉଦାହୃତ ହେଉଥିବାର ଦେଖାଯାଏ । ଭାଷା, ସାହିତ୍ୟ, ଧର୍ମ, ଦର୍ଶନ ସର୍ବୋପରି ସାଂସ୍କୃତିକ ପ୍ରଭାବ ଓ ପ୍ରତିଷ୍ଠା ବ୍ୟତୀତ ଓଡ଼ିଆ ଭାଗବତ ଆହୁରି ଏକ ଅନନ୍ୟ ସାଧାରଣ ବୈଶିଷ୍ଟ୍ୟର ସଙ୍କେତ ଦିଏ, ଯାହାର ସମକକ୍ଷ ପ୍ରତିଷ୍ଠା ଭାରତର ଅନ୍ୟାନ୍ୟ ପ୍ରାନ୍ତରେ ବିରଳ । ଓଡ଼ିଶାରେ ଶିକ୍ଷାର ପ୍ରସାର ଓ ପ୍ରଚାର ଦ୍ୱାରା ହିଁ ତତ୍କାଳୀନ ଭାରତରେ ଓଡ଼ିଶାର ସାକ୍ଷର ଓ ଶିକ୍ଷିତଙ୍କ ସଂଖ୍ୟା ସର୍ବାଧିକ ଥିଲା । ଭାରତର ଅନ୍ୟାନ୍ୟ ପ୍ରାନ୍ତରେ ଲୋକେ ଯେତେବେଳେ ପାଠାଗାର ପ୍ରତିଷ୍ଠାର କଳ୍ପନା କରି ନଥିଲେ, ସେତେବେଳେ ଓଡ଼ିଶାର ପ୍ରତ୍ୟେକ ଗ୍ରାମରେ ଭାଗବତ ଟୁଙ୍ଗି, ଭାଗବତ ଘର ବା ପାଠାଗାର ପ୍ରତିଷ୍ଠା ହୋଇପାରିଥିଲା । ଗ୍ରାମ ପାଠାଗାର ବ୍ୟତୀତ ପାରିବାରିକ ପାଠାଗାର ତଥା ରାଜା, ସମ୍ଭ୍ରାନ୍ତ ବ୍ୟକ୍ତି, ଧନୀ, ଜମିଦାର, କବି, ପଣ୍ଡିତମାନଙ୍କର ବ୍ୟକ୍ତିଗତ ପାଠାଗାର ମଧ୍ୟ ଥିଲା । ଭାଗବତ ଅଧ୍ୟୟନ, ଅଧ୍ୟାପନ, ଚର୍ଚ୍ଚା, ଆଲୋଚନା ହିଁ ଏହି ପାଠାଗାର ପ୍ରତିଷ୍ଠାର ମୂଳ କାରଣ ଥିଲା । ସେଥିପାଇଁ ଲିପିକାର ନିଯୁକ୍ତ ହେଉଥିଲେ ଓ ତାଳପତ୍ରରେ ଭାଗବତ ସହିତ ଅନ୍ୟାନ୍ୟ ଗ୍ରନ୍ଥ ମଧ୍ୟ ନକଲ କରାଯାଉଥିଲା । କିନ୍ତୁ ତନ୍ମଧ୍ୟରେ ଭାଗବତ ପୋଥିର ସଂଖ୍ୟା ଥିଲା ସର୍ବାଧିକ । ତେଣୁ ଓଡ଼ିଶାରେ ଓଡ଼ିଆ ଭାଗବତ

ପୋଥି ହଜାର ହଜାର ସଂଖ୍ୟାରେ ମିଳେ । ଭାରତର ଅନ୍ୟ କୌଣସି ଅଞ୍ଚଳରେ ଅନ୍ୟ କୌଣସି ପ୍ରାଚୀନ ଗ୍ରନ୍ଥର ପାଣ୍ଡୁଲିପି ଓଡ଼ିଆ ଭାଗବତ ପରି ହଜାର ହଜାର ସଂଖ୍ୟାରେ ମିଳୁଥିବାର ଦୃଷ୍ଟାନ୍ତ ନାହିଁ । ଏଥିରୁ ଓଡ଼ିଆ ଭାଗବତର ପ୍ରଭାବ ଓ ପ୍ରତିଷ୍ଠା କିପରି ଗଭୀର ଓ ବିସ୍ତୃତ ଥିଲା, ତାହା ସହଜରେ ଅନୁମେୟ ।

ଓଡ଼ିଶାରେ ନିରକ୍ଷରତା ଦୂରୀକରଣ, ଶିକ୍ଷାର ପ୍ରସାର ବିଶେଷ କରି ନାରୀ ଶିକ୍ଷାର ପ୍ରସାର କ୍ଷେତ୍ରରେ ଭାଗବତ ଯେପରି ଉଲ୍ଲେଖନୀୟ ଭୂମିକା ନେଇଥିଲା ଭାରତରେ ତାର ଦୃଷ୍ଟାନ୍ତ ବିରଳ । ସାଧାରଣ ପରିବାରଠାରୁ ଆରମ୍ଭ କରି ଉଚ୍ଚ-ବର୍ଗର ପୁଅ କନ୍ୟାମାନେ ବିବାହ ପୂର୍ବରୁ ସାକ୍ଷର ଓ ଶିକ୍ଷିତ ହେବା ସଙ୍ଗେ ସଙ୍ଗେ ଭାଗବତ ମାଧ୍ୟମରେ ହିଁ ସମାଜ, ଧର୍ମ, ଆଚାର, ବ୍ୟବହାର ବିଷୟରେ ଯଥାର୍ଥ ଶିକ୍ଷାଲାଭ କରୁଥିଲେ ଏବଂ ବିବାହ ପରେ ଗାର୍ହସ୍ଥ୍ୟ ଜୀବନରେ ତାର ଉପଯୋଗ କରୁଥିଲେ । ତେଣୁ ଭାଗବତ ଦ୍ୱାରା ଶିକ୍ଷାକ୍ଷେତ୍ରରେ ଯେଉଁ ବିପ୍ଳବ ଓ ଜନ-ସଚେତନତା ସୃଷ୍ଟି ହୋଇଥିଲା, ତାହା ଆଜି କୋଟି କୋଟି ଟଙ୍କା ବ୍ୟୟରେ ପ୍ରତିଷ୍ଠିତ ଶିକ୍ଷାବିଭାଗ, ବିଶ୍ୱବିଦ୍ୟାଳୟ, ମହାବିଦ୍ୟାଳୟ ଓ ଅନ୍ୟାନ୍ୟ ବିଦ୍ୟାଳୟ ଦ୍ୱାରା ସମ୍ଭବ ହୋଇପାରି ନାହିଁ । ଭାଗବତ ଶିକ୍ଷାପାଇଁ ପ୍ରତ୍ୟେକ ଗ୍ରାମରେ ଶିକ୍ଷା-ନୁଷ୍ଠାନ ବା ଗ୍ରାମଚଟଶାଳୀ ପ୍ରତିଷ୍ଠିତ ହୋଇଥିଲା, ସେଥିରେ ଭାଗବତ, ସାହିତ୍ୟ କାବ୍ୟ, ବ୍ୟାକରଣ, ଇତିହାସ, ଗଣିତ, ଶିଳ୍ପଶାସ୍ତ୍ର ଶିକ୍ଷା ଦିଆଯାଉଥିଲା । ଛାତ୍ର-ଛାତ୍ରୀମାନେ କୌଳିକ ବୃତ୍ତିରେ ତାଲିମ୍ ପାଉଥିଲେ । କିନ୍ତୁ ଆଧୁନିକ ଶିକ୍ଷା ପ୍ରଚଳନ ଦ୍ୱାରା ଭାଗବତ ସଂସ୍କୃତି ଓ ଭାଗବତ ସଂହତି ନଷ୍ଟହେବା ସଙ୍ଗେ ସଙ୍ଗେ ଲକ୍ଷ୍ୟହୀନ ଶିକ୍ଷାର ଭୟାବହ ପରିଣତି କିପରି ଜଟିଳତର ହେଉଛି, ତାହା ପ୍ରତ୍ୟେକ ସଚେତନ ନାଗରିକ ଅନୁଭବ କରୁଥିବାର ମନେ ହୁଏ ।

ଭାଗବତ ଗ୍ରନ୍ଥ ଯୁଗ ଯୁଗ ଧରି କେବଳ ଯେ ଓଡ଼ିଆ ଜାତିର ଜୀବନଧାରାକୁ ପଦେ ପଦେ ପ୍ରଭାବିତ କରିଆସିଛି ତାହା ନୁହେଁ ଏହା ଦ୍ୱାରା ପ୍ରତିବେଶୀ ଅଞ୍ଚଳର ଭକ୍ତକବି ପଣ୍ଡିତମାନେ ମଧ୍ୟ ପ୍ରଭାବିତ ହୋଇଛନ୍ତି । ବଙ୍ଗଳା ଭାଷାର ପ୍ରଥମ ଭାଗବତକାର ସନାତନ ବିଦ୍ୟାବାଗୀଶ ସ୍ୱଅନୁଦିତ ଭାଗବତର ଦଶମ ସ୍କନ୍ଧରେ ଓଡ଼ିଆ ଭାଗବତର ଲୋକୋତ୍ତର ଗୌରବର ପ୍ରଶଂସାଗାନ କରିବାକୁ ଯାଇ ଲେଖିଛନ୍ତି—

ଶୁନ ଶୁନ ଶ୍ରୋତାଗନ କରି ନିବେଦନ ।
ପ୍ରଥମ ହଇତେ ଗ୍ରନ୍ଥ ଲେଖିଲୁଁ ଆପନ ॥
ଦଶମେର ଶେଷ ଷଷ୍ଠ ଭାଷା ନ ପାଇଲ ।
ଅନେକତ ପାଶି ଗ୍ରାମେ ଗ୍ରାମେ ବେଡ଼ାଇଲ ॥

ଏ ହେତୁ ଉତ୍କଳ ଭାଷା କରିଲ ଲିଖନ ।
ଜଗନ୍ନାଥ ଦାସ କୃତ ଅପୂର୍ବ ବର୍ଣ୍ଣନ ॥
ଗ୍ରନ୍ଥ ସମାପନ ହେତୁ ଉତ୍କଣ୍ଠା ହଇଲା ।
ବଙ୍ଗଳ ଭାଷାୟ ଉତ୍କଳ ମିଶାଇଲା ॥
ଇଥେ ସାଧୁଜନ ମୋର ଦୋଷ ନା ଲଇବେ ।
ଭାଗବତ ସାଧୁବାକ୍ୟ ଆନନ୍ଦେ ଶୁନିବେ ॥
ବହୁ ଅପରାଧ କୈଲୁଁ ଜାନିଲୁଁ ।
ମଦନ ମୋହନ ଆମି ବିପଦେ ପଡ଼ିଲୁଁ ॥

(ଭାଷାବନ୍ଧ ଭାଗବତ—ବଙ୍ଗଳା, ନଂ-୧୩।୧୦)

କିନ୍ତୁ ଦୁଃଖର କଥା ମୁଦ୍ରିତ ବଙ୍ଗଳା ଭାଗବତର ସଂପ୍ରତିକ ସଂସ୍କରଣରେ ଏହି ପଂକ୍ତିଗୁଡ଼ିକ ଦେଖାଯାଏ ନାହିଁ । ଯେ ଯାହାହେଉ, ବଙ୍ଗାକ୍ଷରରେ ଲିଖିତ ଓଡ଼ିଆ ଭାଗବତ ବଙ୍ଗଳାର ମେଦିନୀପୁର ଓ ଅନ୍ୟାନ୍ୟ ଅଞ୍ଚଳରେ ଏବେବି ସଂରକ୍ଷିତ ଓ ପୂଜିତ ହେଉଛି । ହିନ୍ଦୀ ଅକ୍ଷରରେ ଲିଖିତ ଓଡ଼ିଆ ଭାଗବତର କେତେକ ପୋଥି ମିଳିଛି । ସେଥିରୁ ହିନ୍ଦୀ ଭାଷାଭାଷୀ ଅଞ୍ଚଳରେ ଓଡ଼ିଆ ଭାଗବତର ପଠନ ପାଠନ ପ୍ରଚଳିତ ଥିବାର ସୂଚନା ମିଳେ । ତଦ୍‌ବ୍ୟତୀତ ଗୁଜୁରାଟ, ମହାରାଷ୍ଟ୍ର, ଆସାମ, ମଧ୍ୟପ୍ରଦେଶ, ଅନ୍ଧ୍ରପ୍ରଦେଶ ପ୍ରଭୃତି ସହିତ ଓଡ଼ିଶାର ଘନିଷ୍ଠ ଧାର୍ମିକ ଓ ସାଂସ୍କୃତିକ ସମ୍ପର୍କ ଯୁଗ ଯୁଗ ଧରି ରହିଆସିଥିବାରୁ ସେ ସବୁ ଅଞ୍ଚଳରେ ସର୍ବେକ୍ଷଣ କଲେ ଓଡ଼ିଆ ଭାଗବତର ପ୍ରଭାବ ସମ୍ପର୍କରେ ବହୁ ଅଜ୍ଞାତ ତଥ୍ୟର ସୂଚନା ମିଳିବ ବୋଲି ଆଶା ।



# ଭାଗବତ ସୂକ୍ତି ମୁକ୍ତାବଳୀ

ଗୋସ୍ୱାମୀ ଜଗନ୍ନାଥ ଦାସ ଶ୍ରୀମଦ୍ ଭାଗବତର ମହତ୍ତ୍ୱ ପ୍ରତିପାଦନ କରିବାକୁ ଯାଇ କହିଛନ୍ତି—ଭାଗବତ ହେଉଛି ବ୍ରହ୍ମତତ୍ତ୍ୱ ସମ୍ବଳିତ ନିର୍ମଳପଦ, ରସମୟ ଗୀତ ଅମୃତ କୃଷ୍ଣଚରିତ, ହରିଚରିତ, ଜ୍ଞାନ ଅମୃତମୟରସ, ଜନହିତକର ଅମୃତ ଜ୍ଞାନମୟପଥ, ଅମୃତ ରସମୟ ସଙ୍ଗୀତ, ଗୋବିନ୍ଦ ନାମ ଜ୍ଞାନରସ, ବେଦ ସମ୍ବାଦ, ସର୍ବମଙ୍ଗଳ, ଗୀତବିନୋଦ ଓ ଅପ୍ରମାଦ ଭକ୍ତିଜନକ । ତେଣୁ ଏହାର ପଠନ, ଶ୍ରବଣ ଓ ମନନ ସମସ୍ତଙ୍କର କର୍ତ୍ତବ୍ୟ । ଜଗନ୍ନାଥ ଦାସଙ୍କ ଭାଗବତର ପଦଗୁଡ଼ିକ ଯେପରି ସୂଚନାତ୍ମକ ଓ ଔଚିତ୍ୟ ପ୍ରତିପାଦକ ସେହିପରି ବ୍ୟଞ୍ଜନାଗର୍ଭକ, ସାର୍ବକାଳିକ ଓ ସାର୍ବଜନୀନ ଭାବର ପରିପ୍ରକାଶକ । ଓଡ଼ିଶାର ଜନସାଧାରଣଙ୍କ ମୁଖରେ ଏହି ବାକ୍ୟାବଳୀ ଅଦ୍ୟାପି ପ୍ରଚଳିତ ଥିବାର ଦେଖାଯାଏ । ସେଥିରୁ କେତୋଟି ପଙ୍କ୍ତି ଏଠାରେ ଉଦ୍ଧାର କରାଯାଇ ପାରେ । ସଂସାରର ଜନସାଧାରଣ କିପରି ସୁଖ ଓ ଶାନ୍ତିରେ ନିଜର କର୍ମମୟ ଜୀବନ ଅତିବାହିତ କରିପାରିବେ ସେଥିପାଇଁ ହିତୋପଦେଶ ଛଳରେ ଜଗନ୍ନାଥ ଦାସ କହିଛନ୍ତି—

ଅମୃତ ଭାଗବତ ବାଣୀ । ଶୁଣି ସଂସାରୁ ତରେ ପ୍ରାଣୀ ॥୧୦-୯୬॥
ଅଳପ ଲୋକ ସୁଖ ଦେଲେ । ଆବୋରି ନପାରଇ ଭଲେ ॥୧୦-୨୮॥
ଅସତ୍ୟ ଭୋଗ ଯେବେ ଥିବ  ସର୍ବଥା ତାହା ନକରିବ ॥୧୧-୮॥
ଅସତ୍ୟ ସଙ୍ଗ ଯେଉଁ ନର । ଲଭଇ ପାଷାଣ୍ଡ ଶରୀର ॥୫-୧୪॥
ଅସାଧୁ ଇନ୍ଦ୍ରିଙ୍କ ବଳେ । ଗୃହସ୍ଥ ପଡ଼େ ରସାତଳେ ॥୭-୭॥
ଅସାଧୁ କର୍ମ ଯେ କରନ୍ତି । ମୋ ଅପରାଧେ ଦଣ୍ଡ ପାନ୍ତି ॥୩-୧୬॥
ଆତ୍ମୀୟ ଦେବର ମୂରତି । ପିତା ପ୍ରତ୍ୟକ୍ଷେ ପ୍ରଜାପତି ॥୭-୭॥
ଆପଦେ ବୃତ୍ତି ନିତ୍ୟକର୍ମ । ସାଧ୍ୱ ବର୍ତ୍ତିବ ଠିକ ଧର୍ମ ॥୭-୧୧॥
ଉତ୍ତମ ପୁତ୍ରଙ୍କର ଧର୍ମ । ଯେ ପିତୃଜନେ ଭକ୍ତିକର୍ମ ॥୭-୭॥
ଉଦର ଗିଳିଛି ଯାହାକୁ । ସେ କାହିଁ ରଖିବ ଅନ୍ୟକୁ ॥୧୧-୨୬॥
ଏକ ଆରେକ ଉପକାରେ । ଭଜନ୍ତି ସଂସାରେ ବେଭାରେ ॥୧୦-୩୩॥

ଏଣୁ ଦୁର୍ଜନ ସଙ୍ଗ ଦୋଷ । କରେ ସକଳ ଧର୍ମ ନାଶ ॥୧୧-୨୭॥
ଏ ଦେହ ଥିଲେ ସବଁପାଇ । ଜଳେ ଯେସନେ ଚନ୍ଦ୍ର ଛାଇ
॥ ୧୧-୧୯ ॥

କନ୍ଦଲେ ପର ଅପମାନେ । ବିବାଦ ନଚିନ୍ତିବ ମନେ ॥ ୧୧-୧୯ ॥
କର୍ମ ଆସ୍ଥାରେ ଯାମିଳିବ । ତହିଁରେ ଜୀବନ ପୋଷିବ ॥ ୭-୧୪ ॥
କାର୍ଯ୍ୟର ପ୍ରୟୋଜନ ପାଇଁ । କନିଷ୍ଠ ପୂଜା ଅନ୍ୟନୋହି ॥ ୭-୭ ॥
କୁଜନ ସଙ୍ଗତେ ଆଳାପ । କେବେ ହେଁ ନକରିବ ପାପ॥୭-୧୮॥
କେବେହେଁ ନୁହିଁ ଅଭିମାନୀ । ଆତ୍ମା ପରତେ ତତ୍ତ୍ୱଜ୍ଞାନୀ ॥୧୧-୧୧॥
କ୍ଷଣ ଭଙ୍ଗୁର ଏ ଶରୀର । ସୁଦୃଢ଼ ପର ଉପକାର ॥ ୮-୭ ॥
କ୍ଷମା ଯାହାର ହୃଦେ ରହେ । ବିଷ୍ଣୁ ବସନ୍ତି ତାର ଦେହେ॥୯-୧୫॥
ଜନ୍ତୁଙ୍କ ତୁଲେ ପୁଲିବ । ହୃଦେ କେବେହେଁ ନକରିବ ॥
॥ ୧୧-୧୯ ॥

ତାତ ଜନନୀ ଉପକାର । ଶୁଝିପାରିବ କେ କୁମର ॥୧୦-୪୮॥
ଦୁଃଖେ ସହିବ ହେତେ ଧନ । ସେ ନୁହେଁ ସୁଖେ ପ୍ରୟୋଜନ ॥୧-୪॥
ଦେହ ବହିଲେ ଜନ୍ମେ ମତ । ସଂସାର ନୁହଇ କାହାର ॥ ୧୦-୫॥
ପରମ ଶାସ୍ତ୍ର ଭାଗବତ । ଅଭ୍ୟାସ କରୁଥିବ ନିତ୍ୟ ॥ ୧୧-୪ ॥
ପ୍ରାଣୀର ହିତେ ସବଁଦେଇ । ତାହାକୁ ବୋଲି ପୁଣ୍ୟଦେହୀ
॥ ୧୦-୭୭ ॥

ବିଷୟ ସଙ୍ଗ ଦୁଃଖ ଗଣି । ଏଣେ ନୋହିବ ଚଉଗ୍ରାସି॥୧୧-୧୪॥
ମର୍ତ୍ତ୍ୟମଣ୍ଡଳେ ଦେହ ବହି । ଦେବତା ହୋଇଲେ ମରଇ
॥ ୧୧-୯ ॥

ଯାହାର ଦେହେ କ୍ଷତହୋଇ । ସେ ଜାଣେ ସୁଖ ଦୁଃଖ ଦୁଇ
॥ ୧୦-୧୧ ॥
ଯେ ଧର୍ମ ସ୍ୱଧର୍ମର ବାଧା । ସେ ଧର୍ମେ ନକରିବ ଶ୍ରଦ୍ଧା॥ ୭-୧୫॥
ରୋଗ ନଗଲେ ଦେହ ମରେ । ବ୍ୟାଧି ଚିକିତ୍ସା ଯେ ନକରେ ॥
॥ ୧୦-୮୩ ॥
ସମତା ଦୃଷ୍ଟି ସତ୍ୟଭାଷା । ନିତ୍ୟ କରିବ ଏଣେ ଆଶା ॥୧୧-୧୧॥

ସାଧୁ, ସଜ୍ଜନ, ଗୁରୁ ଓ ଗୁରୁଜନଙ୍କ ପ୍ରତି ଶ୍ରଦ୍ଧା ଓ ସମ୍ମାନର ସହିତ ସେବା ଭାବ ପ୍ରତିପୋଷଣ ଦ୍ୱାରା ଜୀବନ ସାର୍ଥକ ହୁଏ । ସାମାଜିକ ଶୃଙ୍ଖଳା ରହେ ଏବଂ ଜଗତର କଲ୍ୟାଣ ସାଧିତ ହୁଏ । ଜଗନ୍ନାଥ ଦାସଙ୍କ ଭାଗବତରେ ଏ ସମ୍ବନ୍ଧରେ

ଥିବା ଅନେକ ଉଦାହରଣୀୟ ବାକ୍ୟାବଳୀ ମଧ୍ୟରୁ କେତୋଟି ଉଦ୍ଧାର କରାଯାଇପାରେ ।

ଈଶ୍ୱର ଆଜ୍ଞା ଅନୁମତେ । ପ୍ରାଣୀ ଭଜନ୍ତି ନାନାପଥେ ॥୧୦-୧୧॥
ଏ ଭବ ଜଳଧି ତରଙ୍ଗ । ହରଇ ସାଧୁଙ୍କର ସଙ୍ଗ ॥୩-୨୫॥
ଏ ମନ କୃଷ୍ଣପାଦେ ଦେଲେ । ଏ ମାୟା ନଲଗଇ ଭଲେ ॥୧୧-୨॥
କୃଷ୍ଣଶ୍ରବଣେ ଭକ୍ତ ଯାର । ସେ ପ୍ରାଣୀ ଭବମଧ୍ୟେ ପାର ॥୧-୨॥
ଗୁରୁ ବ୍ରାହ୍ମଣ ଇଷ୍ଟମତେ । ପ୍ରତିମା ପୂଜ ଦୃଢ ଚିତ୍ତେ ॥୧୦-୯୨॥
ଗୁରୁ ସେବନେ ମହାଦୁଃଖେ । ପ୍ରାଣୀ ତରନ୍ତି ଆମ୍ଭ ସୁଖେ ॥୭-୧୫॥
ଗୋବିନ୍ଦ ନାମ ଭେଳାକରି । ହେଲେ ତରିବ ଭବବାରି ॥୧୦-୨୮॥
ନିରତେ ଚିନ୍ତ ରାମ ହରି । ଭବସାଗରୁ ହୁଅପାରି ॥୧୦-୪୨॥
ପଣ୍ଡିତ ଜନଙ୍କର ମତ । ବିଷ୍ଣୁ ଭଜନ ବ୍ରହ୍ମତତ୍ତ୍ୱ ॥୭-୬॥
ପୁରୁଷ ଅର୍ଚ୍ଚନ ମହନ । ସାଧିବ ଯୋଗର ଆସନ ॥୩-୨୭॥
ପ୍ରସନ୍ନେ ଗୁରୁ ଦେବେ ଯେତେ । ତାହା ଭୁଞ୍ଜିବ ଶୁଦ୍ଧଚିତ୍ତେ ॥୫-୧୯॥
ବିବେକୀ ଶାନ୍ତ କ୍ଷମା ଧୀର । ଏ ଗୁଣ ଗୁରୁ ସଙ୍ଗ ସାର ॥୧୦-୯୩॥
ମରଣ ଯାର ସାଧୁ ସଙ୍ଗେ । ସେ ତରେ ଏ ଭବ ତରଙ୍ଗେ ॥୧-୧୯॥
ଯେ ଅବା ପତିତ ପାମର । ସତ୍ସଙ୍ଗେ ତରେ ଭବ ଘୋର ॥୧୧-୧୩॥
ଯେ କୃଷ୍ଣ ଚରଣେ ସେବନ୍ତି । ଏ ଭବଅମ୍ବୁ ନିସ୍ତରନ୍ତି ॥୪-୨୨॥
ଯୋଗୀନ୍ଦ୍ରଗଣ ସେବା କଲେ । ସେ ରତି ଲଭେ ବ୍ରହ୍ମକୂଳେ ॥୪-୨୨॥
ଲକ୍ଷେ କୋଟିଏ ତୀର୍ଥଫଳ । ଯେ କରେ ସାଧୁ ସଙ୍ଗେ ମେଳ ॥୧୦-୬୯।
ସନ୍ତଚରଣେ ଇଚ୍ଛା ନାହିଁ । ହରିଙ୍କୁ ଲଭିବ ସେ କାହିଁ ॥୭-୫॥
ସାଧୁଙ୍କ ମୁଖୁ ସାଧୁବାଣୀ । କୁମତି ଖଣ୍ଡେ ତାହା ଶୁଣି ॥୧୧-୨୭॥
ସାଧୁଙ୍କୁ ଦିଏ ଯେ କଷଣ । ତାରେ ସହାରେ ନାରାୟଣ ॥୧୦-୫୦॥
ସାଧୁ ସଙ୍ଗତ ପ୍ରଭାବରେ । ପ୍ରଭୁର କୃପା ହୋଇଥାରେ ॥୫-୧୨॥
ସେ ସାଧୁ ବୋଲାଇ ସଂସାରେ । ପ୍ରାଣୀଙ୍କୁ ଯେବେ ଦୟାକରେ ॥୫-୧୧॥
ହରି ରଚିତ ଦୀପ ଧରି । ଜନଙ୍କୁ ଅନ୍ଧାରୁ ଉଦ୍ଧରି ॥୧-୫॥
ହରି ଭଜନ ଯେବେ ନାହିଁ । ଏଥୁଁ ଆରୋଗ୍ୟ ପରେ କାହିଁ ॥୪-୩୧॥

ଅହିଂସା, ସତ୍ୟ, ପରୋପକାର, ଜ୍ଞାନ ଓ ଧର୍ମର ପରାକାଷ୍ଠା ସୂଚକ ବହୁ ପଦ୍ୟାବଳୀ ଭାଗବତରେ ସନ୍ନିବେଶିତ ଅଛି । ଜଗନ୍ନାଥ ଦାସ ଏ ସମ୍ବନ୍ଧୀୟ ତତ୍ତ୍ୱକୁ ଯେପରି ସରଳ ଓ ସୁବୋଧ ଭାଷାରେ ଉପସ୍ଥାପନ କରିଛନ୍ତି ତାହାର ତୁଳନା ନାହିଁ । ନିମ୍ନରେ ସେଥିରୁ କେତୋଟି ପଦ ଉଦ୍ଧାର କରାଯାଇପାରେ—

ଅଜ୍ଞାନୁ ଜ୍ଞାନ ଜାତ ହୋଇ । ବିଷୟ ବାସନା ଦହଇ ॥୩-୨୮॥
ଅବିଦ୍ୟା ସଙ୍ଗେ ଜୀବ ବନ୍ଧୀ । ବିଦ୍ୟା ଉଦୟେ ଜ୍ଞାନ ବୃଦ୍ଧି ॥୧୧-୨୨॥
ଅହିଂସା କରି କାର୍ଯ୍ୟସିଦ୍ଧି । ଯେମନ୍ତେ ଆତ୍ମା କାର୍ଯ୍ୟସାଧି ॥୮-୬॥
ଅହିଂସା ଧର୍ମେ ଯେବେ ଥାନ୍ତି । ଏ ବ୍ରହ୍ମ ଜ୍ଞାନ ସେ ଲଭନ୍ତି ॥୪-୨୨॥
ଉପାଧି ବାସନା ଅଶେଷ । ଜ୍ଞାନ ଅନଳେ ହୁଏ ଧ୍ୱଂସ ॥୪-୨୯॥
ଏ ଧର୍ମ ସତ୍ୟରୁ ଉଦୟେ । ବିଶୁଦ୍ଧ ଚିତ୍ତ ତହୁଁ ହୁଏ ॥୩-୩୧॥
ଗୃହସ୍ଥ ସ୍ୱଭାବେ ପୁଣ୍ୟ କରି । ସ୍ୱର୍ଗେ ବସନ୍ତି ଦେହ ଧରି ॥୧୧-୪॥
ଜୀବ ମାରଣେ ସୁଖ ନାହିଁ । ନରକେ ପଡ଼ିବ ନା ଯାଇ ॥୧୦-୩॥
ଜୀବ ମାରନ୍ତି ଆତ୍ମା ସୁଖେ । ଦେହ ଅନ୍ତରେ ପାନ୍ତି ଦୁଃଖେ ॥୧୦-୨॥
ଜୀବର ତତ୍ତ୍ୱ ଜାଣିବାରେ । କେ ଜ୍ଞାନୀ ଅଛୁ ଏ ସଂସାରେ ॥୧-୨॥
ଜ୍ଞାନୀଙ୍କ ଶତ୍ରୁ ମିତ୍ର ନାହିଁ । ନିତ୍ୟ ଉଦାସ ସତେ ଥାଇ ॥୭-୬॥
ଜ୍ଞାନେ ସକଳ ପାପ ନାଶେ । ନିର୍ମଳ ମୁକତି ପ୍ରକାଶେ ॥୧୧-୧୯॥
ଦୁଃଖେ ଯେ ନଛାଡ଼ଇ ଧର୍ମ । ସେ ଧର୍ମ ବିପ୍ରକାମ୍ୟ କର୍ମ ॥୧୦-୫୬॥
ଧର୍ମ ଅର୍ଜନେ ଧର୍ମ କରି । ଧର୍ମେ ପ୍ରାପତ ନରହରି ॥୧୧-୫॥
ବିଷୟେ ବୈରାଗ୍ୟ ଯାହାର । ସେ ପ୍ରାଣୀ ଶାନ୍ତଚିତ୍ତ ଧୀର ॥୩-୩୨॥
ବୁଦ୍ଧି ବିବେକ ଜ୍ଞାନବଳେ । ମରଣ ଜିଣିପାରେ ହେଳେ ॥୧୧-୧୧॥
ଶୋକ ମୋହରେ ସ୍ନେହ ଦେଖି । ତାହା ଛାଡ଼ିଲେ ଜ୍ଞାନପାଇ ॥୭-୧୬॥
ସ୍ୱଧର୍ମେ ଇଚ୍ଛା ଯାର ଥିବ । କେବେହେଁ ପଶୁ ନ ହିଂସିବ ॥୭-୧୫॥

ଭକ୍ତିଯୋଗ ବିଷୟରେ ଜଗନ୍ନାଥ ଦାସଙ୍କ ବିଚାର ଯେପରି ସରଳ ସେହିପରି ପ୍ରାଞ୍ଜଳ ମନେହୁଏ । ଭାଗବତରେ ଏକାଦଶସ୍କନ୍ଧ ଅନ୍ତର୍ଗତ କୋଡ଼ିଏ ଓ ଏକୋଇଶି ଅଧ୍ୟାୟ ଦୁଇଟିରେ ଏ ବିଷୟର ସବିଶେଷ ଉଲ୍ଲେଖ ଥିଲେ ମଧ୍ୟ ଗ୍ରନ୍ଥର ଅନ୍ୟାନ୍ୟ ଅଧ୍ୟାୟରେ ଏହାର ପ୍ରାସଙ୍ଗିକ ପର୍ଯ୍ୟାଲୋଚନା କରାଯାଇଛି । ବିନୟ, ସଦାଚାର, ନୀତି ପ୍ରଭୃତି ଭକ୍ତିର ପରିପୋଷକ ରୂପେ ବିବେଚିତ । ଏ ପ୍ରସଙ୍ଗରେ କେତୋଟି ଉଦାହରଣ ନିମ୍ନମତେ ଉଦ୍ଧାର କରାଯାଇପାରେ—

ଅଧୌତ ଆର୍ଦ୍ର ପାଦ ଯେବେ । ଶୟନ ନ କରିବ ତେବେ ॥୪-୧୮॥
ଅନିତ୍ୟ ଦେହ ନ ବୁଝଇ । ବ୍ୟାପାର କରେ ଦୁଃଖ ସହି ॥୩-୩୦॥
ଅମୃତ ବିନୟ ବଚନ । କହି ତୋଷିବ ଜନ ମନ ॥୧୧-୨॥
ଏ ନରଲୋକେ ସାଧୁ ଯେତେ । କୋପ ନବଶେ ତାଙ୍କ ଚିତ୍ତେ ॥୧-୧୮॥
କୁଶଳ କର୍ମ ଯେ କରନ୍ତି । ସେ ଫଳ ଏଦେହେ ଭୁଞ୍ଜନ୍ତି ॥୧-୧୮॥
କେବଳ ଦୟାସିନ୍ଧୁ ଧୀର । ଅଶେଷ ଜ୍ଞାନର ଈଶ୍ୱର ॥ ୭-୧୧ ॥

କେହି କାହାର ହନ୍ତା ନୁହେଁ । ପ୍ରାଣୀ ଜୀବନ କାଳ ଦହେ ॥ ୪-୧୪ ॥
ଗୋବିନ୍ଦ ଭକ୍ତ ଯେ ନିଷ୍କଳ । ବର୍ତ୍ତିଲ ଭକ୍ତଜନ ମେଳେ ॥ ୩-୨୦ ॥
ଜ୍ଞାନୀ ଭକତ ହୁଏ ଜାତ । ଭକ୍ତିରୁ ଗୋଲୋକ ପ୍ରାପତ ॥ ୧୪-୨୪ ॥
ଧ୍ୟାନ ଶ୍ରବଣ ଯୋଗ ସାରେ । କଳି କଳ୍ମଷ ପାପ ହରେ ॥ ୫-୨୫ ॥
ବିଷ୍ଣୁ ଭକତ ଜନ ଦେଖି । ନିର୍ମଳ ହୁଏ ଚର୍ମ ଆଖି ॥ ୧୧-୨ ॥
ଭକତ ଜନଙ୍କର ଚିତ୍ତ । ସର୍ବଦେ ନୁହଇ ମୋହିତ ॥ ୧୦-୫୫ ॥
ଭକତ ଜନ ସଙ୍ଗ ଯେବେ । କରଇ ଭ୍ରମ ଖଣ୍ଡେ ତେବେ ॥ ୩-୨୫ ॥
ଭକତି ଉପୁଜିବ ଯେବେ । ଛାଡ଼ିବ ସର୍ବ କର୍ମ ତେବେ ॥ ୧୧-୧୩ ॥
ଭକତି କରି କୃଷ୍ଣ ପାଦେ । ନପଡେ ଲୋକ ମୋହବାଦେ ॥୧-୫॥
ଭକ୍ତଜନଙ୍କ ସେବାବଳେ । ଦହନ ହୋନ୍ତି ଅମଙ୍ଗଳେ ॥ ୧-୨ ॥
ଭକ୍ତି କୁଠାରେ ଦୁର୍ବାସନା । ଛେଦ ତୁ ବେଦବାକ୍ୟେ ସିନା ॥୧୧-୧୩॥
ଭକ୍ତିରେ ଭଗବାନ ତୋଷ । ଗଜର ପୂର୍ଣ୍ଣକଲେ ଆଶ ॥ ୭-୯ ॥
ସକଳ ଦେହେ ନାରାୟଣ । ବସନ୍ତି ଅନାଦି କାରଣ ॥
ଏଭାବେ ଦୃଢ଼ ଯାର ମନ । ସେ ପ୍ରାଣୀ ଭକତ ଉତ୍ତମ ॥ ୧୧-୩ ॥
ସଂସାରଚକ୍ର ବେଦଧର୍ମ । ପ୍ରାଣୀ ସାଧିବେ ଭକ୍ତକର୍ମ ॥ ୧୦-୯୩ ॥
ସମରେ ଯେ ବୀର ପଶନ୍ତି । ଆତ୍ମା ବିଷ୍ଣୁର ନକରନ୍ତି ॥ ୮-୧୯ ॥
ସର୍ବଥି ନୁହଇ ନିଷ୍ଫଳ । ଯେମନ୍ତେ ସମୁଦ୍ର ଉଛୋଳ ॥ ୭-୭ ॥
ସୁବୁଦ୍ଧି ସାଧୁ ଯେ ପ୍ରଧାନ । ହିଂସା ନକରେ କଦାଚନ ॥ ୪-୨୧ ॥
ସେ ଭକ୍ତଯୋଗ ସୁଧାପାନ । ମୋକ୍ଷକୁ ପରମ କାରଣ ॥ ୪-୨୨ ॥
ସ୍ୱଭାବେ ଧର୍ମ ଆଚରଣେ । ଭକ୍ତି ଉପୁଜେ ନାରାୟଣେ ॥ ୧-୨ ॥
ସ୍ୱର୍ଗାଦି ମୋକ୍ଷକବା ତାର । ସିଦ୍ଧି ଲଭନ୍ତି ଭକ୍ତ ନର ॥ ୪-୨୩ ॥
ହରି ଚରଣେ ଯାର ଶ୍ରଦ୍ଧା । ତାଙ୍କୁ ନ ଲାଗେ ଭବବାଧା ॥ ୧-୨ ॥

ମହାପୁରୁଷ ଜଗନ୍ନାଥ ଦାସ କର୍ମ ଓ କର୍ମଫଳ ତଥା ଅଦୃଷ୍ଟ, ଭାଗ୍ୟ ସମ୍ବନ୍ଧରେ ପ୍ରସଙ୍ଗକ୍ରମେ ନାନାବିଧ ଉପାଦେୟ ଉପଦେଶ ପ୍ରଦାନ କରିଛନ୍ତି । ସେଗୁଡ଼ିକ ଦେଶ, କାଳ ଓ ପାତ୍ର ନିର୍ବିଶେଷରେ ସମସ୍ତ ପକ୍ଷରେ ଅନୁଶୀଳନୀୟ ଓ ଆଚରଣୀୟ ମନେହୁଏ । ଓଡ଼ିଶାର ଜନସାଧାରଣଙ୍କ ମୁଖରେ ଏପରି ଭାଗବତ ବାଣୀର ବହୁଳ ପ୍ରଚଳନ ଅଦ୍ୟାପି ଦେଖାଯାଏ । ଅମୃତତୁଲ୍ୟ ସେହି ବାକ୍ୟରୁ କେତୋଟି ଉଦ୍ଧୃତ ହେଲା—

ଅଦୃଷ୍ଟ କୃତ କର୍ମଫଳ । କେବେହେଁ ନୁହଇ ନିଷ୍ଫଳ ॥ ୭-୭ ॥
ଅଦୃଷ୍ଟ ବଶ ସର୍ବଜନ୍ତୁ । ଅଦୃଷ୍ଟ ସୁଖ ଦୁଃଖ ହେତୁ ॥ ୧୧-୧୯ ॥

ପରଜ ଥିଲ ଯାହା ପୂର୍ବେ । ଫଳିଲା ତାହା ଆସି ଏବେ ॥୧୦-୪୭॥
ଅର୍ଜିଲ କର୍ମଫଳ ଲଭି । ଅଶେଷ ଦେହେ ତାହା ସେବି ॥ ୨-୨॥
ଆତ୍ମାର କର୍ମଫଳ ଯୋଗ । ଏମନ୍ତେ ଭ୍ରମେ ନାନା ଯୋନ ॥୨-୨୭॥
ଏ ଜୀବ କର୍ମର ବନ୍ଧନ । ଏହା ନ ଜାଣେ ମୂର୍ଖଜନ ॥ ୭-୨ ॥
ଏ ବନ୍ଧ ମୋକ୍ଷ ହୋଇ । ବ୍ରହ୍ମ ନ ଜାଣେ ପଣେ ଯାଇ ॥ ୭-୭ ॥
ଏଣୁ ଏ କର୍ମମସ୍ତ ଦେଖ । କର୍ମୁ ଅଧିକା କେହୁ ନାହିଁ ॥ ୭-୨ ॥
ଏଣୁ ସଂସାର କର୍ମବଳେ । ପ୍ରାଣୀ ଭ୍ରମଇ ଅନ୍ତସଳେ ॥ ୧୦-୯୧ ॥
ଏଦେହେ ପ୍ରାଣ ଯେ ଜଗତେ । ମିଳନ୍ତି କର୍ମର ଆସ୍ତୁତେ ॥ ୧୦-୯୩ ॥
କର୍ମ ଅନ୍ୟଥା କେ କରିବ । ଯାହା ନ ଜାଣେ ବ୍ରହ୍ମାଶିବ ॥ ୭-୨ ॥
କର୍ମ ଆସ୍ତୃତ ହୋଇ ଜନ । ଦଣ୍ଡର ହୁଅନ୍ତି ଭାଜନ ॥ ୭-୧ ॥
କର୍ମ କରଣେ ଫଳ ପାଇ । ପ୍ରାଣୀ ତା ଅବଶ୍ୟ ଭୁଞ୍ଜଇ ॥ ୧୧-୧୧ ॥
କର୍ମହିଁ ସୁଖ ଦୁଃଖ ଦାତା । ବଣୁ ସଂସାରେ ବଳବନ୍ତା ॥ ୧୦-୨୫ ॥
କର୍ମ ପ୍ରପଞ୍ଚ ଏ ଜଗତ । ଏହାର ଫଳ ବିପଯ୍ୟସ୍ତ ॥ ୧୦-୯୩ ॥
କର୍ମ ଯେ ଶତ୍ରୁ ମିତ୍ର ହୋଇ । ଗୁରୁଙ୍କ ପ୍ରାପ୍ତେ ଦୀକ୍ଷା ଦେଇ ॥ ୧୦-୨୫॥
କର୍ମର ଫଳ ଏ ଜଗତ । କର୍ମ ସରିଲେ ହୁଏ ହତ ॥ ୧୧-୨୦ ॥
କର୍ମର ମତେ ଦୁଃଖ ସୁଖ । ଜନ୍ମ ମରଣ ହୁଏ ଦେଖ ॥ ୧୦-୨୫ ॥
ଜନ୍ମ ବାସନା ଫଳେ ତାର । ପୁଣି ଜନ୍ମଇ ଏ ସଂସାର ॥ ୫-୧୪ ॥
ଜ୍ଞାନେ ଅଜ୍ଞାନେ କର୍ମ କର । ବୃଦ୍ଧ ବୟସେ ତା ସୁମର ॥ ୧୦-୯୦ ॥
ଦଇବ ମତେ ଫଳ ହୋଇ । ଯେଝାର କର୍ମବଳେ ପାଇ ॥ ୧୦-୨୫ ॥
ଦେବ ଅସୁର କିବା ନର । କର୍ମକୁ ନୁହନ୍ତି ଈଶ୍ୱର ॥ ୭-୧୦ ॥
ପୂର୍ବେ ଯାହାର ପୁଣ୍ୟ ଥାଇ । ସକଳ ଦୁଃଖୁ ସେ ତରଇ ॥ ୧୦-୧୮ ॥
ବାସନା ବଳେ କର୍ମ ଜାତ । ହରଇ ପ୍ରାଣୀଙ୍କର ଚିତ୍ତ ॥ ୭-୧ ॥
ମନ୍ଦ କରମଯୁକ୍ତ ଯେହୁ । ସୁକର୍ମ ଭୁଞ୍ଜିବ ସେ କାହୁଁ ॥ ୭-୧ ॥
ମଣ୍ଡାରୁ ପଡ଼ି ମାମୁଁ ମଲ୍ଲ । ମୋତେତ ଦଇବ ରଖିଲ୍ଲ ॥ ୧୦-୪୭ ॥
ମନହିଁ ହୁଏ କର୍ମମସ୍ତ । ନାନା ପ୍ରକାରେ ସୃଜେ ଦେହ ॥୧୧-୨୩ ॥
ଯେ ଫଳ ଲୋଭେ କରେ କର୍ମ । କର୍ମେ ତା ହୁଏ ମତିଭ୍ରମ ॥ ୧୧-୪ ॥
ଯେ ଯାହା କର୍ମ ଫଳ ବଳେ । ଶୁଭ ଅଶୁଭ ତାକୁ ମିଳେ ॥ ୧୦-୩୯ ॥
ସଂସାର କର୍ମର ଅଧୀନ । ଏମନ୍ତ ଜାଣ କୁନ୍ତୀସୁତ ॥ ୧-୯ ॥
ସୁକର୍ମେ ସାଧୁ ସଙ୍ଗ ପାଇ । କୁକର୍ମେ ଅସାଧୁ ମିଳଇ ॥ ୧୧-୧୨ ॥
ହରଷ ଶୋକେ ନାହିଁ ଇଚ୍ଛା । ନିଜ କରମ ଫଳ ଦୀକ୍ଷା ॥ ୧୦-୮୫ ॥

ଜୀବଜଗତରେ ମାନବ ସର୍ବଶ୍ରେଷ୍ଠ ଜୀବରୂପେ ପରିଗଣିତ । ବହୁ ତପସ୍ୟା ଫଳରେ ଜୀବ ମାନବ ଯୋନିରେ ଅବତୀର୍ଣ୍ଣ ହୁଏ । ସେହି ଭଗବତ୍ ପ୍ରଦତ୍ତ ଅମୂଲ୍ୟ ମାନବ ଜୀବନକୁ ସଫଳ କରିବା ପାଇଁ ସମସ୍ତେ ଯତ୍ନଶୀଳ ହୁଅନ୍ତି । କିନ୍ତୁ କିପରି ତାହା ସମ୍ଭବ ହେବ ? ଏହି ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନର ସମାଧାନ ପାଇଁ ଭାଗବତର ନିମ୍ନୋଦ୍ଧୃତ ବାକ୍ୟାବଳୀ ଅନୁଶୀଳନ କରାଯାଇପାରେ—

ଅନେକ ଜନ୍ମ ତପ ଫଳେ । ମନୁଷ୍ୟ ଜନ୍ମ ମିଳି ତଳେ || ୧୧-୩୭ ||
ଅନେକ ଭ୍ରମି ଏ ସଂସାରେ । ମନୁଷ୍ୟ ରୂପ ପ୍ରାଣୀ ଧରେ || ୧୦-୯୧ ||
ଏ ଯେ ମନୁଷ୍ୟ କଳେବର । ଦୁର୍ଲଭ କ୍ଷଣିକ ଭଙ୍ଗୁର || ୧୧-୨ ||
ଜନ୍ମ ମରଣ ଜରା ମୃତ୍ୟୁ । ଉଭୟ ସୁଖ ଦୁଃଖ ହେତୁ || ୧୧-୮ ||
ଦଣ୍ଡିବା ଶକ୍ତି ଯାର ଥାଇ । ସେ ପୁଣି କ୍ଷମା ଆଚରଇ || ୫-୧୧ ||
ଧନ କାର୍ପଣ୍ୟ ସେବାଫଳେ । କିବା ଅସାଧ୍ୟ ମହୀତଳେ || ୧୧-୭ ||
ଧନ୍ୟ ଜୀବନ ଏ ଜଗତେ । ଯେ ପ୍ରାଣ ଧରେ ପ୍ରାଣୀ ହିତେ ||୧୧-୮||
ଧନ୍ୟ ତାହାର ଜନ୍ମ ସାର । ମୁକୁନ୍ଦ ପାଦେ ଭକ୍ତି ଯାର || ୫-୧୯ ||
ପରମ ଦୟାଳୁର ଗୁଣ । ସର୍ବଭୂତରେ ମିତ୍ର ପଣ || ୫-୪ ||
ପିତୃମାନଙ୍କ କାର୍ଯ୍ୟପୁଣ । କରିବ ଯଥୋଚିତ ଧର୍ମ || ୭-୭ ||
ପ୍ରାଣୀଙ୍କ ହିତ ସାଧୁଜନ । ଯେ କରେ ଧନ୍ୟ ତା ଜୀବନ || ୮-୧୯ ||
ବିପ୍ର ଅଗ୍ନିଙ୍କ ନ ପୂଜିଲେ । କଲ୍ୟାଣ ଲଭେ ନାହିଁ ଭଲେ || ୮-୧୫ ||
ମନୁଷ୍ୟ ମଧ୍ୟେ ସାଧୁବାଣୀ । ମରଣ କାଳେ ତାହା ଜାଣି || ୨-୩ ||
ଯାହାର ବନ୍ଧୁ ସଦ୍ଗୁଲଭ । ତାହାକୁ କି ଅବା ଦୁର୍ଲଭ || ୧୦-୪୨ ||
ଯେ ଚିତ୍ତେ କ୍ରୋଧ ବିବର୍ଜିତ । ତାହାର ସୁହୃଦ ଜଗତ || ୫-୫ ||
ଯେ ପର ଦୁଃଖେ ଦୁଃଖ ସହି । ତାହାକୁ ପରମାତ୍ମା କହି || ୮-୭ ||
ଯେ ସର୍ବ ସମାନ ଦେଖଇ । ତାର ଶତ୍ରୁମିତ୍ର ନାହିଁ || ୭-୪ ||
ସ୍ୱର୍ଗ ନରକ ବେଦ ବାଣୀ । ମୁଁ ଏହା ଏକ ଧର୍ମେ ଜାଣି || ୧୧-୯ ||

ଭାଗବତରେ ଯୁଗଧର୍ମ, ଗାର୍ହସ୍ଥ୍ୟଧର୍ମ, ସ୍ତ୍ରୀଧର୍ମ, ଆଶ୍ରମଧର୍ମ, ବର୍ଣ୍ଣାଶ୍ରମଧର୍ମ, ପ୍ରେମଧର୍ମ, ଜୀବଧର୍ମ, ନବଧାଭକ୍ତିଧର୍ମ, ସାତ୍ତ୍ୱିକ, ରାଜସିକ ଓ ତାମସ ଭେଦରେ ତ୍ରିବିଧ ଗୁଣଧର୍ମର ଉଲ୍ଲେଖ ଯତ୍ରତତ୍ର ଥିବାର ଦେଖାଯାଏ । ସ୍ନେହ, ଆସକ୍ତି, ବନ୍ଧନ, ଅଭିମାନ, ଅତିଥିସେବା ପ୍ରସଙ୍ଗରେ ବହୁ ଉପାଦେୟ ବାଣୀ ଭାଗବତର ବିଭିନ୍ନ ପ୍ରସଙ୍ଗରେ ସନ୍ନିବେଶିତ ଥିବାର ପରିଲକ୍ଷିତ ହୁଏ । ଅସତ୍ୟ, ମିଥ୍ୟା, କପଟ, ଲୋଭ, ମୋହ ଈର୍ଷ୍ୟାଦି ପ୍ରସଙ୍ଗରେ କେତୋଟି ଉପାଦେୟ ପଙ୍କ୍ତି ଉଦ୍ଧାର କରାଯାଇପାରେ—

ଅଗ୍ନି ମୂରତ୍ତ ଅଭ୍ୟାଗତ । ଆତ୍ମା ମୂରତ୍ତ ସର୍ବଭୂତ ॥ ୭-୭ ॥
ଅର୍ଥ ବାଞ୍ଛିତ ମନ ଯାର । ତାମସେ ବନ୍ଧେ ସେହ୍ନ ନର ॥ ୪-୨୨ ॥
ଅର୍ଥ ସଞ୍ଚନ୍ତି ଯେତେ ନର । କେବଳ ଶ୍ରମ ତାହାଙ୍କର ॥ ୪-୨୨ ॥
ଅର୍ଥେ ନ ପାଇ କାମ ମୋକ୍ଷ । ସେ ପ୍ରାଣୀ ଅଧମ ପ୍ରତ୍ୟକ୍ଷ ॥୧-୬ ॥
ଅନାଥ୍ୟ ନର କଳେବର । ଭିତରେ ନାହିଁ କିଛି ସାର ॥ ୧-୧୩ ॥
ଆପଣା ଅର୍ଥ ସିଦ୍ଧି ଅର୍ଥେ । ଶତ୍ରୁଙ୍କୁ ଭଜନ୍ତି ସମସ୍ତେ ॥ ୮-୭ ॥
ଆରମ୍ଭୀ ଦମ୍ଭୀ ଖଳ ପ୍ରାଣୀ । ସେ ବଡ଼ ଏ ସଂସାରେ ପୁଣି ॥ ୧୨-୬ ॥
ଏ ଆତ୍ମା ଅହଙ୍କାରେ ବନ୍ଦୀ । ଅଦୃଷ୍ଟ ବଶ ନିରବଧି ॥ ୧୧-୨୩ ॥
ଐଶ୍ୱର୍ଯ୍ୟ ଭୋଗେ ମନ ଯାର । ଦାରିଦ୍ର୍ୟ ତାର ପ୍ରତକାର ॥ ୧୦-୧୧ ॥
ଦମ୍ଭେ ଯେ ନାନା କର୍ମ କରେ । ଜୀବକୁ ଉଦ୍ଧାର ନପାରେ ॥୧୪-୨୪॥
ଦେଶ ଆୟୁଷ ଏ ଶରୀରେ । ଛିଦ୍ର ଘଟର ପ୍ରାୟ ଝରେ ॥ ୭-୭ ॥
ଦେଖ ଏ ମନୁଷ୍ୟ ଶରୀର । ଅଟଇ ଭୋଗର ମନ୍ଦିର ॥ ୯-୧୮ ॥
ଦେହର ଜନ୍ମ ମୃତ୍ୟୁ ଦୁଇ । ବିଷ୍ଣୁ ମାୟାରେ ପ୍ରବର୍ତ୍ତଇ ॥ ୧୧-୧୦ ॥
ଧ୍ରୁବପଦ ଚତୁଷ୍ପଦ ଯେତେ । ସର୍ବେ ବନ୍ଧନ ମୋହଗତେ ॥ ୫-୧ ॥
ପ୍ରାଣୀ ଭିଆଣ ମାୟାଯୋଗେ । ଖେଳଇ ସଂଯୋଗ ବିଯୋଗେ ॥୧-୧୩॥
ବିଷ୍ଣୁର ମାୟା ଅଗୋଚର । ସନ୍ଧି ଭ୍ରମନ୍ତି ବ୍ରହ୍ମାପୁର ॥ ୮-୧୨ ॥
ଭଗିନୀ ଦୟାର ମୂରତ୍ତ । ଧର୍ମର ମୂରତ୍ତ ଅତିଥି ॥ ୭·୭ ॥
ମାୟା ସଂସାରେ ଜ୍ଞାନ ହାର । ଜୀବକୁ ଜୀବ ହିଂସା କର ॥ ୧୧-୨୪ ॥
ମିଥ୍ୟା ବସଇ ଦୃଶ୍ୟ ମଧ୍ୟେ । କାମ କାମିନୀ ମନ ସାଧେ ॥ ୧-୭ ॥
ଯାବତ ମାୟା ନୁହେଁ ହତ । ତାବତ ସୁଖଦୁଃଖ ଗ୍ରସ୍ତ ॥୧୧-୪ ॥
ଯାବତ ଅଛି ଅର୍ଥ ଲୋଭ । ତାବତ ଥାଇ ପ୍ରିୟଭାବ ॥ ୧୧-୫୫ ॥
ଯେ ପ୍ରାଣୀ ପରେ ହିଂସା କରେ । ଦେବତା ପୂଜ ସେ ନ ତରେ ॥ ୭-୧୪ ॥

ଅଧର୍ମ, ଅନ୍ୟାୟ, ଅସନ୍ତୋଷ, ଅଜ୍ଞାନତା ହେତୁ ମଣିଷ ନାନାବିଧ ଦୁଃଖ-ଯନ୍ତ୍ରଣା ଭୋଗ କରେ । ଏସବୁର କାରଣ ଓ ନିରାକରଣ ବିଷୟରେ ଭାଗବତର ବାଣୀ ସର୍ବଥା ଅନୁସରଣୀୟ । ଅଜ୍ଞାନତାବଶତଃ ଘଟୁଥିବା ଅପରାଧ କ୍ଷମଣୀୟ ହେଲେ ବି ଜ୍ଞାନକୃତ ଅପରାଧୀକୁ କ୍ଷମା ଦେବା ଶାସ୍ତ୍ର ବିରୁଦ୍ଧ । କାରଣ, ଏହାଦ୍ୱାରା ସମାଜର ଅବନତି ଘଟେ । ତେଣୁ ଯାହା ବ୍ୟଷ୍ଟିଠାରୁ ସମଷ୍ଟି ପର୍ଯ୍ୟନ୍ତ କ୍ଷତିକାରକ ତାହାହିଁ ଅଧର୍ମ, ଅନ୍ୟାୟ ପାପ ବା ଅପରାଧ ନାମରେ ଅଭିହିତ । ଏପ୍ରସଙ୍ଗରେ ଭାଗବତର କେତୋଟି ଉପାଦେୟ ପଙ୍କ୍ତି ନିମ୍ନମତେ ଉଦ୍ଧାର କରାଯାଇ-ପାରେ—

ଅଗମ୍ୟ ନାରୀ ଯେ ହରଇ । ତପତ ସୂର୍ମ୍ମିରେ ପଡ଼ଇ ॥ ୫-୨୫ ॥
ଅଜୀବ ଆତ୍ମା ଯେ ଅଟନ୍ତି । ଜୀବଙ୍କୁ ନରକେ ପକାନ୍ତି ॥ ୫-୧୪ ॥
ଅଜ୍ଞାନ ହେତୁ ଜୀବଗଣ । ମୁହ୍ୟ ମୋହର କରେ ଜ୍ଞାନ ॥ ୩-୩୦ ॥
ଅଜ୍ଞାନ ଅଜ୍ଞାନ ଦେଖଇ । ଅନ୍ଧକୁ ଅନ୍ଧ ଯେ କଢ଼ାଇ ॥ ୭-୬ ॥
ଅଜ୍ଞାନେ ଏ ଘୋର ସଂସାରେ । ଜୀବ ଭ୍ରମଇ ଅହଙ୍କାରେ ॥ ୧୧-୩୨ ॥
ଅଧର୍ମେ ସଞ୍ଚଇ ଯେ ଧନ । ତା'ର ବିନାଶେ ଭୁଞ୍ଜେ ଅନ୍ୟ ॥୧୦-୫୧॥
ଅନିତ୍ୟ ଦେହ ନିତ୍ୟ କରେ । ସେ ସାଧୁ ନୁହଇ ସଂସାରେ ॥ ୫-୫ ॥
ଅନ୍ୟାୟ ଅର୍ଥକାମୀ ଜନ । ଲକ୍ଷ୍ମୀ ସେବନ୍ତି ଅନୁଦିନ ॥ ୩-୧୬ ॥
ଅପହରଣ ବ୍ରହ୍ମଧନ । ନରକେ ନିବାସଇ ଜନ ॥ ୧୦-୬୯ ॥
ଆପଣା ଦନ୍ତେ ଜିହ୍ୱା ଛେଦ । କେ ତାର ଅଛୁ ପ୍ରତିବାଦ ॥୧୧-୨୪॥
ଏ ଘୋର ସଂସାରେ ପଡ଼ିଣ । ଦୁଃଖ ଭୁଞ୍ଜନ୍ତି ଜ୍ଞାନହୀନ ॥ ୪-୨୨ ॥
ଐଶ୍ୱର୍ଯ୍ୟ ମଦର ଲକ୍ଷଣ । ତ୍ରିବିଧ ଅଟେ ଏହା ଜାଣ ॥
ବହୁ ସ୍ତ୍ରୀ ସଙ୍ଗ ସୁରାପାନ । ଦ୍ୟୁତକ୍ରୀଡ଼ାରେ ରସେ ମନ ॥ ୧୦-୧୧ ॥
କୁପଥ ଦେଖାନ୍ତି ଯେ ଜନ । ନରକେ ପଡ଼ନ୍ତି ବହନ ॥ ୬-୭ ॥
ଗୁରୁକାମିନୀ ସେହୁ ରତେ । ଧବଳ ହୋଇ ବେନି ହସ୍ତେ ॥ ୭-୫ ॥
ଗୁରୁଙ୍କୁ ଶାପ ଶିଷ୍ୟ ଦେଲେ । ଅଧର୍ମ ହୋଇବଟି ଭଲେ ॥ ୯-୯ ॥
ଗୁରୁବଚନ କି କଣବ । ଯାହାର ଯେମନ୍ତ ସ୍ୱଭାବ ॥ ୭-୫ ॥
ଜୀବ ଅଜ୍ଞାନ ଭାବ ଦେଖ । ଦୁଃଖକୁ ମଣେ ମହାସୁଖ ॥୧୧-୨ ॥
ଜ୍ଞାନ ଧିନାଶେ ଆତ୍ମା ହତ । ବେଦାନ୍ତେ କହନ୍ତି ପଣ୍ଡିତ ॥ ୪-୨୨ ॥
ଦୁଷ୍କୃତେ ଯେ ଜନ ରମନ୍ତି । ନରକ ମାର୍ଗେ ତାର ଗତି ॥ ୩-୧୫ ॥
ଧନ ସମ୍ପଦେ ଯାର ଇଚ୍ଛା । ସେ କରେ ଭୂତପ୍ରେତ ଦୀକ୍ଷା ॥ ୧-୨ ॥
ଧର୍ମେ ଅଧର୍ମେ ଯେବା କରେ । ସେ ପ୍ରାଣୀ ଜୀବ ଥାଇ ମରେ ॥ ୧-୧୭ ॥
ଧାର୍ମିକ ଲୋକେ ଯେ ନିନ୍ଦନ୍ତି । ଅଧର୍ମ ହେତୁ ସେ ଜାଣନ୍ତି ॥ ୬-୭ ॥
ନରତେ କାମ ଭୋଗେ ସୁଖ । ତାହାକୁ ବୋଲି ମହାଦୁଃଖ ॥ ୧୦-୨୦ ॥
ପ୍ରାଣୀର ବଧ ପ୍ରାଣୀ ହତେ । କାହୁଁ ତରିବ ଯଜ୍ଞମତେ ॥ ୧୧-୨୩ ॥
ବର୍ଣ୍ଣିକ ସ୍ୱଭାବ ଯାହାର । ସେ କାହିଁ ତରିବ ସଂସାର ॥୭-୧୦ ॥
ବିଶ୍ୱାସୀ ପଶୁକୁ ମାରଇ । ଯମ ସଦନେ ସେହୁ ଯାଇ ॥ ୫-୨୬ ॥
ମୃତ୍ୟୁ ମାଇଲେ ଶିବ ସତ । ଦେବଙ୍କ ସଙ୍ଗେ କମ୍ପା କଲ ॥ ୧୦-୨ ॥
ମୂର୍ଖ ଯାହାର ସନ୍ନିଧାନ । ମନୁ ହରଇ ତାର ଜ୍ଞାନ ॥ ୭-୮ ॥
ଯେ ଅର୍ଥେ କମେ ଅସନ୍ତୋଷ । ହୁଏ ସେ ବିଧାତାର ବଶ ॥ ୮-୧୬ ॥
ଯେ ନର ଜ୍ଞାନ ବିଦ୍ୟାହୀନ । ସେ ଜୀବ ସ୍ଥାବର ସମାନ ॥ ୪-୨୨ ॥

ଯେ ନିଜ ହିତାହିତ ନ ବୁଝଇ । ତାର ବିବେକ ଗୁଣ ନାହିଁ ॥ ୪-୨୨ ॥
ସଭାରେ ମିଥ୍ୟା ଯେ କହନ୍ତି । ଅବଶ୍ୟ ନରକେ ପଡ଼ନ୍ତି ॥ ୫-୨୭ ॥
ସ୍ଥାପିତ ଦ୍ରବ୍ୟ ଯେ ହରଇ । ସଦେହେ ପିଶାଚେ ପଡ଼ଇ ॥ ୫-୨୭ ॥

ମାୟା ମୋହ ଯାତନାପୂର୍ଣ୍ଣ ସଂସାରରେ ରହି ସ୍ୱାର୍ଥାନ୍ଧ ·ମାନବ ପାର୍ଥିବ ସୁଖ ଭୋଗରେ ନିଜକୁ ଭୁଲିଯାଏ ଏବଂ କାଳକବଳିତ ହୋଇ ଇହଲୋକରେ ଅଶେଷ କ୍ଲେଶ ସହିଥାଏ । ଆଧ୍ୟାତ୍ମିକ, ଆଧିଦୈବିକ ଓ ଆଧିଭୌତିକ ନାମରେ ଅଭିହିତ ତ୍ରିବିଧ କ୍ଲେଶରୁ ମୁକ୍ତି ପାଇବା ନିମିତ୍ତ ମାନବ ନିଜର ଆଚରଣବିଧି ସାହାଯ୍ୟରେ କ୍ଲେଶର କାରଣ ନିରାକରଣ ପୂର୍ବକ ଆତ୍ମତତ୍ତ୍ୱର ସମୀକ୍ଷା କରିବା ବିଧେୟ, ସେଥିପାଇଁ ଭାଗବତରେ କୁହାଯାଇଛି—

ଦେଖ ଅଜ୍ଞାନ ମନ ଛନ୍ଦେ । ସଂସାରେ ସଞ୍ଚରନ୍ତି ଜନେ ॥
ଯେ ଜଳ ତୃଣ ଆଚ୍ଛାଦିତ । ତାହା ନ ଭକ୍ଷଇ ତୃଷିତ ॥
ମୃଗ ତୃଷ୍ଣାକୁ ଜଳ ମଣେ । ଭ୍ରମେ ଭ୍ରମଇ ଅକାରଣେ ॥
ତାହାର ଶ୍ରମ ମାତ୍ର ସାର । ଯେ ଆତ୍ମା ନ କରେ ବିଚାର ॥
( ୭-୧୩ )

ଭାଗବତୀୟ ଦର୍ଶନରେ ଧର୍ମାର୍ଥକାମମୋକ୍ଷାଦି ଚତୁର୍ବର୍ଗ ମଧ୍ୟରୁ ଚତୁର୍ଥ ସ୍ଥାନୀୟ ମୋକ୍ଷପ୍ରାପ୍ତିର କାମନା ଓ ସାଧନା ହେଉଛି ମୁଖ୍ୟ ପ୍ରତିପାଦ୍ୟ ତତ୍ତ୍ୱ । ଧର୍ମ, ଅର୍ଥ ଓ କାମର ସାଧନା ଓ ସିଦ୍ଧିଫଳ ବିନଶ୍ୱର । ତେଣୁ ଯାହାର ଚିତ୍ତ ବ୍ରହ୍ମାନୁଭୂତି ନିମିତ୍ତ ବ୍ୟାକୁଳ ନୁହେଁ, ସେ ଏହି ସଂସାରରେ ସର୍ବତୋଭାବେ ନିଃସହାୟ ବୋଲି ବିବେଚିତ ହୁଏ । ସେହି ବ୍ରହ୍ମକୁ ସତ୍, ଅଚ୍ୟୁତ୍, ଅନାତ୍ମ, ନିର୍ଗୁଣ, ଅନନ୍ତ, ଗୁଣ-ଦୋଷରହିତ, ପରମପୁରୁଷ ରୂପେ ଭାଗବତରେ ବର୍ଣ୍ଣନା କରାଯାଇଛି । ବ୍ରହ୍ମାଠାରୁ ସ୍ଥାବର ପର୍ଯ୍ୟନ୍ତ ସର୍ବତ୍ର ଗୁଣ ଓ ନିର୍ଗୁଣରେ ଏକକ ସତ୍ୟ ରୂପେ ସେହି ବ୍ରହ୍ମ ବିଦ୍ୟମାନ । ସ୍ୱଧର୍ମ ପାଳନଦ୍ୱାରା ସେହି ବ୍ରହ୍ମ ପରମପୁରୁଷର ସତ୍ତାନୁଭୂତି ସମସ୍ତଙ୍କର ପରମ ଓ ଚରମ ଲକ୍ଷ୍ୟ ହେବା ବିଧେୟ । ଜଗନ୍ନାଥ ଦାସ ସପ୍ରସଙ୍ଗକ୍ରମେ ବ୍ରହ୍ମ, ଈଶ୍ୱର ଓ ଆତ୍ମା ସମ୍ବନ୍ଧରେ କେତେକ ଉପଦେଶ୍ୟ ଉକ୍ତିର ଅବତାରଣା କରିଛନ୍ତି । ସେଥିରୁ କେତୋଟି ନିମ୍ନମତେ ଉଦ୍ଧାର କରାଗଲା—

ଅକ୍ଷର କ୍ଷର ନାହିଁ ଯାର । ସେ ବ୍ରହ୍ମ ପରମ ଈଶ୍ୱର ॥ ୮-୩ ॥
ଅଦ୍‌ଭୁତ ବିଷ୍ଣୁର ମହିମା । କେ ଜାଣିପାରେ ଗୁଣସୀମା ॥ ୭-୧ ॥
ଅଧର୍ମ ନାଶି ଜନ ପାଳି । ଜଗତନାଥ ବନମାଳୀ ॥ ୧୦-୯୫ ॥
ଆତ୍ମା ନିର୍ଗୁଣ ନିରଞ୍ଜନ । ସଂଯୋଗ ବିଯୋଗ ଏ ଭିନ୍ନ ॥ ୧୦-୮୫ ॥
ଆତ୍ମା କୃଷ୍ଣଙ୍କ ସବୁଠି । ତରଇ ସଂସାର ଜଳଧି ॥ ୧୧-୮ ॥

ଭାଗବତର ପ୍ରତି ସ୍କନ୍ଧ, ପ୍ରତି ଅଧ୍ୟାୟ ଓ ପ୍ରତ୍ୟେକ ଚରିତ, ଆଖ୍ୟାନ ଓ ଉପାଖ୍ୟାନରେ କୃଷ୍ଣଚରିତ ଓ କୃଷ୍ଣ ନାମର ମହତ୍ତ୍ୱ ହିଁ ପ୍ରତିପାଦନ ହୋଇଛି । ସେହି ଦୃଷ୍ଟିରୁ ଜ୍ଞାନ, କର୍ମ, ଭକ୍ତି, ପ୍ରେମ ଓ ଧର୍ମର ସାମୂହିକ ଭାବରାଶିରେ ଭାଗବତ ଅନନ୍ତ ଜ୍ଞାନର ରତ୍ନାକର ରୂପେ ଆଦୃତ ହୋଇଆସୁଥିବାର ଦେଖାଯାଏ । ସମସ୍ତ ଜ୍ଞାନ, ପ୍ରେମ ଓ ଭକ୍ତିର ଆଧାର ପରମପୁରୁଷ ଶ୍ରୀକୃଷ୍ଣଙ୍କ ନାମର ମହତ୍ତ୍ୱ ପ୍ରଖ୍ୟାପନ କରିବାକୁ ଯାଇ ଭାଗବତକାର କହିଛନ୍ତି—

କୃଷ୍ଣ ଶ୍ରବଣେ ଭକ୍ତି ଯାର । ସେ ପ୍ରାଣୀ ଭବମଧ୍ୟେ ସାର ॥ ୧-୧ ॥
କୃଷ୍ଣର ରସକଥା ଯେତେ । ତାହା ବର୍ଣ୍ଣାରି ବୃହଦତେ ॥
କେ ଅନ୍ୟ ଜାଣିବ ତାହାର । ଯେ କର୍ଣ୍ଣ ଜିହ୍ୱା ସୁଖକର ॥ ୧-୧୮ ॥
କୃଷ୍ଣର ନାମ ଉଚ୍ଚାରଣ । ନ ଶୁଣେ ଯାହାର ଶ୍ରବଣ ॥
ତାହାର କର୍ଣ୍ଣଯୁଗ କାନ୍ଥେ । ବିବରେ ଦଶନ୍ତି ଯେମନ୍ତେ ॥ ୨-୩ ॥
କୃଷ୍ଣଚରିତ ତୀର୍ଥପଦ । ହରଇ ବିପତ୍ତି ବିଷାଦ ॥ ୩-୫ ॥
କୃଷ୍ଣ ଚରଣେ ଯାର ମନ । ସଂସାରେ ଶ୍ରେଷ୍ଠ ସେହି ଜନ ॥ ୭-୩ ॥
କୃଷ୍ଣର ଶ୍ରବଣ କୀର୍ତ୍ତନ । ଅଶେଷ ଦୁରିତ ଦହନ ॥ ୧୧-୨ ॥

ଭାଗବତର ଉପଯୁକ୍ତ ଉକ୍ତିଗୁଡ଼ିକ ବ୍ୟତୀତ ନାରଦ—ବ୍ୟାସ ସମ୍ବାଦ, ଦିତି-କଶ୍ୟପ ସମ୍ବାଦ, ମନୁ—କର୍ଦ୍ଦମ ସମ୍ବାଦ, କପିଳ—ଦେବହୂତି ସମ୍ବାଦ, ଯଦୁ—ଅବଧୂତ ସମ୍ବାଦ, ଶ୍ରୀକୃଷ୍ଣ—ଉଦ୍ଧବ ସମ୍ବାଦ ସହିତ ଅନ୍ୟାନ୍ୟ ସମ୍ବାଦ ମଧ୍ୟରେ ସୃଷ୍ଟି ଧର୍ମ, ଜୀବଧର୍ମ, ଷଡ଼୍‌ଦର୍ଶନ ଓ କର୍ତ୍ତବ୍ୟାକର୍ତ୍ତବ୍ୟ ବିଷୟର ତତ୍ତ୍ୱାତ୍ମକ ବିଶ୍ଳେଷଣ କରାଯାଇ ଅଛି । ଗୋକର୍ଣ୍ଣ—ଉପାଖ୍ୟାନ, ଧ୍ରୁବୋପାଖ୍ୟାନ, ପୁରଞ୍ଜନୋପାଖ୍ୟାନ, ପ୍ରିୟବ୍ରତ ଚରିତ, ଅଗ୍ନୀଧ୍ରଚରିତ, ଭରତୋପାଖ୍ୟାନ, ଅଜାମିଳୋପାଖ୍ୟାନ, ପ୍ରହ୍ଲାଦ ଚରିତ, ସୌଭରି ଉପାଖ୍ୟାନ, ଶ୍ରୀରାମ ଚରିତ, ଯଯାତିଚରିତ, ସୁଦାମା ଚରିତ ପ୍ରଭୃତି ଚରିତ ଆଖ୍ୟାନ ଓ ଉପାଖ୍ୟାନ ମଧ୍ୟରେ ମାନବିକ ଧର୍ମ, ବୃତ୍ତି, ଆଦର୍ଶ ଓ ଲକ୍ଷ୍ୟର ବର୍ଣ୍ଣନା କରାଯାଇଅଛି ।

ସୁତ ଓ ଶୌନକ, ବ୍ରହ୍ମା ଓ ନାରଦ, ଶୁକ ଓ ପରୀକ୍ଷିତ, ଉଦ୍ଧବ ଓ ଶ୍ରୀକୃଷ୍ଣ, ରହୁଗଣ ଓ ଭରତ ପ୍ରଭୃତିଙ୍କର ପ୍ରଶ୍ନ ଉତ୍ତର ମଧ୍ୟରେ ଜୀବଜଗତର ବିଭିନ୍ନ ସମସ୍ୟା ଓ ସମସ୍ୟାଗୁଡ଼ିକର ସମାଧାନ-ସୂତ୍ର ଉଲ୍ଲିଖିତ ଅଛି । ବ୍ରହ୍ମାସ୍ତୁତି, ଇନ୍ଦ୍ରସ୍ତୁତି, ପ୍ରହ୍ଲାଦସ୍ତୁତି, ଧ୍ରୁବସ୍ତୁତି, ନାରଦସ୍ତୁତି, ଗର୍ଭସ୍ତୁତି, ଗୋପୀଗୀତ, ରୁଦ୍ରଗୀତ ପ୍ରଭୃତି ସ୍ତୁତି ଓ ଗୀତ ମଧ୍ୟରେ ଶ୍ରୀକୃଷ୍ଣଙ୍କ ସର୍ବଶକ୍ତିମାନ୍ ପରମପୁରୁଷ, ଜୀବର ଗତି—ମୁକ୍ତିଦାତା, ଲୀଳାମୟ ଯଜ୍ଞପୁରୁଷ ରୂପେ ଚିତ୍ରଣ କରିବା ସଙ୍ଗେ ସଙ୍ଗେ ବିଭିନ୍ନ ଅବତାର ଓ ବିଭିନ୍ନ ଚରିତ ତଥା ଚରିତ୍ରର ଗୌରବ ଏବଂ ବେଦନୁଷ୍ଠିତ

କାର୍ଯ୍ୟାବଳୀର ଯଶୋଗାନ କରାଯାଇଅଛି । ସେହିପରି ଚତୁର୍ଦ୍ଦଶ ମନୁ ଓ ମନ୍ୱନ୍ତର ବଂଶ ବର୍ଣ୍ଣନାରେ ପ୍ରଖ୍ୟାତ ରାଜା ମହାରାଜାମାନଙ୍କର ଐତିହାସିକ ବିବରଣୀ ଦିଆଯାଇଅଛି । ଭୂଗୋଳ—ପ୍ରକରଣରେ ବିଭିନ୍ନ ଦ୍ୱୀପ, ବର୍ଷ, ଦେଶ, ପ୍ରଦେଶ, ସାଗର, ନଦନଦୀ ପ୍ରଭୃତିଙ୍କର ଭୌଗୋଳିକ ସ୍ଥିତି ଓ ପରିଚୟ ଏବଂ ଖଗୋଳ—ପ୍ରକରଣରେ ଆଦିତ୍ୟାଦି ଗ୍ରହ, ନକ୍ଷତ୍ର ବିଭିନ୍ନ ଲୋକ ପ୍ରଭୃତିର ପରିଚୟ ବର୍ଣ୍ଣିତ ହୋଇଅଛି ।

ପୃଥୁ ଓ ସନତ୍କୁମାର ପ୍ରଚେତସ ଓ ନାରଦ ଶ୍ରୀକୃଷ୍ଣ ଓ ଉଦ୍ଧବ, ବସୁଦେବ ଓ ନାରଦ ପ୍ରଭୃତିଙ୍କ ଉପଦେଶାତ୍ମକ କଥା ମଧ୍ୟରେ ମାନବର କର୍ତ୍ତବ୍ୟାକର୍ତ୍ତବ୍ୟ ନିରୂପଣ ପଦ୍ଧତି, ବିଜ୍ଞାନ, ଦର୍ଶନ, ଧର୍ମ ଓ ଶ୍ରେୟମାର୍ଗର ନିର୍ଣ୍ଣୟାତ୍ମକ ବିଚାର କରାଯାଇଅଛି । ତେଣୁ ଶ୍ରୀକୃଷ୍ଣ ଚରିତ ଭାଗବତ ହିଁ ଅଷ୍ଟାଦଶ ବିଦ୍ୟାର ସାର । ଭାଗବତର ପ୍ରତ୍ୟେକ ପଦ ଯେପରି ଅମୃତମୟ ସେହିପରି ଶିକ୍ଷଣୀୟ ଓ ଉଦାହରଣୀୟ ।



# ସହାୟକ ଗ୍ରନ୍ଥସୂଚୀ


(୧) ଶ୍ରୀଜଗନ୍ନାଥ ଚରିତାମୃତ : ସମ୍ପାଦକ ପଣ୍ଡିତ ସୀତାହନୁମାନ ଶାସ୍ତ୍ରୀ, ବଡ ଓଡ଼ିଆ ମଠ, ପୁରୀ, ୧୯୬୩ .

(୨) ଅତିବଡ଼ ଶ୍ରୀଜଗନ୍ନାଥ ଦାସ ଗୋସ୍ୱାମୀ : ଅଧିକାରୀ ବୃନ୍ଦାବନ ଦାସ ଗୋସ୍ୱାମୀ, ବଡ଼ ଓଡ଼ିଆ ମଠ ପୁରୀ, ୧୯୬୩

(୩) ଅତିବଡ଼ୀ ଜଗନ୍ନାଥ ପରିକ୍ରମା : ସମ୍ପାଦକ ଡ଼କ୍ଟର ନିତ୍ୟାନନ୍ଦ ଶତପଥୀ ପୁଜ୍ୟ ପୂଜା ସଂସଦ, ଭୁବନେଶ୍ୱର, ୧୯୬୫

(୪) କୋଣାର୍କ—ପଞ୍ଚସଖା ବିଶେଷାଙ୍କ : ସମ୍ପାଦକ ଡକ୍ଟର ବଂଶୀଧର ମହାନ୍ତି ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର, ୧୯୭୧

(୫) ମହାପୁରୁଷ ଜଗନ୍ନାଥ ଦାସ ଓ ଭାଗବତ ସମୀକ୍ଷା : ଅଧ୍ୟାପକ ସର୍ବେଶ୍ୱର ଦାସ, ଗ୍ରନ୍ଥ ମନ୍ଦିର, କଟକ, ୧୯୮୦

(୬) ଓଡ଼ିଆ ସାହିତ୍ୟର ଇତିହାସ : ଡ଼କ୍ଟର ମାୟାଧର ମାନସିଂ କଟକ, ୧୯୬୭

(୭) ଶ୍ରୀଜଗନ୍ନାଥ ସଂସ୍କୃତି : ଓଡ଼ିଶା କଲଚରାଲ୍ ଫୋରମ, ଗ୍ରନ୍ଥମନ୍ଦିର କଟକ, ୧୯୮୫

(୮) ଭାଗବତ ପରିଚୟ : ସମ୍ପାଦକ ଡ଼କ୍ଟର କାହ୍ନୁଚରଣ ମିଶ୍ର ଭୁବନେଶ୍ୱର, ୧୯୮୭

(୯) ପଦ୍ୟାବଳୀ : ସମ୍ପାଦକ ଡକ୍ଟର ସୁଶୀଲ୍ କୁମାର ଦେ ଢାକା ବିଶ୍ୱବିଦ୍ୟାଳୟ, ୧୯୪୩

(୧୦) ଓଡ଼ିଶାର ସାଂସ୍କୃତିକ ଇତିହାସ : ଓଡ଼ିଶା କଲଚରାଲ୍ ଫୋରମ ଗ୍ରନ୍ଥମନ୍ଦିର, କଟକ, ୧୯୭୬

(୧୧) ଦାର୍ଢ୍ୟତା ଭକ୍ତିରସାମୃତ : ରାମଦାସ, ରାଧାରମଣ ପୁସ୍ତକାଳୟ
କଟକ, ୧୯୫୭

(୧୨) ଓଡ଼ିଶୀ ବୈଷ୍ଣବ ଧର୍ମ : ଡକ୍ଟର କାହ୍ନୁଚରଣ ମିଶ୍ର
ଓଡ଼ିଶା ସାହିତ୍ୟ ଏକାଡେମୀ,
ଭୁବନେଶ୍ୱର, ୧୯

(୧୩) ଭାଗବତ : ୧) ନିତ୍ୟାନନ୍ଦ ପ୍ରେସ୍, ବାଲୁବଜାର,
କଟକ, ୧୯୬୨—୧୯୬୭
୨) ଦଈ ପ୍ରେସ୍, କଟକ, ୧୯୨୮

(୧୪) ଷୋଡ଼ଶଚତୁଷ୍ପଦୀ : ବଡ଼ ଓଡ଼ିଆ ମଠ, ପୁରୀ, ୧୯

(୧୫) ଉପାସନା ଶତକ : ସମ୍ପାଦକ ପଣ୍ଡିତ ଆନନ୍ଦ ମିଶ୍ର
ବଡ ଓଡ଼ିଆ ମଠ, ପୁରୀ, ୧୯୫୪

(୧୬) ନିତ୍ୟଗୁପ୍ତଚୂଡ଼ାମଣି : ପ୍ରକାଶକ, ଅଧିକାରୀ ବୃନ୍ଦାବନ ଦାସ ଗୋସ୍ୱାମୀ
ବଡ଼ ଓଡ଼ିଆ ମଠ, ପୁରୀ, ୧୯୬୩

(୧୭) ଶ୍ରୀକୃଷ୍ଣ ଭକ୍ତିକଳ୍ପଲତା ଫଳ : ସମ୍ପାଦକ ପଣ୍ଡିତ କୁଳମଣି ମିଶ୍ର
ବଡ଼ ଓଡ଼ିଆ ମଠ, ପୁରୀ, ୧୯୬୯

(୧୮) ଭକ୍ତକବି ଜଗନ୍ନାଥ ଦାସ : ରାୟବାହାଦୂର ଚନ୍ଦ୍ରମଣି ଆଚାର୍ଯ୍ୟ
କଟକ, ୧୯୪୧

(୧୯) ଉତ୍କଳେ ଶ୍ରୀକୃଷ୍ଣ ଚୈତନ୍ୟ : ବାବାଜୀ ପଦ୍ମଚରଣ ଦାସ
ଦଈପ୍ରେସ୍, କଟକ, ୧୯୨୬

(୨୦) ବୈଷ୍ଣବଲୀଳାମୃତ : ସମ୍ପାଦକ, ଡକ୍ଟର ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ
ସମ୍ବଲପୁର ବିଶ୍ୱବିଦ୍ୟାଳୟ,
ସମ୍ବଲପୁର, ୧୯

(୨୧) ଗୁପ୍ତଭାଗବତ : ଲକ୍ଷ୍ମୀନାରାୟଣ ପ୍ରେସ୍, କଟକ, ୧୯୩୬

(୨୨) ସୁଧାରସ : ବଡ ଓଡ଼ିଆ ମଠ, ପୁରୀ, ୧୯୫୨

(୨୩) ଭଗବଦ୍ଗୀତା : ସମ୍ପାଦକ ନଟବର ରାୟ,
ଶାରଦା ପ୍ରେସ୍, ବ୍ରହ୍ମପୁର, ଗଞ୍ଜାମ, ୧୯୩୪

(୨୪) ପଦ୍ମକଳ୍ପଟୀକା : ଦଈପ୍ରେସ୍, କଟକ, ୧୯୩୦

(୨୫) ପାଷଣ୍ଡଦଳନ : ହରନାଥ ପ୍ରେସ୍, କଟକ, ୧୯୩୯

(୨୬) ଶ୍ରୀଜଗନ୍ନାଥ ଲୀଳାମୃତ : ସମ୍ପାଦକ, ଡକ୍ଟର କୃଷ୍ଣଚରଣ ସାହୁ
ସାଥୀମହଲ, କଟକ, ୧୯୭୮

(୨୭) ସ୍ୱପ୍ନଗୀତା : ଷ୍ଟାର ପ୍ରେସ୍, ବ୍ରହ୍ମପୁର, ଗଞ୍ଜାମ, ୧୯୨୮

(୨୮) ଧ୍ରୁବଚରିତ : ନିତ୍ୟାନନ୍ଦ ପ୍ରେସ୍, ବାଲୁବଜାର,
କଟକ, ୧୯୬୩

(୨୯) ଗଜନିସ୍ତାରଣ : ସରସ୍ୱତୀ ପ୍ରେସ୍, ବ୍ରହ୍ମପୁର,
ଗଞ୍ଜାମ, ୧୯୩୯

(୩୦) ମୃଗୁଣୀସ୍ତୁତି : କୋହିନୁର ପ୍ରେସ୍. କଟକ, ୧୯୫୮

(୩୧) ଅର୍ଥକୋଇଲି : ବ୍ରଜେନ୍ଦ୍ର ପ୍ରେସ୍, କଟକ, ୧୯୨୪

(୩୨) ଚୂଳାଭଣା : ଓଡ଼ିଶା ରାଜ୍ୟ ସଂଗ୍ରହାଳୟ ପୋଥି
ନଂ ୧୨୯୯/୧୦୯୯

(୩୩) ଦାରୁବ୍ରହ୍ମଗୀତା : ଦାଶରଥି ପୁସ୍ତକାଳୟ, କଟକ, ୧୯୫୪

(୩୪) ଭାଗବତ ସଦୁକ୍ତିରତ୍ନାବଳୀ : ସଂକଳକ-ପଣ୍ଡିତ ନୀଳମଣି ମିଶ୍ର
ଗ୍ରନ୍ଥମନ୍ଦିର, କଟକ, ୧୯୮୫

(୩୫) ଭାଗବତ : (ପ୍ରଥମଖଣ୍ଡ) ସମ୍ପାଦକ, ପଣ୍ଡିତ ନୀଳମଣି ମିଶ୍ର
ଓଡ଼ିଶା ସାହିତ୍ୟ ଏକାଡେମୀ,
ଭୁବନେଶ୍ୱର, ୧୯୮୯

36. Studies in Orissan History, Archaeology and Archives : Padmashri P. Acharya, Bhubaneswar, 1969

37. History of Orissa : Dr. K. C. Panigrahi, Kitab Mahal, Cuttack, 1981

38. Sidelights on History and Culture of Orissa : Ed. Dr. M. N. Das, Vidyapuri, Cuttack, 1970

39. Indian Ephemeries : Vol. V— L. D. S. K. Pillai, Madras, 1922

40. Studies in the Bhagavata :
Ed. Dr. K. C. Mishra, Institute of Orissan Culture, Bhubaneswar, 1988

41. Srichaitanya charitamrita : Antyalila-Vol. 3, Bombay, 1975

